# ପଶ୍ଚିମ ଓଡ଼ିଶାର ନୂଆଖାଇ ପର୍ବ

**ଜଳଧର ମାଝୀ**

ଆମ ରାଜ୍ୟ ଓଡ଼ିଶା ପର୍ବପର୍ବାଣିର ଗନ୍ତାଘର । କଥାରେ ଅଛି, ଓଡ଼ିଶାରେ ବାର ମାସରେ ତେର ପର୍ବ । ସତରେ ଆମ ପର୍ବପର୍ବାଣି ଖାଲି ତେର ସଂଖ୍ୟା ଭିତରେ ସୀମିତ ନୁହେଁ । ଏହା ବ୍ୟତୀତ ଆମେ ଆହୁରି ଅନେକ ପର୍ବପର୍ବାଣି ଆନନ୍ଦ ଉଲ୍ଲାସରେ ପାଳନ କରିଥାଉ । ମାନବ ଜୀବନ ସବୁବେଳେ ଜଞ୍ଜାଳମୟ ଓ ବିଷାଦଗ୍ରସ୍ତ । ଏହି ବିଷାଦଗ୍ରସ୍ତ କର୍ମମୟ ଜୀବନକୁ ସରସ



ସୁନ୍ଦର କର୍ମଚଂଚଳ କରିବା ପାଇଁ ଅନେକ ପର୍ବପର୍ବାଣି ପାଳନ କରି ଆମେ ଜୀବନକୁ ଆନନ୍ଦ ଉପଭୋଗ କରିଥାଉ । ସଂସ୍କୃତି ଓ ପରମ୍ପରା ହେଉଛି ମାନବ ଜୀବନର ଏକ ଅଙ୍ଗ । ଏହାକୁ ବାଦ୍‌ଦେଲେ ଆମେ ବଂଚିବା ଅସମ୍ଭବ । ଯେଉଁ ଦେଶ ବା ରାଜ୍ୟ ନିଜର କଳା, ସଂସ୍କୃତି, ପରମ୍ପରା ଓ ଐତିହ୍ୟକୁ ବଜାୟ ରଖିଥାଏ, ସେ ଦେଶ ବା ରାଜ୍ୟ ସେତେ ଉନ୍ନତ ହୋଇଥାଏ । ଆଜି ଆମ ଓଡ଼ିଶା ସାରା ଭାରତବର୍ଷରେ ଗୌରବଗାନ ଅର୍ଜନ କରିପାରିଛି । କାରଣ ଆମେ ଆମ କଳା, ସଂସ୍କୃତି, ପରମ୍ପରା, ଐତିହ୍ୟକୁ ବଜାୟ ରଖିଛୁ । କର୍ମକ୍ଳାନ୍ତ ଓ ଜଞ୍ଜାଳଗ୍ରସ୍ତ ଜୀବନରେ ଏଗୁଡ଼ିକ ଆଣିଦେଇଥାନ୍ତି ଏକ ମଧୁର ଆଶ୍ୱାସନା ଓ ସାମାଜିକ ଜୀବନକୁ କରିଥାନ୍ତି ସରସ ଓ ସୁନ୍ଦର ।

ଆମ ଓଡ଼ିଶାରେ ଅଂଚଳଭିତ୍ତିକ ଅନେକ ପର୍ବପର୍ବାଣି ପାଳନ କରାଯାଇଥାଏ । ଯଥା– ପୂର୍ବ ଓଡ଼ିଶାର ମୁଖ୍ୟ ପର୍ବ ହେଉଛି ରଜପର୍ବ, ରଥଯାତ୍ରା । ଉତ୍ତର ଓଡ଼ିଶାର ବାଲେଶ୍ୱର, ମୟୂରଭଞ୍ଜ, କେନ୍ଦୁଝର ଅଂଚଳର ମୁଖ୍ୟପର୍ବ ହେଉଛି ମକରପର୍ବ ଓ ରଜପର୍ବ ଏବଂ ଦକ୍ଷିଣ ଓଡ଼ିଶାର ରାୟଗଡ଼ା, କୋରାପୁଟ, ମାଲକାନଗିରି, ନବରଙ୍ଗପୁର ଅଞ୍ଚଳର ମୁଖ୍ୟ ପର୍ବ ହେଉଛି ପୌଷ ପୂର୍ଣ୍ଣିମା ଓ ଚଇତି ପର୍ବ । ସେହିପରି ପଶ୍ଚିମ ଓଡ଼ିଶାର ସମ୍ବଲପୁର, ବରଗଡ଼, ବଲାଙ୍ଗିର, ନୂଆପଡ଼ା, କଳାହାଣ୍ଡି, ସୋନପୁର, ସୁନ୍ଦରଗଡ଼, ଝାରସୁଗୁଡ଼ା ଅଞ୍ଚଳର ମୁଖ୍ୟପର୍ବ ହେଉଛି 'ନୂଆଖାଇ' ।

ପଶ୍ଚିମ ଓଡ଼ିଶାର ମୁଖ୍ୟ ପର୍ବ ହେଉଛି 'ନୂଆଖାଇ' ବା 'ନବାନ୍ନ' । ଏହି ନୂଆଖାଇ ପର୍ବକୁ କୃଷିଭିତ୍ତିକ ପର୍ବ କହିଲେ ଅତ୍ୟୁକ୍ତି ହେବ ନାହିଁ । କାରଣ ବର୍ଷର ପ୍ରଥମ ଅନ୍ନକୁ ମାଁ ଇଷ୍ଟଦେବୀଙ୍କୁ ସମର୍ପଣ କରିବା ପରେ ସମସ୍ତେ ଖାଇବାର ପର୍ବ ହେଉଛି 'ନୂଆଖାଇ' । ଭାଦ୍ରବ ମାସ ଶୁକ୍ଳପକ୍ଷ ପଂଚମୀ ତିଥିରେ ଏହି ପର୍ବ ପାଳନ କରାଯାଇଥାଏ । ତା' ପୂର୍ବ ଦିନ ବା ଚତୁର୍ଥୀ ଦିନ ବିଦ୍ୟାର୍ଥୀମାନେ ନିଜ ନିଜ ଶିକ୍ଷାନୁଷ୍ଠାନମାନଙ୍କରେ ବା ଓଡ଼ିଶାର ପୁରପଲ୍ଲୀରେ ବିଦ୍ୟାବୁଦ୍ଧିଦାତା ଶ୍ରୀଗଣେଶଙ୍କ ପୂଜା ଉତ୍ସବ ମହାଆଡ଼ମ୍ବରରେ




ପାଳନ କରିଥାନ୍ତି। 'ନବାନ୍ନ'ରେ ମା' ବସୁମତୀଙ୍କୁ କୃତଜ୍ଞତା ଜ୍ଞାପନ କରିବା ସ୍ୱରୂପ ବର୍ଷର ପ୍ରଥମ ଫସଲର ନୂଆ ଧାନକେଣ୍ଡା, ନୂଆଚୁଡ଼ା, ନୂଆଚାଉଳ ଖିରି, ନୂଆଚାଉଳରେ ତିଆରି ପିଠାକୁ ଏକ ନୂଆ ହାଣ୍ଡିରେ ଭୋଗ କରାଯାଇ ଘରର ମା' ଇଷ୍ଟଦେବୀ ଓ ମହାଲକ୍ଷ୍ମୀ ଏବଂ ପିତୃପୁରୁଷଙ୍କୁ ପୂଜା କରାଯାଇଥାଏ।

ମା' ବହେନ୍ ,ଭାଏ, ଦଦା, ସିଆନ୍ ସୁଜନ<br>
ସବକୁ ନୂଆଖାଇ ଜୁହାର ।<br>
ମା' ସମଲେଇର ଛତର ସବ୍‌କେ<br>
ହେଇଥାଉ ସାହା।

ନୂଆଖାଇ ପର୍ବ ସମସ୍ତଙ୍କ ହୃଦୟରେ ଭରିଦିଏ ଆନନ୍ଦର ଲହରୀ। ସମସ୍ତଙ୍କୁ ଆଣିଦିଏ ପ୍ରୀତି ମମତା ବନ୍ଧନର ଡୋରି। ନୂଆଖାଇ ପର୍ବ ପାଇଁ ମାସେ ପୂର୍ବରୁ ସମସ୍ତଙ୍କୁ ପ୍ରସ୍ତୁତି ହେବାକୁ ପଡ଼ିଥାଏ। ଗରିବ ହେଉ ବା ଧନୀ ହେଉ ନୂଆଖାଇ ପର୍ବ ଶୁଣିଲେ ସମସ୍ତଙ୍କ ହୃଦୟରେ ଆନନ୍ଦର ସୀମା ଆଉ ରହେ ନାହିଁ। ସେଥିପାଇଁ ଗରିବ ଲୋକମାନେ ନୂଆଖାଇ ପର୍ବ ପାଳନ କରିବା ପାଇଁ ଧାନ,ଚାଉଳ, ପଇସା ଯୋଗାଡ଼ କରିଥାନ୍ତି। ଗରିବ ଲୋକମାନେ ଧନୀବ୍ୟକ୍ତି ଓ ସାହୁକାର ପାଖରୁ ଧାନ, ଚାଉଳ, ପଇସା ଧାର ଆଣିଥାନ୍ତି। ନୂଆଖାଇ ପର୍ବ ଏମିତି ଏକ ସମୟରେ ହୋଇଥାଏ ଯାହାକି ଲୋକଙ୍କ ପାଖରେ ଖାଇବା ପିଇବାର ବହୁତ ଅସୁବିଧା ଦେଖାଯାଇଥାଏ। କଥାରେ ଅଛି, 'ଥିଲାବାଲା ଖାଉଛିତ ନଥିଲାବାଲା ଦେଖୁଛି'। ଗରିବ ଲୋକମାନେ ଘରେ ଯାହାଥିବ ଧାନ, ମାଣ୍ଡିଆ, ବିରି, ମୁଗ, କୋଳଥ ସବୁକୁ କ୍ଷେତରେ ବୁଣି ସଫା କରିଥାନ୍ତି। ଆଉ ଘରେ ଖାଦ୍ୟପେୟର ଅସୁବିଧା ଦେଖାଦିଏ। ଯାହା ଫଳରେ ସେମାନେ ସାହୁକାର ପାଖକୁ ଯିବାପାଇଁ ବାଧ୍ୟ ହୁଅନ୍ତି ଏବଂ ନୂଆ ଫସଲ ଅମଳ ହେଲାପରେ ସେମାନଙ୍କୁ ଦେଇଥାନ୍ତି। ଗରିବ ଲୋକମାନେ ଘରେ ଯାହାଥିବ କଂସାବାସନ ବା ସୁନାରୁପାକୁ ମଧ୍ୟ ନେଇ ସାହୁକାର ପାଖରେ ବନ୍ଧାପକାଇ କିଛି ପଇସା ଆଣି ପର୍ବ ପାଳନ କରନ୍ତି। ନୂଆଖାଇ ବା ନବାନ୍ନଭକ୍ଷଣ ଉପଲକ୍ଷେ ସମସ୍ତ ମାଆ, ଭଉଣୀ, ମାଉସୀ, ଖୁଡ଼ୀ ସମସ୍ତେ ଘର ସଜାଡ଼ିବାରେ ବ୍ୟସ୍ତ। ଘର ଲିପାପୋଛା କରିବା ପାଇଁ ବାହାର ପଡ଼ିଆ ଜମିରୁ ମାଟି ଆଣିଥାନ୍ତି। ମାଟି ଓ ଗୋବରକୁ ଭଲଭାବରେ ଚକ୍‌ଟି ଠାକୁର ଘରଠାରୁ ବାହାର ଦାଣ୍ଡପିଣ୍ଡା ପର୍ଯ୍ୟନ୍ତ ସୁନ୍ଦର ଭାବରେ ଲିପି ଚକ୍ ଚକ୍ କରିଥାନ୍ତି। ଏସବୁ ଶୁଖି ଗଲା ପରେ ଗୋବର, ନାଲି ମାଟି, ଧଳାରଙ୍ଗ ମାଟିରେ ସୁନ୍ଦର ଭାବରେ ଘର ସଜାଇଥାନ୍ତି। ଘରେ ବ୍ୟବହାର କରୁଥିବା ଲୁଗାପଟା, ବିଛଣାପତ୍ର, ଡାଲାକୁଲା, ଖଟ, ପିଢ଼ା ଏବଂ ବିଭିନ୍ନ ଆସବାବପତ୍ରକୁ ସଫାସୁତୁରା କରି ରଖିଥାନ୍ତି। ପୁରୁଷ ଲୋକମାନେ ଜଙ୍ଗଲରୁ ଶୁଖିଲା କାଠ ଆଣି ସାଇତିକରି ରଖିଥାନ୍ତି। ଗାଁର ଛୋଟ ଛୋଟ ପୁଅଝିଅମାନେ ଛାଂଚୁଣି, ପାଛିଆ, କୋଦାଳ ଧରି ଗାଁ ଦାଣ୍ଡ ସଫା କରିବାରେ ଆଗୁଆ। ଗାଁ ଦାଣ୍ଡ , ରାସ୍ତାଘାଟଠାରୁ ପୋଖରୀ ତୁଠ ପର୍ଯ୍ୟନ୍ତ ଘାସ ସଫା କରନ୍ତି। ଏହିପରି ଭାବରେ ନିଜ ନିଜ କାମଧନ୍ଦାରେ ସମସ୍ତେ ଲାଗିପଡ଼ିଥାନ୍ତି। ପୁରପଲ୍ଲୀଠାରୁ ଆରମ୍ଭ କରି ସହର ଯାଏଁ ନରନାରୀମାନେ ଦୋକାନ ବଜାରରେ କିଣାବିକା କରିବା ପାଇଁ ଭିଡ଼ ଜମାଇଥାନ୍ତି। ଏହି ପର୍ବରେ ଘରର ସମସ୍ତ ସଦସ୍ୟଙ୍କ ପାଇଁ ନୂଆ ଲୁଗା କିଣାଯାଇଥାଏ। ପିଠାପଣା ତିଆରି କରିବା ପାଇଁ ଚାଉଳ, ଚିନି, ଗୁଡ଼, ଘିଅ, ନଡ଼ିଆ କିଣାଯାଇଥାଏ। ପରିବାପତ୍ର ଆଳୁ, ବାଇଗଣ, ଭେଣ୍ଡି, ବିଲାତି, ଡାଲି ଇତ୍ୟାଦି ବିଭିନ୍ନ ଖାଦ୍ୟ ସାମଗ୍ରୀ କିଣି ରଖିଥାନ୍ତି। ପୂଜାପାଠ କରିବା ପାଇଁ ଧୂପ, ଘିଅ, ନଡ଼ିଆ, ସିନ୍ଦୂର, ଦୀପ , କପୂର କିଣିଥାନ୍ତି। ନୂଆଖାଇ ପୂର୍ବରୁ ଲୋକମାନଙ୍କ ଭିତରେ ଅପୂର୍ବ ଅସରନ୍ତି ଆନନ୍ଦ ଉଲ୍ଲାସ ଓ ଆବେଗ ନାଚିଉଠିଥାଏ। କେତେଗୁଡ଼ିଏ ଗ୍ରାମର ମୁଖ୍ୟ ହେଉଛନ୍ତି 'ଗୌନ୍ତିଆ', 'ଝାଙ୍କର'। ସେହି ଅଂଚଳରେ ଯେତେ ପର୍ବପର୍ବାଣି ପାଳନ କରାଯାଏ, ତାହା ଗୌନ୍ତିଆ ବା ଝାଙ୍କର ଅନୁସାରେ ପୂଜାପାଠ ଆରମ୍ଭ ହୋଇଥାଏ। ଗୌନ୍ତିଆ ପ୍ରଥମେ ଶୁଭାରମ୍ଭ କରିଥାନ୍ତି। ନୂଆଖାଇ ପୂର୍ବ ଦିନ ବା ଚତୁର୍ଥୀ ଦିନ ଗ୍ରାମର ଦେବାଦେବୀଙ୍କୁ ପୂଜାପାଠ କରି ଧାନକେଣ୍ଡା ଧରି ଘର ଘର ବୁଲି ଧାନକେଣ୍ଡାକୁ ପ୍ରତ୍ୟେକଙ୍କ ଘରର ଚୌକାଠ ଉପରେ ଲଗାନ୍ତି ଏବଂ ମାଆ ବୋହୂମାନେ ବନ୍ଧାପଣା ଦେଇ ନିଜ ଇଚ୍ଛାରେ ଦକ୍ଷିଣା ସ୍ୱରୂପ ଧାନ, ଅରୁଆ ଚାଉଳ, ମୁଗ, ବିରି, ପଇସା ଦେଇ ଖୁସି କରନ୍ତି। ଏତେ ଜଞ୍ଜାଳ ଭିତରେ ସମସ୍ତେ ବ୍ୟସ୍ତଥିବା ସମୟରେ ହଠାତ୍ ପହଂଚିଯାଏ ଆନନ୍ଦର ଦିନ 'ନୂଆଖାଇ'।




ନୂଆଖାଇ ଦିନ ଗ୍ରାମର ସମସ୍ତ ଆବାଳବୃଦ୍ଧବନୀତା ଖୁସିରେ ନାଚି ଉଠନ୍ତି । ସେଦିନ ଗ୍ରାମର ସମସ୍ତ ନରନାରୀ ସୂର୍ଯ୍ୟୋଦୟ ପୂର୍ବରୁ ନିତ୍ୟକର୍ମ ସାରନ୍ତି । ମାଆମାନେ ନୂଆଲୁଗା ପିନ୍ଧି ପୂଜାପାଠ ପାଇଁ ଅନେକ ପ୍ରକାର ଖିରୀ, କାକରା ପିଠା, ଚିନି ପିଠା, ଆରିସା ପିଠା ତିଆରି କରିଥାନ୍ତି । ଘରର ମୁଖ୍ୟ ବ୍ୟକ୍ତିମାନେ ସକାଳୁ ଗାଧୁଆ ସାରି କୁରେଇ ପତ୍ର, ଧାନକେଣ୍ଡା ଆଣିଥାନ୍ତି । ଧାନକୁ ହାଣ୍ଡିରେ ଭାଜି ଚୁଡ଼ା କୁଟିଥାନ୍ତି । ଏସବୁ ସାମଗ୍ରୀ ପ୍ରସ୍ତୁତ ହେଲାପରେ ଘରର 'ମୁଖିଆ' ବା 'ପୂଝାରୀ' ନୂଆଧୋତି ପିନ୍ଧି ପୂଜାପାଠ କରିବା ପାଇଁ ବସିଥାନ୍ତି । ଯିଏ ବଡ଼ଭାଇ ସେହି ପରିବାରର ମୁଖିଆ ବା ପୂଝାରୀ ଭାବରେ ମନୋନୀତ ହୋଇଥାନ୍ତି । ପୂଝାରୀ ଘରର ଦେବଦେବୀ, ପିତୃପୁରୁଷ ଏବଂ ଇଷ୍ଟଦେବୀଙ୍କୁ ପୂଜାପାଠ କରିଥାନ୍ତି । ପୂଜାପାଠ କରିବା ପାଇଁ ଭାଇ କୁଟୁମ୍ବମାନେ ଆପଣା ଆପଣା ଘରୁ ପିଠା, ଘିଅ, ନଡ଼ିଆ, ଅରୁଆ ଚାଉଳ, ଧୂପ, ନୂଆଚୁଡ଼ା, ଧାନକେଣ୍ଡା, ମହୁ, ଗୋରସ(ଗାଇ କ୍ଷୀର), କଦଳୀ ଧରି ମୁଖିଆ ଘରକୁ ଆସନ୍ତି । ନୂଆଖାଇ ପର୍ବରେ କୁରେଇ ଗଛର ପତ୍ରକୁ ପୂଜା କରାଯାଇଥାଏ । ସେହିଦିନ ସେହିପତ୍ରରେ ପ୍ରସାଦ, ଅନ୍ନ ଭୋଜନ କରିଥାନ୍ତି । ବର୍ଷକୁ ଗୋଟିଏ ଦିନ ହିଁ କୁରେଇ ଗଛର ପତ୍ରକୁ ବ୍ୟବହାର କରିଥାନ୍ତି । ପ୍ରଥମେ ପିତୃପୁରୁଷଙ୍କୁ ପିଣ୍ଡ ଦାନ ଦେଲା ପରେ ନୂଆଧାନ କେଣ୍ଡା, ନୂଆ ଚୁଡା, ପିଠାପଣା, ଦେବାଦେବୀଙ୍କୁ ସମର୍ପଣ କରାଯାଇଥାଏ । ପୂଜାପାଠ କଲାପରେ ପିତୃପୁରୁଷ ଓ ଦେବାଦେବୀଙ୍କୁ ମୁଣ୍ଡିଆମାରି ଆଶୀର୍ବାଦ ଭିକ୍ଷା ନେଇଥାନ୍ତି । ଘଣ୍ଟ , ଶଙ୍ଖ, ହୁଳହୁଳି ନାଦରେ ଗାଁ ଦାଣ୍ଡ , ଘର ଅଗଣା ଝଙ୍କୃରିତ ହୋଇଉଠିଥାଏ । ଧୂପ, ଦୀପ, କର୍ପୂର, ଚନ୍ଦନ ବାସ୍ନାରେ ଘର ହସି ଉଠୁଥାଏ । ସମସ୍ତ ପୁରପଲ୍ଲୀ ମହକି ଉଠୁଥାଏ । ଘରେ ମାଆମାନେ କୁରେଇ ପତ୍ରରେ ଖଲି, ଦନା ତିଆରି କରିଥାନ୍ତି । ପୂଜାପାଠ ସରିଲା ପରେ ସମସ୍ତେ ଗୋଟିଏ ସ୍ଥାନରେ ବସିଥାନ୍ତି । ପିତୃପୁରୁଷ ଓ ଦେବାଦେବୀଙ୍କୁ ସମର୍ପଣ କରିଥିବା ନୂଆଚୁଡ଼ା, ପିଠା, ଖିରୀ, କଦଳୀ, ନଡ଼ିଆକୁ ଏକାଠି ମିଶାଇ ପ୍ରସାଦ ପ୍ରସ୍ତୁତ କରାଯାଇଥାଏ । ପୂର୍ବ ଦିଗକୁ ମୁହଁ କରି ପ୍ରସାଦ ସେବନ କରିଥାନ୍ତି । ପ୍ରସାଦ ଖାଇବା ସମୟରେ ଜେଜେବାପା ଜେଜେମାଆ ଓ ବାପା ମାଆ ନିଜ ନିଜ ନାତି ନାତୁଣୀ, ପୁଅ ଝିଅଙ୍କୁ ପ୍ରଥମେ ପ୍ରସାଦକୁ ଖୁଆଇଦେଇ ଆଶୀର୍ବାଦ ଦେଇଥାନ୍ତି । ତା'ପରେ ସେମାନେ ନିଜେ ଖାଇଥାନ୍ତି । ସମସ୍ତେ ଖାଇସାରିଲା ପରେ ସାନମାନେ ବଡ଼ମାନଙ୍କୁ ମୁଣ୍ଡିଆ ମାରି ତାଙ୍କଠାରୁ ଆଶୀର୍ବାଦ ଭିକ୍ଷା ଗ୍ରହଣ କରିଥାନ୍ତି । ଘରେ ତିଆରି ହୋଇଥିବା ବିଭିନ୍ନ ପ୍ରକାର ପିଠାପଣା, ଖିରୀପୁରି, ଭାତଡାଲି, ତରକାରି ପ୍ରସାଦ ରୂପେ ଏକାଠି ବସି ଅନ୍ନ ଭୋଜନ କରନ୍ତି । ନୂଆଖାଇ ସାରିବା ପରେ ଗ୍ରାମର ଛୋଟ ଛୋଟ ପୁଅଝିଅ, ଯୁବକ ଯୁବତୀମାନେ ନୂଆ ବସ୍ତ୍ର ପରିଧାନ କରି ଗାଁ ଦାଣ୍ଡକୁ ବାହାରି ପଡ଼ନ୍ତି । ଧାଡ଼ି ଧାଡ଼ି ହୋଇ ଗାଁର ସମସ୍ତ ବୁଢ଼ାବୁଢ଼ୀ, ଭଦ୍ରବ୍ୟକ୍ତିଗଣ, ଗୁରୁଜନମାନଙ୍କୁ ଜୁହାରଭେଟ୍ କରିଥାନ୍ତି । ରଙ୍ଗବେରଙ୍ଗର ଶାଢ଼ୀ, ପୋଷାକ ପିନ୍ଧି ଝିଅବୋହୂମାନେ ଘର ଘର ବୁଲି 'ନୂଆଖାଇ ଭେଟ୍‌ଘାଟ୍' ହୋଇଥାନ୍ତି । ସେହିପରି କର୍ମମୟ ଜୀବନରେ ସେମାନେ ଆନନ୍ଦ ଉପଭୋଗ କରିଥାନ୍ତି । ସନ୍ଧ୍ୟା ହେଲେ ସମସ୍ତେ ଏକାଠି ଜମା ହୋଇ ବିଭିନ୍ନ ନାଚଗୀତ, ଭଜନ, କୀର୍ତ୍ତନ, ଘୁମୁରାନାଚ ଏବଂ ବାଜାର ତାଳେ ତାଳେ ଜୀବନକୁ ଉତ୍ସର୍ଗୀକୃତ କରନ୍ତି । ଏମିତି ଅନେକ ଲୋକ ଖିଆପିଆରେ ମଉଜ ମଜ୍‌ଲିସ୍ କରି ଖୁସି ଆଣିଥାନ୍ତି । ନୂଆଖାଇ ଭେଟ୍‌ଘାଟ୍ ସରିବାପରେ ମାଆ ବୋହୂମାନେ ଥାଳିରେ ପିଠାଧରି ଘର ଘର ବୁଲି ବୁଲି ବାଣ୍ଟନ୍ତି ।

ନୂଆଖାଇ ଆରଦିନ 'ବାସୀତିହାର'ପାଳନ କରିଥାନ୍ତି । ଏହାକୁ ଓଡ଼ିଆରେ 'ଛାଡ଼ଖାଇପର୍ବ' କୁହାଯାଇଥାଏ । ଏହି ଦିନ ଘରେ ଘରେ ମାଛ ମାଂସ ଭାତ ରୋଷେଇ ହୋଇଥାଏ । ବିଭିନ୍ନ ଜାଗାରେ ଦଳ ଦଳ ହୋଇ ଭୋଜିଭାତର ଆୟୋଜନ ହୋଇଥାଏ । ନାଚଗୀତର ତାଳେ ତାଳେ ସମସ୍ତେ ମଜ୍ଜିଯାଆନ୍ତି । ବିଶେଷ କରି ଆଦିବାସୀ, ହରିଜନମାନଙ୍କ ପାଇଁ ନାଚଗୀତ ଓ ବାଦ୍ୟ ବେଶ ଆନନ୍ଦଦାୟକ ହୋଇଥାଏ । ଏମିତି ସେମାନେ ଜୀବନକୁ ଉପଭୋଗ କରନ୍ତି । ସେମାନେ କହିଥାନ୍ତି ଜିଇଁ ଜାଗିଥିଲେ ପୋରୁର୍ ସାଲେ ଫେର୍ ଘେ ଭେଟ୍‌ହେମା ।

ପଶ୍ଚିମ ଓଡ଼ିଶାର ନୂଆଖାଇ ପର୍ବ କୌଣସି ଏକ ଗୋଷ୍ଠୀ ସମ୍ପ୍ରଦାୟ, ଜାତି ବା ବ୍ୟକ୍ତିବିଶେଷ ମଧ୍ୟରେ ସୀମିତ ରହେନାହିଁ । ଜାତି, ଭେଦ, ନିର୍ବିଶେଷରେ ଏହି ପର୍ବ ସମଗ୍ର ସମ୍ବଲପୁର ଅଂଚଳରେ ତଥା ଉପକୂଳ ଅଂଚଳରେ ପାଳିତ ହୋଇ

ବ୍ୟାପକତାର ରୂପ ନେଇଛି । ସମଗ୍ର ଅଂଚଳରେ ନୂଆଖାଇ ପର୍ବ ଯେଉଁ ସାମୂହିକତାର ରୂପ ନେଇ ପାଳିତ ହେଉଛି , ତାହା ଅନ୍ୟତ୍ର ଦୃଷ୍ଟିଗୋଚର ହୁଏ ନାହିଁ । ଏହିଦିନ ଶତ୍ରୁ, ମିତ୍ର ସମସ୍ତେ ନିଜର ପୂର୍ବ ଶତ୍ରୁତା ଦୁଃଖ, କ୍ଳେଶ ଭୁଲିଯାଆନ୍ତି । ଏହି ପରିପ୍ରେକ୍ଷୀରେ ନୂଆଖାଇ କେବଳ ନୂଆଶସ୍ୟ ପାଇଁ ନୁହେଁ ଏକ ସୁନ୍ଦର, ସୁଖୀ ଓ ସମୃଦ୍ଧ ସାମାଜିକ ଜୀବନକୁ ମଧ୍ୟ ସ୍ୱାଗତ ଜଣାଏ । ଯେ ଯେଉଁଠି ଥାଉନା କାହିଁକି, ଏହି ଦିନ ସମସ୍ତେ ନିଶ୍ଚୟ ଘରକୁ ଆସି ଏକାଠି ନୂଆ ଅନ୍ନ ଭୋଜନ କରି ପର୍ବର ପରମ୍ପରାକୁ ବଜାୟ ରଖିଛନ୍ତି । ଏହି ପର୍ବ ସମସ୍ତଙ୍କୁ ଗୋଟିଏ ବନ୍ଧନରେ ବାନ୍ଧିଦେଇଥାଏ ଭ୍ରାତୃତ୍ୱର ନିବିଡ଼ ବନ୍ଧନ, ବନ୍ଧୁତ୍ୱର ମିଠା ସମ୍ପର୍କ । ସମସ୍ତଙ୍କ ମନରୁ ବାଦ-ବିବାଦ, ରାଗ-ରୁଷା, ମାନଅଭିମାନ ଅପସରି ଯାଇଥାଏ । ଆଣିଦେଥାଏ ଭାଇଚାରାର ସମ୍ପର୍କ । ଏହାହିଁ ନୂଆଖାଇ ପର୍ବର ବିଶେଷତ୍ୱ । ଏଥିରୁ ଗୋଟିଏ କଥା ନିଃସନ୍ଦେହରେ କୁହାଯାଇପାରେ ଯେ ନୂଆଖାଇ ପର୍ବ ସମ୍ବଲପୁର ଅଂଚଳର ଏକ ଗଣପର୍ବ ।

ବହୁ ପ୍ରାଚୀନ କାଳରୁ ପାରମ୍ପରିକଭାବେ ପାଳିତ ହୋଇ ଆସୁଥିବା ଅଧିକାଂଶ ପର୍ବ କ୍ରମେ ମୂଳ ସଂସ୍କୃତିରୁ ବିଚ୍ଛିନ୍ନ ହୋଇ ପଡୁଥିବାର ଲକ୍ଷ୍ୟ କରାଯାଉଛି । ଅନାବଶ୍ୟକ ଆଡ଼ମ୍ବର ଯୋଗୁଁ ପର୍ବର ପ୍ରକୃତ ମାହାତ୍ମ୍ୟ କ୍ଷୁଣ୍ଣ ହେଉଛି । ଆଜିକାଲି ଅନେକ ଶିକ୍ଷିତ ବ୍ୟକ୍ତି ସହରରେ ଚାକିରି କରି ସହରୀ ସଭ୍ୟତାର ଚାକଚକ୍ୟରେ ନିଜକୁ ହଜାଇ ଦେଇ ଜନ୍ମମାଟି ବା ପଲ୍ଲୀଭୂମିକୁ ଭୁଲିବାରେ ଲାଗିଛନ୍ତି । ସେହିପରି ଯୁବପିଢ଼ିମାନେ ମଧ୍ୟ ଅଳ୍ପ ପାଠ ପଢ଼ି ଚାକିରି ନପାଇ ବିଭିନ୍ନ କଳକାରଖାନାମାନଙ୍କରେ କାମ କରୁଛନ୍ତି । ଏମାନେ ମଧ୍ୟ ସହରୀ ମୁହାଁ ହୋଇ ଧାଇଁବାରେ ଲାଗିଛନ୍ତି । ଭୁଲିଯାଉଛନ୍ତି ଅନେକ ପର୍ବପର୍ବାଣି, ଯାନିଯାତ୍ରା । ନିଜ ସଂସ୍କୃତିକୁ ଭୁଲି ଯାଇ ଅପସଂସ୍କୃତିକୁ ସ୍ୱୀକାର କରୁଛନ୍ତି । ଭୁଲି ଯାଉଛନ୍ତି ଗାଁର ମହକ, ଶସ୍ୟ ଶ୍ୟାମଳା କ୍ଷେତ ଏବଂ ମା'ମାଟିର ବାସ୍ନା । ଶାନ୍ତି, ଶୃଙ୍ଖଳା, ଏକତା, ସଚେତନତା ଓ ସଂହତି ରକ୍ଷା କରାଯାଇ ନ ପାରିଲେ ଓ ଆମେ ମୂଳ ସଂସ୍କୃତିଠାରୁ ଦୂରେଇ ଯାଇ ଅପସଂସ୍କୃତିକୁ ଆଦରି ନେଲେ ପର୍ବପର୍ବାଣିର ପ୍ରକୃତ ସ୍ୱାଦ ଆଉ ଅନୁଭବ କରିପାରିବା ନାହିଁ ।

ଗବେଷକ, ଓଡ଼ିଆ ବିଭାଗ
କିସ୍ , କିଟ୍ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

---

# ଗୁରୁ ବନ୍ଦନା

**ଆରତୀରାଣୀ ଡାକୁଆ**

ଆସିଲାରେ ଆଜି ଗୁରୁ ଦିବସ,
ସବୁରି ମନରେ ଭୁଣି ହରଷ ।
ଗୁରୁ ପାଦେ ଆସ କରି ପ୍ରଣାମ,
ଲଭିବା ଆମେ ଅଶେଷ କଲ୍ୟାଣ ।
ଗୁରୁ ଯେ ଅଟନ୍ତି ପରମେଶ୍ୱର,
ଗୁରୁଙ୍କୁ କେବେହେଁ ନମଣୁ ନର ।
ତାଙ୍କରି ଆଶିଷ ପାଇଣ ଆମେ,
ଆଗେଇ ଯିବାରେ କର୍ତ୍ତବ୍ୟ ଧାମେ ।

ଗୁରୁ ମହାମନ୍ତ୍ର ଗୁରୁ ଦେବତା,
ଗୁରୁ ଅଟନ୍ତି ଆମ ପିତାମାତା ।
ଗୁରୁଙ୍କ ଆଦର୍ଶ ଗୁରୁଙ୍କ ନୀତି,
ମାନି ଚଳି ହେବା ମହାନ ବ୍ରତୀ ।
ଗୁରୁ ବିନା ନାହିଁ ଶିଷ୍ୟର ଗତି,
ଜ୍ଞାନଦାତା ମୂର୍ତ୍ତି ସେ ଯେ ଅଟନ୍ତି ।
ତାଙ୍କରି ଚରଣେ କରିବା ପୂଜା,
ଜଗତେ ଉଡ଼ିବ ବିଦ୍ୟାର ଧ୍ୱଜା ।

ସେହି ବିଦ୍ୟାବଳେ ହେବା ମହାନ,
ଲଭିବା ଆମେ ପୁଣି ଗୁରୁ ସମ୍ମାନ ।

ପ୍ରଧାନ ଶିକ୍ଷୟିତ୍ରୀ
ସରକାରୀ ଏନ୍.ୟୁ. ପ୍ରାଇମେରୀ ସ୍କୁଲ
ବାନ୍ଧନବାଡି, ବଲାଙ୍ଗୀର

# ଶକ୍ତି ପୂଜା ଓ ସାତ କୁଆଁରୀ ସାଧିକା

ଡକ୍ଟର ତ୍ରିନାଥ ପଟ୍ଟନାୟକ

ଓଡିଶାରେ ବହୁ ସାଧକ ଶକ୍ତି ଆରାଧନା ଫଳରେ ନାନାବିଧ ଅଲୌକିକତା ସୃଷ୍ଟି କରିପାରିଛନ୍ତି । ଓଡିଶାର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥ ସ୍ୱୟଂ ତନ୍ତ୍ରର ଦେବତା । ତନ୍ତ୍ର ପୀଠ ଉପରେ ଉପବେଶନ କରିଛନ୍ତି । ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ବିଭିନ୍ନ ତନ୍ତ୍ରପୀଠ ଓ ଦେବଦେବୀ ରାଜ୍ୟର କୋଣେ କୋଣେ ପ୍ରତିଷ୍ଠା ଲାଭ କରିଛନ୍ତି । ଝଙ୍କଡର ଶାରଳା, କାକଟପୁରର ମଙ୍ଗଳା, ଶ୍ରୀକ୍ଷେତ୍ରର ବିମଳା, କଟକର ଚଣ୍ଡୀ, କୋଣାର୍କର ରାମଚଣ୍ଡୀ, ବାଙ୍କୀର ଚର୍ଚ୍ଚିକା, ଯାଜପୁରର ବିରଜା, ତାଳଚେରର ହିଙ୍ଗୁଳା, ସମ୍ବଲପୁରର ସମଲେଶ୍ୱର, ପାଟଣାଗଡର ପାଟଣେଶ୍ୱରୀ, ଭୁବନେଶ୍ୱରର ଗୌରୀ, ବାଣପୁରର ଭଗବତୀ, କେନ୍ଦୁଝରର ତାରିଣୀ, ଗଞ୍ଜାମର ତାରାତାରିଣୀ ଓ ଆଠଗଡ ନିକଟସ୍ଥ ଭଟ୍ଟାରିକା ପ୍ରଭୃତି ଶକ୍ତିପୀଠ ସାଧକମାନଙ୍କର ପ୍ରକୃଷ୍ଟ ସିଦ୍ଧି ସାଧନାର କ୍ଷେତ୍ର ।



ପଶ୍ଚିମ ଓଡିଶାର ପ୍ରଧାନ ଶକ୍ତିପୀଠ ହେଉଛି ସୋନପୁର । ଏଠାରେ ବହୁ ସାଧକ ସାଧିକା ଅଲୌକିକ ତନ୍ତ୍ର ସାଧନ କରିଛନ୍ତି । ଏହି ପୀଠରେ ସମଲେଶ୍ୱରୀ, ଭଗବତୀ, ସ୍ତମ୍ଭେଶ୍ୱର, ବୁଢୀମା, ଶୀତଳା, ମଙ୍ଗଳା ଏବଂ ସୁରେଶ୍ୱରୀ ପ୍ରଭୃତି ଶକ୍ତି ସ୍ୱରୂପିଣୀଙ୍କର ସମାବେଶ ହୋଇଛି ।

ପଶ୍ଚିମ ଓଡିଶାରେ ଯେଉଁ ଅଞ୍ଚଳକୁ କୋଶଳ ବୋଲି କୁହାଯାଉଛି, ସେଠାରେ ଚୌହାନ ବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ । ସେହି ରାଜ୍ୟର ରାଜଧାନୀ ଥିଲା ପାଟଣାଗଡ । ଏହାର ଅନ୍ୟ ନାମ କୁଆଁରୀପାଟଣା, କାହିଁକିନା କୋଶଳରେ ମହାମାୟୀ ଶ୍ରୀଦୁର୍ଗାଙ୍କୁ କୁମାରୀ ରୂପେ ପୂଜା କରାଯାଉଥିଲା । ଏହି ଅଞ୍ଚଳର ବିଭିନ୍ନ ଅନୁନ୍ନତ ଜାତିର ସାତ ଜଣ କୁମାରୀ ଦୁର୍ଗାଙ୍କୁ ପୂଜା କରି ଅଲୌକିକ ସିଦ୍ଧିପ୍ରାପ୍ତ ହୋଇଥିଲେ । ସେମାନଙ୍କ ଶକ୍ତି ପ୍ରଦର୍ଶନରେ ସାରା ଜଗତ ସ୍ତବ୍ଧ ହୋଇ ଯାଉଥିଲା । ସେମାନେ ଥିଲେ ରକ୍ତମାଂସଧାରୀ ମାନବୀ ମାତ୍ର ଦୈବୀ ଶକ୍ତି ସମ୍ପନ୍ନା । ସାଧାରଣ ଜନତା ଶ୍ରଦ୍ଧାରେ ସେହି ସାତଜଣଙ୍କୁ ଦେବୀ ରୂପେ ଗ୍ରହଣ କରୁଥିଲେ ।

ସେହି ସାତଜଣ ସାଧିକା ହେଲେ ଜ୍ଞାନ ଦେଇ ମାଲୁଣୀ, ନିତେଇ ଧୋବଣୀ, ଲୁହକୁଟି ଲୁହୁରାଣୀ, ସୁକୁଟି ଚମାରୁଣୀ, ପତର ସଉରୁଣୀ, ଗାଙ୍ଗୀ ଗଉଡୁଣୀ ଏବଂ ଶୁଆ ତେଲୁଣୀ । ତନ୍ତ୍ର ଶାସ୍ତ୍ରମାନଙ୍କରେ ଉଲ୍ଲେଖ ଅଛି, ନିମ୍ନ ଜାତିର ନାରୀମାନଙ୍କର ଭୂମିକା ତନ୍ତ୍ର ସାଧନାରେ ମହତ୍ତ୍ୱପୂର୍ଣ୍ଣ ଭୂମିକା ନିଭାଇଥାଏ । ଏହି ତନ୍ତ୍ର ସାଧିକାମାନଙ୍କର ଗୁରୁ ଥିଲେ ଧନ୍ୱନ୍ତରୀ ନାମକ ଜଣେ





ତନ୍ତ୍ର ବିଶାରଦ ତଥା ବୌଦ୍ଧଧର୍ମୀ । ତଥାପି ତାଙ୍କର ହିନ୍ଦୁ କୌଳଶାସ୍ତ୍ର ଉପରେ ପ୍ରଚଣ୍ଡ ଜ୍ଞାନ ଓ ସିଦ୍ଧି ଥିଲା । ଧନ୍ୱନ୍ତରୀଙ୍କର ନିର୍ଦ୍ଦେଶ ତଥା କୌଳଶାସ୍ତ୍ର ଉପରେ ପ୍ରଚଣ୍ଡ ଜ୍ଞାନ ଓ ସିଦ୍ଧି ଥିଲା । ଧନ୍ୱନ୍ତରୀଙ୍କର ନିର୍ଦ୍ଦେଶ ତଥା ମାର୍ଗଦର୍ଶନରେ ଏହି ସାତଜଣ କୁଆଁରୀ ପାରଦର୍ଶିତା ପ୍ରଦର୍ଶନ କରିଥିଲେ । ବାମମାର୍ଗ ବା ତନ୍ତ୍ରୋକ୍ତ କୌଳଧର୍ମ ଅନୁସାରେ ପଞ୍ଚମକାର ପୂଜାରେ ନାରୀମାନଙ୍କର ମୁଖ୍ୟ ଭୂମିକା ରହିଛି । ସେଥିପାଇଁ ତନ୍ତ୍ରଶାସ୍ତ୍ର କୁହେ– କୁଳନାୟିକା ତନ୍ତ୍ରସାଧନରେ ନିତାନ୍ତ ଆବଶ୍ୟକ । ଏହିମାନେ ହିଁ କୁଳନାୟିକା ହୋଇପାରିବେ–

ନଟୀ, କାପାଳିକୀ, ବେଶ୍ୟା ରଜକୀ ନାପିତାଙ୍ଗନା
ବ୍ରାହ୍ମଣୀ, ଶୂଦ୍ରକନ୍ୟା ଚ ତଥା ଗୋପକନ୍ୟାକା
ମାଳାକାରସ୍ୟ କନ୍ୟା ଚ ନବକନ୍ୟା ପ୍ରକର୍ତ୍ତିତା ।

ଓଡିଶାର ଏହି ସପ୍ତ କୁମାରୀ ସାଧିକା କୁଳନାୟିକା ଥିଲେ । ସେମାନେ ମନ୍ତ୍ରଦ୍ରଷ୍ଟା । ଶାବରୀତନ୍ତ୍ରର ସ୍ରଷ୍ଟା । ବହୁ ସିଦ୍ଧିମନ୍ତ୍ର ସେମାନଙ୍କ ମୁଖରୁ ଆପେ ଆପେ ପ୍ରକାଶ ପାଇଛି । ସେହି ମନ୍ତ୍ର ବଳରେ ଜନସମାଜର ସେବା କରିଛନ୍ତି । ମନ୍ତ୍ର ବଳରେ ରୋଗ ଦୂର କରିଛନ୍ତି । କୃଷିବାଣିଜ୍ୟରେ ସାହାଯ୍ୟ କରିଛନ୍ତି । ହିଂସ୍ର ଜୀବଜନ୍ତୁଙ୍କୁ କରାୟତ କରିପାରିଛନ୍ତି । ସମାଜରେ ଥିବା ଖଳ ପ୍ରକୃତିର ବ୍ୟକ୍ତିବିଶେଷଙ୍କୁ ଉଚିତ୍ ଶିକ୍ଷା ଦେଇ ଉଚିତ୍ ବାଟରେ ଆଣି ପାରିଛନ୍ତି । ଏଭଳିକି ଉତ୍କଳୀୟ ଶାସନ କ୍ଷେତ୍ରରେ ମଧ୍ୟ ପ୍ରବେଶ କରି ରାଜା ମହାରାଜାଙ୍କୁ ସାହାଯ୍ୟ କରିବା ସହିତ ରାଜତନ୍ତ୍ରକୁ ନିୟନ୍ତ୍ରଣ କରିପାରିଛନ୍ତି ।

ସେମାନଙ୍କର ସଂକ୍ଷିପ୍ତ ପରିଚୟ ଏଠାରେ ପ୍ରଦାନ କରାଗଲା ।

ଜ୍ଞାନଦେଈ ମାଲୁଣୀ– ଜଣେ ମାଳିଘର କୁମାରୀ ଝିଅ ଜ୍ଞାନ ଦେଈ । ତାଙ୍କର ଅନ୍ୟ ନାମ ମଦନା ସୁନ୍ଦରୀ । ଏହି ଦେବୀଙ୍କର ତନ୍ତ୍ରଶକ୍ତି କରାମତି କବି ପ୍ରତାପ ରାୟଙ୍କ ଲିଖିତ 'ଶଶୀସେଣ' କାବ୍ୟରୁ ଦେଖିବାକୁ ମିଳେ । ତନ୍ତ୍ର ବଳରେ ସେ ଅବିବାହିତ ଅହିମାଣିକ୍ୟକୁ ଫୁଲ ଶୁଘାଂଇ ମେଣ୍ଢା କରିଦେଇଥିଲେ । ଦିନରେ କଳାଫୁଲ ଶୁଘାଂଇ ମେଣ୍ଢା କରି ଦେଉଥିଲାବେଳେ ରାତିରେ ଧଳାଫୁଲ ଶୁଘାଂଇ ପୁରୁଷରେ ପରିଣତ କରାଇ ଦେଉଥିଲେ । ତନ୍ତ୍ର ବିଦ୍ୟା ଓ ମନ୍ତ୍ର ବିଦ୍ୟା ପ୍ରୟୋଗରେ ଜ୍ଞାନ ଦେଈ ଧୁରିଣା ଥିଲେ । ତନ୍ତ୍ରର ଦେବତା ତନ୍ତ୍ର ଶିରୋମଣି ଶ୍ରୀଜଗନ୍ନାଥଙ୍କ ପରମ ସେବିକା ଥିଲେ ଜ୍ଞାନଦେଈ । ପ୍ରତିବର୍ଷ ରଥଯାତ୍ରାକୁ ପୁରୀ ଆସି କିଛି ଦିନ ପୁରୀରେ ବାସ କରୁଥିଲେ ଓ ବହୁ ଅଲୌକିକତା ଦେଖାଉଥିଲେ ।

ଜ୍ଞାନଦେଈ ବହୁ ମନ୍ତ୍ରର ସ୍ରଷ୍ଟା ଥିଲେ । ବଶୀକରଣ ନିମନ୍ତେ ଫୁଲମନ୍ତ୍ର ପ୍ରୟୋଗ କରିପାରୁଥିଲେ –

ଓଁ ଫୁଲ ଫୁଲ ସେବତୀ, ଏ ଫୁଲ ପିନ୍ଧଇ ଗ୍ରାମ ଦେବତୀ ।
ଆହୋ ଫୁଲ ବନ୍ଦଇ ତୋତେ,
ଅଭାବକୁ ଭାବ କରାଇଦେବୁ ମୋତେ ।
ଚାହନ୍ତେ ଲାଗେ, ଦେଖନ୍ତେ ଲାଗେ,
ଅଛାଡେ ଲାଗେ, ବିଛାଡେ ଲାଗେ ।
ଥାନେ ଲାଗେ, ଯୌବନ ଲାଗେ,
ଲାଗେ ଲାଗେ ନଲାଗୁ ବୋଲି,
କାହାର ଆଜ୍ଞା କାଉଁରୀ କାମଚଣ୍ଡୀ
ଜ୍ଞାନଦେଈ ମାଲୁଣୀର କୋଟିଏ ଆଜ୍ଞା ।

ଲୁହୁକୁଟୀ ଲୁହୁରୁଣୀ– ସାତଜଣ କୁଆଁରୀ ସାଧିକାମାନଙ୍କ ମଧ୍ୟରେ ଜ୍ଞାନଦେଈ ସବୁଠାରୁ ଶ୍ରେଷ୍ଠ । ତା'ପରେ ଦ୍ୱିତୀୟ ସ୍ଥାନରେ ଲୁହୁରୁଣୀଙ୍କ ସ୍ଥାନ । ସେ ଇଚ୍ଛାଧାରୀ ଥିବା ଯୋଗୁଁ ଅନ୍ୟମାନଙ୍କୁ ନିଜ ତନ୍ତ୍ର ବିଦ୍ୟା ବଳରେ ପରାସ୍ତ କରିଦେଇ ପାରୁଥିଲେ । ବହୁ ତନ୍ତ୍ର ସାଧକ ତାଙ୍କଠାରୁ ପରାସ୍ତ ହୋଇଛନ୍ତି । ଏଣୁ ଗୁଣିଆମାନେ ଲୁହୁକୁଟୀଙ୍କୁ ନିଜର ଗୁରୁରୂପେ ଗ୍ରହଣ କରୁଥିଲେ । ଲୁହୁକୁଟୀ କମାର ଜାତିର କୁମାରୀ କନ୍ୟା । ଅନିନ୍ଦ୍ୟ ସୁନ୍ଦରୀ ସେ ଥିଲେ । ପୂର୍ଣ୍ଣ ଯୌବନା । ଶ୍ୟାମଳ ତନୁଲତା ହୃଷ୍ଟପୁଷ୍ଟ ଶରୀର । ଆଖି ଦୁଇଟି ସତେ ଯେମିତି ଜ୍ୱଳନ୍ତ ଅଗ୍ନିପିଣ୍ଡ । ମଥାରେ ଲାଲ ରଙ୍ଗର ସିନ୍ଦୂର ଟିପା । ସବୁବେଳେ ଲାଲ୍ ଶାଢୀ ପରିଧାନ କରିଥାନ୍ତି । ପ୍ରବଳ ବୁଦ୍ଧିମତୀ । ଲୁହୁକୁଟୀଙ୍କର ତନ୍ତ୍ରବିଦ୍ୟା ସାରାଜଗତ ବିଖ୍ୟାତ । ସେ ଗାରୁଡିମନ୍ତ୍ର ବଳରେ ଅସାଧ୍ୟ ସାଧନ କରି ପାରୁଥିଲେ ।

ଲୁହୁକୁଟୀ ଲୁହୁରୁଣୀ ବହୁ ଗୁଣିଗାରେଡି ମନ୍ତ୍ରର ଦ୍ରଷ୍ଟା । ତାଙ୍କର ଗୋଟିଏ ମନ୍ତ୍ର ଏଠାରେ ପ୍ରଦାନ କରାଗଲା–





ବାଣ ବାଣ ରାମବାଣ କତୁରୀର
କତୁରୀ ତୁ କାହୁଁ ଆସିଲୁ ?
ଶ୍ରୀରାମଙ୍କ ହାତ ମୁଠାରୁ ଆସିଲି
ତୁ କିସ କରିଥିଲୁ ?
ରାବଣର ମୁଣ୍ଡ କାଟିଥିଲି,
ତୁ ଯା ଯା ଅମୁକର ମୁଣ୍ଡ କାଟିବୁ
କାଟ ନ କାଟ ବୋଲି କାହାର ଆଜ୍ଞା
ନିତେଇ ଧୋବଣୀ ପତର ସଉରୁଣୀ
ଲୁହକୁଟୀ ଲୁହୁରାଣୀ ଜ୍ଞାନଦେଈ ମାଲୁଣୀ
ଶୁକୁଟୀ ଚମାରୁଣୀ ଶୁଆତେଲୁଣୀ
ଗାଙ୍ଗୀ ଗଉଡୁଣୀର କୋଟି କୋଟି ଆଜ୍ଞା ।

ନିତେଇ ଧୋବଣୀ– ରଜକ ଜାତିର ଏ ଅପୂର୍ବ ସୁନ୍ଦରୀ ଥିଲେ ନିତେଇ । ଅବିବାହିତ ଅବସ୍ଥାରେ ତନ୍ତ୍ର ସାଧନା କରିଥିଲେ । କୋଶଳରୁ ଆସି ଯାଜପୁର ଓ ପରେ ପୁରୀ ନିକଟରେ ବସବାସ କରୁଥିଲେ । ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ଓ ପ୍ରଭୁଙ୍କଠାରୁ ସାଧନାର ପ୍ରେରଣା ପାଉଥିଲେ । ନିତେଇଙ୍କ ରୂପ ଯୌବନରେ ବିମୁଗ୍ଧ ହୋଇ ବହୁ ପୁରୁଷ ପ୍ରେମ ଭିକ୍ଷା କରିଛନ୍ତି ଓ ପରାଭବ ମଧ୍ୟ ପାଇଛନ୍ତି ।

ବିପୁଳ ନିତମ୍ବ, କୁଟୀଳ ବେଣୀ, ମଦ କଳକଳ କଣ୍ଠ ଭାଷେଣୀ, ଘନ ଜଘନୀ ପୃଥୁତର ସ୍ତନୀ, କ୍ଷୀଣୋଦରୀ କୃଶତନୁ ସୁନ୍ଦରୀ ହେଉଛନ୍ତି ନିତେଇ ।

ମାଦଳା ପାଞ୍ଜିରେ ଉଲ୍ଲେଖ ଅଛି, ନିତେଇ ଧୋବଣୀଙ୍କ ସହିତ ଚୋଡଗଙ୍ଗଦେବଙ୍କର ପ୍ରଥମ ସାକ୍ଷାତ ଯାଜପୁରଠାରେ ହୋଇଥିଲା । ଏଥକୁ ସେ ନିତେଇ ଧୋବଣୀକୁ ଦେଖିଲେ ଭାତ ରାନ୍ଧୁଅଛି । ଗୋଡ ଗୋଟିଏ ଜାଳୁଅଛି । ଏହା ଡାକ ଶୁଣି କୋଳପୁଅକୁ ଚୁଲିରେ ଦେଇ ଏହାକୁ କଥା କହିଲା । ଚୋଡଗଙ୍ଗଙ୍କ ମାତା ରାଜସୁନ୍ଦରୀଙ୍କ ସଙ୍ଗାତ ଥିଲେ ଏହି ସାଧିକା । ଆଉ ମଧ୍ୟ ମାଦଳା ପାଞ୍ଜିରେ ଉଲ୍ଲେଖ ଅଛି, ନିତେଇ ଧୋବଣୀ ତନ୍ତ୍ରବଳରେ ସୁବର୍ଣ୍ଣ କେଶରୀଙ୍କୁ ହରାଇ ଚୋଡଗଙ୍ଗକୁ ରାଜା କରାଇଥିଲେ । ସିଦ୍ଧରାଜାକୁ ଉଚ୍ଛନ୍ନ କରାଇ ରାଜା କଲା ।

ନିତେଇ ଧୋବଣୀ ବହୁ ମନ୍ତ୍ରର ସ୍ରଷ୍ଟା ଥିଲେ–

ଓଁ ବାଣକି ବାଣ ଶୂନ୍ୟବାଣ, ସ୍ୱର୍ଗମଞ୍ଚକିୟେ
କରେ ବାଣ । ଯାହାକୁ ବୋଲିବି ତାହାକୁ ଖା
ମଶାଣି ଚଣ୍ଡି ସେଥିରେ ଥା, ମଶାଣି ଭୂମିକୁ ଘେନିଯା
କାହାର ଆଜ୍ଞା, ନିତେଇ
ଧୋବଣୀର କୋଟି କୋଟି ଆଜ୍ଞା ।

ନିତେଇ ଧୋବଣୀ କାଉଁରୀ ବିଦ୍ୟା ବଳରେ ଅସାଧ ସାଧନ କରୁଥିଲେ । ପ୍ରବାଦ ଅଛି, କାଉଁରୀ କାମଚଣ୍ଡୀ ଦେଶର କିମିଆଁ ଜାଣିଥିବା ପିତେଇ ପତ୍ର ସଉରୁଣୀ ଗୋଟିଏ ବରଗଛରେ ଚଢ଼ି ମନ୍ତ୍ରବଳରେ ସେ ବରଗଛକୁ ଉଡାଇ ଆଣି ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ଆସୁଥିଲା । ପୁରୀ ନିକଟସ୍ଥ ଚାରିବଲା ଗ୍ରାମ ନିକଟରେ ସେ ବରଗଛ ଉଡିଯିବା ସମୟରେ ତା'ର ଛାଇ ପୋଖରୀରେ ପଡିଲା । କାଉଁରୀ ବିଦ୍ୟା ଜାଣିଥିବା ନିତେଇ ଧୋବଣୀ ସେହି ପୋଖରୀ ତୁଠରେ ଲୁଗା କାଚୁଥିଲେ । ସେ ଗଛର ଛାଇ ଦେଖି କିମିଆଁ ବଳରେ ଉକ୍ତ ଗଛକୁ ବନ୍ଧନ କରି ସେହି ସ୍ଥାନରେ ଅଟକାଇ ଦେଲେ । ସେହି ଦିନଠାରୁ ସେହି ଗଛଟି ସେହିଠାରେ ରହିଲା । ସେହି ଗଛଟି ଏ ପର୍ଯ୍ୟନ୍ତ କାଉଁରୀବର ନାମରେ ଅଭିହିତ ହୋଇ ରହିଛି ।

(ପୂର୍ଣ୍ଣଚନ୍ଦ୍ର ଭାଷାକୋଷ)

ସୁକୁଟୀ ଚମାରୁଣୀ– ଚମାର ଜାତିର ସୁନ୍ଦରୀ କୁଆଁରୀ କନ୍ୟା ସୁକୁଟୀ । ସେ କ୍ଷୀଣାଙ୍ଗ । ଏଣୁ ଲୋକେ ସୁକୁଟୀ ବୋଲି ଡାକନ୍ତି । ସେ ପରୋପକାରିଣୀ, ଦୟାବତୀ ତଥା ନରମ ପ୍ରକୃତିର । ସେ ସହଜରେ ଅନ୍ୟକୁ ବଶ କରିଦେଇ ପାରୁଥିଲେ । ତାଙ୍କ କଥାରୁ ସହଜରେ କେହି ବାହାରିଯାଇ ପାରୁନଥିଲେ । ହଜିବା ଜିନିଷ ଖୋଜି ବାହାର କରିଦେବା, ଚୋର ଧରିବା, ଅସାଧ ରୋଗରୁ ରୋଗୀକୁ ମୁକ୍ତି କରାଇବା ସୁକୁଟୀର କାମ । ଗୋରଚନା ମିଶ୍ରିତ ଏକ ଅଞ୍ଜନ ସିଦ୍ଧି ସେ ଜାଣିଥିଲେ । ତାକୁ ମଥା ଉପରେ ବୋଲି ନିଜେ ତ କେଉଁ ଆଡେ ଅଦୃଶ୍ୟ ହୋଇ ଯାଉଥିଲେ ଅନ୍ୟକୁ ମଧ୍ୟ ସେ ଚାହିଁଲେ ସେ ଅଞ୍ଜନ ବଳରେ ଅଦୃଶ୍ୟ କରାଇ ଦେଉଥିଲେ । ଶୂନ୍ୟେ ଶୂନ୍ୟେ ଆକାଶ ମାର୍ଗରେ ଉଡି ଯାଉଥିଲେ । ମା' ଦୁର୍ଗାଙ୍କ କୃପାରୁ ଆକାଶ ଗମନ ବିଦ୍ୟା ସିଦ୍ଧି ଥିଲା । ଶକ୍ତି ଉପାସିକା ହେଲେ ସୁଦ୍ଧା ଶ୍ରୀଜଗନ୍ନାଥଙ୍କଠାରେ ପ୍ରବଳ ଭକ୍ତି ଓ ସମର୍ପଣ ଭାବ ଥିଲା । ଜଳ ଉପରେ ସେ ମଧ୍ୟ ଅକ୍ଲେଶରେ ଚାଲିଯାଇ ପାରୁଥିଲେ । ଏଣୁ ରାଜଦରବାରରେ ସୁକୁଟୀର ସମ୍ମାନ ଥିଲା ।





ସେ ମଧ୍ୟ କେତେକ ସିଦ୍ଧମନ୍ତ୍ରର ଦ୍ରଷ୍ଟା ଓ ସ୍ରଷ୍ଟା । ଏବେବି ତନ୍ତ୍ର ସାଧକମାନେ ସେ ରଚନା କରିଥିବା ମନ୍ତ୍ରକୁ ପ୍ରୟୋଗ କରନ୍ତି ।

ଓଁ ପାଞ୍ଚଖଣ୍ଡ ଧୂଳୁ ହାତ । ତିଲେଖ ମାଥ । ଲାଲୁବେଣ୍ଟି
ତେର ପାପ ମିଳେ ଗାଲା ରାଜା
ଇନ୍ଦ୍ରେ ପାଳେ ହଉ ଗୋରଗଣ୍ଡ ।
ଫିରିକି ନାଇଁ । ବାପିବନ୍ଧ ବରକୋଟି ।
କପର କନ୍ୟମୂଳ ଅଷ୍ଟଜ୍ୱର
ବ୍ୟାଧି, ମୋହର ଅଙ୍ଗେ ପଡି ଭସ୍ମ ପାତେ ଯାଇଁ ।
ଏ ସୁକୁଟୀ ଚମାରୁଣୀର କୋଟି କୋଟି
ଆଜ୍ଞା ଛାଡି ଯା ଛାଡିଯା.... ।

ଟିକାଇମା ପତର ସଉରୁଣୀ– ଶବର ଜାତିର କୁଆଁରୀ କନ୍ୟା ଟିକାଇମା । ଅତ୍ୟନ୍ତ ସୁନ୍ଦରୀ, ହୃଷ୍ଟପୁଷ୍ଟ ଶରୀର । ପତ୍ରକୁ ସିଲାଇ କରି ବସ୍ତ୍ର ରୂପେ ପରିଧାନ କରିଥାନ୍ତି । ତାଙ୍କୁ ଲୋକେ ଶ୍ରଦ୍ଧାରେ ପର୍ଣ୍ଣଶବରୀ ବୋଲି କହିଥାନ୍ତି । ସେ ପୂର୍ବଜନ୍ମ ପ୍ରଭାବର ଜ୍ଞାନୀ ଓ ପଣ୍ଡିତା । ଜାତି ଅନୁଯାୟୀ ସରଳ କପଟ ହୀନା ମାତ୍ର ରାଗିଗଲେ କ୍ଷଣକରେ ଉଗ୍ରରୂପ ଧାରଣ କରିଥାନ୍ତି । ସାଧାରଣ ଲୋକେ ଡାକିଥାନ୍ତି ପତ୍ରପିନ୍ଧି ! ପତ୍ର ସଉରୁଣୀ ଆଜ୍ଞା ଦେଲେ– ବଡ ବଡ ଉଚ୍ଚ ବୃକ୍ଷ ଆପେ ଆପେ ତଳକୁ ନଇଁ ଆସି ଫଳ ଫୁଲ ପତ୍ର ଦେଇଥାନ୍ତି । ପତ୍ର ସଉରୁଣୀ ଭବିଷ୍ୟ କଥା କହି ଦେଇ ପାରନ୍ତି । ବିପଦ ଥିଲେ ମନ୍ତ୍ର ଯନ୍ତ୍ର ବଳରେ ସମାଧାନ ମଧ୍ୟ କରାଇ ଦିଅନ୍ତି । ତାଙ୍କୁ ପ୍ରତିକାର ବିଧାନ ଜଣା । ବାକ୍ ସିଦ୍ଧିଥିବା ଯୋଗୁଁ ଯାହାକୁ ଯାହା କହୁଥିଲେ ତାହା ନିଶ୍ଚିତ ରୂପେ ଫଳି ଯାଉଥିଲା । ଶକ୍ତି ସାଧିକା ମା' ଦୁର୍ଗା ତଥା ସମଲେଇଙ୍କ କରୁଣା ତାଙ୍କ ପ୍ରତି ଥିଲା । ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ । ପ୍ରତିବର୍ଷ ରଥଯାତ୍ରାକୁ ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ପୁରୀ ଆସି ବଡଦାଣ୍ଡରେ ବହୁ କୌତୁକ ବିଦ୍ୟା ପ୍ରଦର୍ଶନ କରନ୍ତି । ସାତ ଜଣ ଯାକ କୁମାରୀ ସାଧିକା ଏକତ୍ର ହୋଇ ହସଖୁସି କରନ୍ତି ।

ପତ୍ର ସଉରୁଣୀଙ୍କର ବାକ୍ ସିଦ୍ଧିଥିବା ଯୋଗୁଁ ବିଭିନ୍ନ ଗାରେଡି ମନ୍ତ୍ର ତାଙ୍କ ତୁଣ୍ଡରୁ ବାହାରୁଥିଲା ଓ ତାହା ମଧ୍ୟ କାର୍ଯ୍ୟ କରୁଥିଲା । ତାଙ୍କର ତେଲ ମୋହିନୀ ମନ୍ତ୍ର ଜଗତ ବିଖ୍ୟାତ ।

ଓଁ କାହୁଁ ଅଇଲେ ଚଣ୍ଡୀ, ହାତେ ଦେଲେ ତେଲ ଖଣ୍ଡି,
ହାତେ ଲଗାଇଲେ ସୁନ୍ଦର ଦିଶଇ,
ଅସୁକାଇ ପୋଇଲି ଦେଖିଲେ ଡରଇ,
ନ ଦେଖିଲେ ଜୀଅନ୍ତେ ପାଦତଳେ ଖଟଇ,
ମରନ୍ତେ ମଶାଣି ଭୂମିରେ ଲେଟଇ ।
ଲାଗେ ତେଲ ଲାଗେ,
ନଲାଗୁ ବୋଲି କାହାର ଆଜ୍ଞା କାଉଁରୀ
କାମଚଣ୍ଡୀ କିଟାଇମା ପତ୍ର
ସଉରୁଣୀର କୋଟୀ କୋଟୀ ଆଜ୍ଞା ।

ବଶୀକରଣ ଧୂଳିମନ୍ତ୍ର–

ଓଁ ଧୂଳିଧୂସର । ଧୂଳି ପରମେଶ୍ୱର । ହାଥୀ ଫୁଟଇ, ଘୋଡା ଫୁଟଇ, ମୋତେ ନଦେଖିଲେ ଅମୁକାଇ ପଞ୍ଚ ଆତ୍ମା ଫୁଟଇ । ଆସୁ ଫୁଟଇ । ଯାଉ ଫୁଟଇ । ଲାଗ ଲାଗ, କାହାର ଆଜ୍ଞାଁ । କିଟାଇ ମା' ପତ୍ର ଶଉରୁଣୀର କୋଟୀୟେ ଆଜ୍ଞାଁ । ଧୂଳି ମୁଣ୍ଡେ ଘେନିମା ଯାହାକୁ ପକାଇବ ସେ ବଶ ହୋଇ ।

ଗାଙ୍ଗୀ ଗଉଡୁଣୀ– ଗୋପାଳ ଘରର କୁଆଁରୀ ଝିଅ ଗାଙ୍ଗୀ । ଖାଣ୍ଟି ଓଡିଆଣୀ । ବଳାଗଣ୍ଠି ଉପରକୁ ଲୁଗା ପିନ୍ଧେ । ମୁଣ୍ଡରେ ବାଙ୍କ ଖୋସା । ଗାଙ୍ଗୀ ଗାରେଡି ଶାସ୍ତ୍ରରେ ନିପୁଣା । ଗୋରୁ ଗାଈ ଛେଳି ମେଣ୍ଢା ଆଦି ଗୃହପାଳିତ ପ୍ରତ୍ୟେକ ପଶୁପକ୍ଷୀଙ୍କର ଚିକିତ୍ସା ଗାଙ୍ଗୀ କରି ଜାଣନ୍ତି । ମଣିଷ ପଶୁ ପକ୍ଷୀ ସମସ୍ତଙ୍କୁ ଝାଡି ଫୁଙ୍କି ଭଲ କରି ଦିଅନ୍ତି । ଯେଉଁ ଦୁଷ୍ଟ ଗୁଣିଆମାନେ ଗୁଣି କରି ଗାଈର କ୍ଷୀର ହରଣ କରି ନେଉଥିଲେ କିମ୍ବା କ୍ଷୀରକୁ ରକ୍ତରେ ପରିଣତ କରି ଦେଉଥିଲେ, ବାଣପେଶୀ ଗାଈର ଗର୍ଭନଷ୍ଟ କରି ଦେଉଥିଲେ । ଗାଙ୍ଗୀଙ୍କ ନିକଟରେ ଏଭଳି ଅଭିଯୋଗ ପହଞ୍ଚିଲେ ସଙ୍ଗେ ସଙ୍ଗେ ତାର ପ୍ରତିକାର କରୁଥିଲେ । ଦୂବ ସୋରିଷ ମନ୍ତୁରାଇ ଗାଈ ଉପରକୁ ଛାଡି ଦେଉଥିଲେ ! ସଙ୍ଗେ ସଙ୍ଗେ ଗାଈ ଠିକ୍ ହୋଇ ଯାଉଥିଲା । ଯିଏ ଏପରି ଅପକର୍ମ କରିଥାଏ, ତା' ଉପରକୁ ନେଉଟାଣି ବାଣ ମାରୁଥିଲେ । ସେ ରକ୍ତବାନ୍ତି କରି ପକାଉଥିଲା ।

ଚୋର ଧରିବାରେ ଗାଙ୍ଗୀ ପାରଙ୍ଗମ ଥିଲେ । କଉଡି ଦୁଇଟିକୁ ସିନ୍ଦୂର ଲଗାଇ ଫିଙ୍ଗି ଦେଲେ ସେ ଶୂନ୍ୟେ ଶୂନ୍ୟେ

ଉଡିଯାଇ ଚୋରକୁ ଧରି ଆଣୁଥିଲା । ଗାଙ୍ଗୀ ମଧ୍ୟ ସିଦ୍ଧମନ୍ତ୍ରର ସ୍ରଷ୍ଟା ଥିଲେ ।

– ଓଁ ଫୁଲଫଳ କାଉଁରୀ ଫୁଲ । ସୁଲଭ ଲାଗ ଫୁଲ,
ବର୍ଣ୍ଣପାଣି, ହୃଦୟ ଚାଲଣି । ମା' ବାପ ମୁହଁ ତୋଡସି ।
ଧାଗଡା ତୁଲେ ମାଡି ତୋଡସି । ଅମୁକାଇ ନାମେ ସ୍ତିରୀ
ଅମୁକାଇ ନାମେ ମୋହେ ନାଭିପରେ ମାଡ । ବିରହ ନାବେ
ଚଢି କାହାର ଆଜ୍ଞା, କାଉଁରୀ କାମଚଣ୍ଡୀ ଗାଙ୍ଗୀ ଗଉଡୁଣୀର,
କୋଟୀ କୋଟୀ ଆଜ୍ଞା ।

ଶୁଆ ତେଲୁଣୀ– ତେଲି ଘରର କୁଆଁରୀ କନ୍ୟା ଶୁଆ । ଗାରେଡି ବିଦ୍ୟାରେ ଧୁରନ୍ଧର । ମା' ସମଲେଇ ଓ ଶ୍ରୀଜଗନ୍ନାଥଙ୍କ ଅପାର କରୁଣାରୁ ଅସାଧ ସାଧନ କରିପାରନ୍ତି । ବହୁ ଅଲୌକିକ ଘଟଣା ଘଟାଇ ଲୋକମାନଙ୍କୁ ଆଶ୍ଚର୍ଯ୍ୟ କରାଇ ଦିଅନ୍ତି ଶୁଆ । ଶୂନ୍ୟରେ ଦୋଳି ଝୁଲାଇ ଦେଇପାରନ୍ତି । ଯଦି କିଏ ଅତିଥି ଘରକୁ ଆସୁଥିଲେ, ତାଙ୍କର ତେଲ ମାଖିବା ଆବଶ୍ୟକ ପଡୁଥିଲା ତେବେ ଶୁଆ ସଙ୍ଗେ ସଙ୍ଗେ ଗିନାରେ ପାଣି ଗିନାଏ ମନ୍ତୁରାଇ ପଠାଇ ଦେଉଥିଲେ । ଗିନାରେ ଅତିଥି ହାତ ବୁଡାଇବା ସଙ୍ଗେ ସଙ୍ଗେ ପାଣି ତେଲରେ ପରିଣତ ହୋଇ ଯାଉଥିଲା ।

ଶୁଆ ମଧ୍ୟ ଜଣେ ଉତ୍ତମ ଜ୍ୟୋତିଷ ଥିଲେ । କୌଣସି ଦ୍ରବ୍ୟ ହଜିଗଲେ, ଚୋରି ହୋଇଗଲେ ସେ ଗଣନା କରି କହି ଦେଇପାରୁଥିଲେ । କେଉଁ ଦିଗକୁ ଗଲେ ଶିକାର ମିଳିବ ସେ କଥା ଶିକାରୀମାନଙ୍କୁ ବତାଇ ଦେଉଥିଲେ । ଯେଉଁମାନେ ଗ୍ରହ ଦୋଷରେ ଘାରି ଦେଉଥିଲେ ଗ୍ରହଦୋଷ ନିବାରଣ ନିମନ୍ତେ ଶାନ୍ତିକର୍ମ ବିଧାନ ସେ କରାଉଥିଲେ । ମନ୍ତ୍ର ବଳରେ ବ୍ୟାଘ୍ର, ସର୍ପ ତଥା ହିଂସ୍ର ଜନ୍ତୁମାନଙ୍କୁ ସ୍ତମ୍ଭନ କରିଦେଇ ପାରୁଥିଲେ ।

ପାଣିମନ୍ତ୍ର–

ଆହେ ଜଳ ତୋତେ ପିଅନ୍ତେ କେବଳ ଫଳ, ବାଳା ପାଣି, ସୁଚଳ କେଶ, ସାତନଈ ସାତଯୋଡ, ପାରି ହୋଇବୁ ଥଳେ ଚାଲିବୁ । ଅମୁକାଇ ଆଣି ମୋ ପାଦତଳେ ପକାଇବୁ ନ ପକାଉ ବୋଲି କାହାର ଆଜ୍ଞା, କାଉଁରୀ କାମଚଣ୍ଡୀ ଶୁଆ ତେଲୁଣୀର କୋଟି କୋଟି ଆଜ୍ଞା ।

ଏହି ସପ୍ତକୁମାରୀ ତନ୍ତ୍ର ଓ ଶାକ୍ତ ପରମ୍ପରାର ଜଣେ ଦିଗ୍‌ଦର୍ଶିକା । ଶ୍ରୀଦୁର୍ଗାଙ୍କର ଅନନ୍ୟ ଶକ୍ତି ଏମାନଙ୍କଠାରେ ସଂଚରି ଯାଇଥିଲେ । ଲୋକେ ଏମାନଙ୍କୁ ଜୀବନ୍ତ ଦେବୀରୂପେ ସ୍ୱୀକାର କରୁଥିଲେ । ନିତେଇ ଧୋବଣୀଙ୍କ ପୁରୀ ସ୍ଥିତ ମାର୍କେଣ୍ଡେଶ୍ୱର ପୋଖରୀର ପୂର୍ବ ଦକ୍ଷିଣ ଦିଗ କୋଣରେ ନିତେଇ ଧୋବଣୀ, ଚୋଡ଼ଗଙ୍ଗଦେବଙ୍କ ମୂର୍ତ୍ତିସବୁ ପୂଜା କରାଯାଉଛି । ମାତ୍ର ଏମାନେ କେବେହେଲେ ଦେବୀର ସମ୍ମାନ ନେବା ପାଇଁ ଚାହିଁ ନାହାନ୍ତି । ସେମାନେ ସାଧାରଣ ମଣିଷ ସହିତ ମଣିଷ ହୋଇ ସମାଜର ସୁଖଦୁଃଖରେ ସାମିଲ ହେବା ନିମନ୍ତେ ଚେଷ୍ଟା କରିଛନ୍ତି । ଏମାନେ ଅଜସ୍ର ମନ୍ତ୍ର ରଚନା କରିଯାଇଛନ୍ତି । ସେସବୁ ଓଡିଶାର ଘରେ ଘରେ ତାଳପତ୍ର ପୋଥିମାନଙ୍କରେ ଅଛି । ତନ୍ତ୍ରଶାସ୍ତ୍ର ଗୋପନୀୟ ଭାବି ଲୋକେ ସେହି ତାଳପତ୍ର ପୋଥିଗୁଡିକୁ ଗବେଷକମାନଙ୍କୁ ଦେଖାଉ ନାହାନ୍ତି । ଫଳରେ ଏ ଅମୂଲ୍ୟ ତନ୍ତ୍ର ସାହିତ୍ୟ ଦିନେ ଲୋପ ପାଇଯିବ । ରାଜ୍ୟ ସଂଗ୍ରହାଳୟରେ କେତେକ ତନ୍ତ୍ର ପୋଥିରେ ଏମାନଙ୍କ ମନ୍ତ୍ର ଦେଖିବାକୁ ମିଳେ । ସେସବୁ ଏକତ୍ର କରାଯାଇ ପ୍ରକାଶ କରାଗଲେ ଓଡିଶାର ପ୍ରାଚୀନ ତନ୍ତ୍ର ସାହିତ୍ୟ ସୁରକ୍ଷିତ ହୋଇପାରନ୍ତା ଓ ଏହି ସାତ ତନ୍ତ୍ର ସାଧିକାଙ୍କୁ ସମସ୍ତେ ଚିହ୍ନି ପାରନ୍ତେ ।

ଆଲୋକ ନଗର
ନିଆଳୀ – ୭୫୪୦୦୪, ଜି – କଟକ

❖ ❖ ❖

# ଭକ୍ତ କବି ମଧୁସୂଦନ ଓ ବ୍ରାହ୍ମଧର୍ମ

ସୁଚିତ୍ରା ବେହେରା

ନିଖିଳ ମାନବ ହୃଦୟକୁ ମିଶାଇ ସକଳ ସଂକୀର୍ଣ୍ଣତାର ଆବେଷ୍ଟନୀ ମଧ୍ୟରୁ ମୁକ୍ତ କରି ଏକ ବିଶ୍ୱବିଧାତା ଓ ଏକ ମାନବ ଜାତି ପରିପ୍ରକାଶ କରିଥିବା ମହାନ ବ୍ୟକ୍ତିତ୍ୱ ଥିଲେ ଭକ୍ତ କବି ମଧୁସୂଦନ ରାଓ । ୧୮୫୩ ମସିହାରେ ପୁରୀଠାରେ ଏକ ଧର୍ମପ୍ରାଣା ଘରେ ତାଙ୍କର ଜନ୍ମ । ତେଣୁ ବାଲ୍ୟକାଳରୁ ସେ ଥିଲେ ଧର୍ମପ୍ରାଣା । ମେଧାବୀ, ଧର୍ମପ୍ରାଣତା ଓ ଅଧ୍ୟବସାୟୀ ଶକ୍ତି ଯୋଗୁଁ ସେ ସମସ୍ତଙ୍କ ହୃଦୟରେ ପ୍ରିୟପାତ୍ର ହୋଇଥିଲେ । ପୁରୀରେ ଅଧ୍ୟୟନ କରୁଥିବା ସମୟରେ ପଣ୍ଡିତ ହରିହର ଦାସଙ୍କଠାରୁ ମୂର୍ତ୍ତି ପୂଜାର ପ୍ରସାରଣ ସମ୍ପର୍କରେ ଜ୍ଞାନ ଆହରଣ କରିଥିଲେ । ହରିନାଥ ପଟ୍ଟନାୟକ ଓ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ପ୍ରେରଣାରେ ସେ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ । ରାଧାନାଥ ଏହି ସମୟରେ ସ୍କୁଲ୍ ବିଭାଗର ଜଏଣ୍ଟ ଇନ୍‌ସପେକ୍ଟର ଥିଲେ । ତେଣୁ ରାଧାନାଥ, ଫକୀରମୋହନ ଓ ମଧୁସୂଦନଙ୍କ ତ୍ରିବେଣୀ ସଙ୍ଗମରେ ଆଧୁନିକ ଓଡ଼ିଆ ସାହିତ୍ୟର ହୋଇଥିଲା ଜୟଯାତ୍ରା ।



ମଧୁସୂଦନ ଥିଲେ ବ୍ରାହ୍ମବାଦୀ । ସେ ରାଧାନାଥଙ୍କର ପଟ୍ଟଶିଷ୍ୟ ଥିଲେ । ତାଙ୍କର ଜୀବନ ଏବଂ ଧର୍ମଦର୍ଶନ ଏକ ଓ ଅଭିନ୍ନ । ତାଙ୍କର ଧର୍ମ ସଂକୀର୍ଣ୍ଣ ନଥିଲା । ପରମାତ୍ମା ସହିତ ଜୀବାତ୍ମାର ମଧୁର ସମ୍ପର୍କ ଏହି ଧର୍ମର ଲକ୍ଷ୍ୟ । ଜୀବାତ୍ମା ମଧ୍ୟରେ ପରମାତ୍ମାର ଆବିର୍ଭାବ ତାଙ୍କର ଉଦ୍ଦେଶ୍ୟ । ବ୍ରାହ୍ମଧର୍ମର ଆଦର୍ଶ ତାଙ୍କ ଜୀବନରେ ଗଭୀର ରେଖାପାତ କରିଥିଲା ।

ବ୍ରାହ୍ମଧର୍ମର ସାରାଂଶ ହେଉଛି ଅନନ୍ତ ପରଂବ୍ରହ୍ମଙ୍କର ଉପାସନା । ଏହି ଧର୍ମ ମତରେ ବିଶାଳ ବ୍ରହ୍ମାଣ୍ଡ ହେଉଛି ବ୍ରାହ୍ମ ମନ୍ଦିର । ନିର୍ମଳ ହୃଦୟ ହେଉଛି ତୀର୍ଥଭୂମି । ସତ୍ୟ ହେଉଛି ଏହି ଧର୍ମର ଅନ୍ତର୍ବାଣୀ, ବିଶ୍ୱାସ ହେଉଛି ଏହାର ମୂଳମନ୍ତ୍ର ।

ବ୍ରାହ୍ମବାଦୀମାନେ ହୃଦୟ, ପ୍ରେମ, ସତ୍ୟ, ବିଶ୍ୱାସ ଉପରେ ଅଧିକ ଗୁରୁତ୍ୱ ଦିଅନ୍ତି । ଈଶ୍ୱର ହେଉଛନ୍ତି ଅନନ୍ତ, ସେ ଏକ ଓ ଅଭିନ୍ନ । ସେ ମଙ୍ଗଳମୟ । ସେ ହିତ ମଙ୍ଗଳମୟଙ୍କ ଅନୁଗତ ହେବା ହିଁ ପ୍ରକୃତ ସତ୍ୟକୁ ଅନୁଭବ କରିବା, ଆତ୍ମାରେ ପରମାତ୍ମାକୁ ପ୍ରତିଷ୍ଠା କରିବା ସହିତ ଧର୍ମକୁ ସମାଜମୁଖୀ କରି ସକଳ ମଣିଷର ଆଧ୍ୟାତ୍ମିକ ବିକାଶ କରିବା ଏହି ଧର୍ମର ମୂଳ ଲକ୍ଷ୍ୟ ।

ମଧସୂଦନଙ୍କ ବାଣୀ ଥିଲା, ଯିଏ ଭକ୍ତ ସିଏ ବ୍ରାହ୍ମ ଓ ବ୍ରାହ୍ମଣ । ଈଶ୍ୱର ମଣିଷର ସୃଷ୍ଟିକର୍ତ୍ତା । ତେଣୁ ଈଶ୍ୱର ହିଁ ସତ୍ୟ ଧର୍ମର ପ୍ରେମ । ଏହି ଧର୍ମ ଥିଲା ତାଙ୍କ ଜୀବନର ବ୍ରତ । ସେ ଈଶ୍ୱରଙ୍କଠାରେ ନିଜକୁ ସମର୍ପଣ କରିଦେଇଥିଲେ । ବେଦ, ବେଦାନ୍ତ ଓ ଉପନିଷଦ ପ୍ରଭୃତି ଅଧ୍ୟୟନ କରି ତା'ର ସାରସ୍ୱତକୁ ଅନୁସରଣ କରି ଜୀବନଯାପନ କରୁଥିଲେ । ତାଙ୍କ ବିଚାରରେ ସମଗ୍ର ମାନବ ସମାଜ ବିସ୍ତୃତ ପରିବାର ସଦୃଶ । ପ୍ରତ୍ୟେକ ନାରୀ ଜନନୀ, ଭଗିନୀ ଓ ବ୍ରହ୍ମକନ୍ୟା ।

ଅମୃତର କବି ମଧୁସୂଦନ ପ୍ରକୃତି ଭିତରେ ଉପଲବ୍ଧି କରୁଥିଲେ ଅନନ୍ତ ବ୍ରହ୍ମ । ତେଣୁ ପ୍ରକୃତି ଓ ପରମେଶ୍ୱର ହେଉଛନ୍ତି

ଏକ ଓ ଅଭିନ୍ନ । ସମଗ୍ର ମାନବ ସମାଜକୁ ବ୍ରହ୍ମ ସମାଜ ଭାବରେ ଅଭିହିତ କରି ତାଙ୍କ ଭିତରେ ଅନନ୍ତ ବ୍ରହ୍ମବୋଧର ଉତ୍ତରଣ ପାଇଁ ସେ ପ୍ରେରଣା ଦେଉଥିଲେ । ଜାତି ଓ ବର୍ଣ୍ଣକୁ ତ୍ୟାଗ କରି ସତ୍ୟ, ସାଧୁତା, ଆଦର୍ଶବୋଧତା, ପ୍ରେମ ଓ ଈଶ୍ୱର ଭକ୍ତି ପ୍ରତି ସର୍ବଦା ଯତ୍ନବାନ । ତାଙ୍କର ଦର୍ଶନ ଓ ଜ୍ଞାନରୁ ଭକ୍ତି, ଭକ୍ତିରୁ ଜ୍ଞାନକୁ ଅଲଗା କରିହୁଏ ନାହିଁ । ତାଙ୍କର ବ୍ରହ୍ମ ବା ପରମେଶ୍ୱର ଅସ୍ପର୍ଶ, ଅନିତ୍ୟ ଓ ଅବ୍ୟକ୍ତ । ମାତ୍ର ଶୂନ୍ୟ ନୁହଁନ୍ତି । ସେ ମଙ୍ଗଳମୟ, ଆନନ୍ଦମୟ ଓ ସର୍ବଶକ୍ତିମାନ ।

ବ୍ରାହ୍ମବାଦୀ କବିଙ୍କର ସମସ୍ତ କବିତାରେ ଧାର୍ମିକ ଦୃଷ୍ଟିକୋଣ ବିଶାଳ ସୃଷ୍ଟିର ମଧୁମୟତାକୁ ଅନୁଭବ କରି ତାଙ୍କର 'ଏ ସୃଷ୍ଟି ଅମୃତମୟ ହେ' କବିତାରେ ସେ ବର୍ଣ୍ଣନା କରିଛନ୍ତି –

'ମଧୁମୟ ସୃଷ୍ଟି ସୁଧାମୟ ସୃଷ୍ଟି
ଏ ସୃଷ୍ଟି ଅମୃତମୟରେ
ଜାଗ ନରନାରୀ ଅମୃତ ସନ୍ତତି ପୟରେ' ।

ଏହି ଧାର୍ମିକ ମନୋଭାବରୁ ଛାତ୍ରମାନଙ୍କୁ ବାଲ୍ୟକାଳରୁ ସତ୍ୟ, ଧର୍ମ ଓ ପ୍ରେମ ପଥରେ ଅଗ୍ରସର କରାଇ ଶୃଙ୍ଖଳିତ ଜାତି ଗଠନ କରିବାର ସ୍ୱପ୍ନ ଦେଖିଥିଲେ । ବ୍ରହ୍ମକୁ ହିଁ ସେ ସକଳ ସମ୍ପତ୍ତି ରୂପେ ଗ୍ରହଣ କରିଥିଲେ । ତାଙ୍କ ଭାଷାରେ –

'ଏକମାତ୍ର ପରମାତ୍ମା ବହ୍ମାଣ୍ଡ ବିଧାତା
ଏକମାତ୍ର ପ୍ରଭୁଗୁରୁ ବନ୍ଧୁ ପିତାମାତା' ।

ଓଡ଼ିଆ ସାହିତ୍ୟର ପ୍ରଥମ ସନେଟ୍ ଲେଖକ ଭାବେ ମଧୁସୂଦନ ପରିଚିତ । ସେ ହେଉଛନ୍ତି ଉତ୍କଳ ସାହିତ୍ୟର ମଧୁପୁତ୍ର । ତାଙ୍କର ପ୍ରତ୍ୟେକ କାବ୍ୟ କବିତାରେ ମଧୁ କ୍ଷରିତ । ଓଡ଼ିଆ ସାହିତ୍ୟର ବିସ୍ତାର ଓ ଜାତୀୟତା ନିମିତ୍ତ ସେ ଆଶାବାଦୀ ଥିଲେ । ତାଙ୍କର ଜୀବନ ଦର୍ଶନ ଓ ସାରସ୍ୱତ ସୃଷ୍ଟିରେ ଭକ୍ତିର ଅବିରଳ ସ୍ରୋତ ବହିଥିବାରୁ ସେ ଭକ୍ତ କବି ରୂପେ ପରିଚିତ । ସମସ୍ତ ସୃଷ୍ଟିରେ ବ୍ରାହ୍ମ ଧର୍ମର ଦର୍ଶନ ତତ୍ତ୍ୱ ହିଁ ତାଙ୍କର ସଫଳତାର ବିଶାଳ ମାର୍ଗଦର୍ଶକ ହୋଇପାରିଥିଲା ।

ପ୍ଲଟ ନଂ-୧୩୬/୮୫୦
ବ୍ରହ୍ମେଶ୍ୱର ପାଟଣା, ଭୁବନେଶ୍ୱର-୧୮

# ମାଆ

**ଦିଲ୍ଲୀପ କୁମାର ବେହୁରା**



ମାଆକୁ ଡାକିଲେ ଦୁନିଆ ଭିତରେ
ବଂଚିବାର ମିଳେ ରାହା
ଜଗତ ଜନନୀ ସର୍ବଶକ୍ତିମୟୀ
କାଳେ କାଳେ ହୁଏ ସାହା ।
ଯା ଦୟାରେ ଚାଲେ ଏ ସାରା ସଂସାର ସଭିଙ୍କର ଶୁଣେ ଡାକ
କରୁଣାର ବାରି ଅଜାଡ଼ି ଦିଏ ମା'
ଦେଖେ ଭକତର ସୁଖ
କେତେବେଳେ ଶାନ୍ତ କେବେ ବା ଅଶାନ୍ତ
କଳିକେ ପାରିବ ତା'ର ମାୟା ।
ପାପଭାରା ଯେବେ ବଢ଼େ ଏ ଧରାରେ
ଆସେ ନୂଆ ରୂପ ଧରି
ବାହାନରେ ବସି ଓହ୍ଲାଏ ଧରାକୁ
ପାପୀଙ୍କୁ ବିନାଶ କରି
ଶାନ୍ତ କରିଦିଏ ଏ ମହୀମଣ୍ଡଳ ବଢ଼ାଇ ତାହାର କାୟା ମାଆ
ମାଆ ବୋଲି ଡାକୁଥିବ ଯେବେ
ହୃଦୟରେ ଧରି ଭକ୍ତି
ଝଡ଼ ଝଞ୍ଜା ଆସି ତା'ବାଟରେ ଯିବ
ମନରେ ଭରି ଶକତି
ଜଗତ ଭଗତ ପାଇଁ ସଦାକାଳେ ରହିଥାଏ ହୋଇ ଛାୟା ।

ଘର ନଂ – ୯/୧, 'ଏଫ' ଟାଇପ
ୟୁନିଟ – ୯ ଫ୍ଲାଟ୍, ଭୁବନେଶ୍ୱର – ୨୨

# ଆଦ୍ୟାଶକ୍ତି ମା'

**ବିମଳା ସିଂହ**

ନୈସର୍ଗିକ ଶୋଭାର ଭଣ୍ଡାର ମା'। ବିଶ୍ୱଜନନୀ ତା'ର ପ୍ରତ୍ୟେକ ସନ୍ତାନ ପାଖରେ ସବୁଠୁ ସୁନ୍ଦର । ସେ କରୁଣାମୟୀ, ପ୍ରୀତିମୟୀ, ପ୍ରେମମୟୀ, ସ୍ନେହମୟୀ, କ୍ଷମାମୟୀ, ମଧୁମୟୀ ମଙ୍ଗଳଦାୟିନୀ, ବିଘ୍ନବିନାଶିନୀ ଏବଂ ଦୟାର ଶ୍ରେଷ୍ଠ ପ୍ରତୀକ । ସନ୍ତାନର ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ସେ ସଦା ତତ୍ପର । ତା'ର ଆଶୀର୍ବାଦ ଯୁକ୍ତ ହେଲେ ଜୀବନର ସମସ୍ତ ଘାତ ପ୍ରତିଘାତକୁ ଏଡ଼େଇ ଦେଇ ଚଲାପଥରେ ଚାଲିହୁଏ ନିର୍ବିଘ୍ନରେ ।

ପୁନଶ୍ଚ ଏଇ ମାଆ ଶବ୍ଦର ବିକଳ୍ପ କେବଳ ମାଆ । ଏତଦ୍‌ଭିନ୍ନ କିଛି ନାହିଁ । ଏ ସୃଷ୍ଟିର ସୃଷ୍ଟିକାରିଣୀ, ପାଳନକାରିଣୀ ପୁଣି ଧ୍ୱଂସକାରିଣୀ ସେ । ସେ ଶକ୍ତି ସ୍ୱରୂପିଣୀ, କାରଣ ସକଳ ଶକ୍ତିର ଆଧାର ସିଏ । ନିଜ ସନ୍ତାନକୁ ସେ ପ୍ରତି ମୁହୂର୍ତ୍ତରେ ଅଭୟ ବର ପ୍ରଦାନ କରିଚାଲିଥାଏ । ତା' ଅନ୍ତରର ନିଭୃତକୋଣରୁ ସେ ଢାଳୁଥାଏ ଆଶୀର୍ବାଦର ଅମୀୟଧାରା ।

ସେହି ମା' ହିଁ ମହାଶକ୍ତି ସ୍ୱରୂପା । ସେ ଅଦ୍ୱିତୀୟା, କାରଣ ତା'ଠାରୁ ଆଉ କିଛି ଭିନ୍ନ ଦ୍ୱିତୀୟ ଶକ୍ତି ନାହିଁ । ଦେବଭୂମି, ବେଦଭୂମି,ଆର୍ଯ୍ୟଭୂମିର ଦେଶ ହେଉଛି ଆମ ଦେଶ ଭାରତବର୍ଷ । ବେଦଧାତ୍ରୀ ଭାରତମାତାର ଆଧ୍ୟାତ୍ମିକ ଚିନ୍ତାଧାରା ଓ ପରିବେଷ୍ଟନୀ ଭିତରେ ଜନସାଧାରଣ ସେଇ ଆଦ୍ୟାଶକ୍ତି ମା'ଙ୍କୁ ବିଭିନ୍ନ ରୂପରେ ଏବଂ ବିଭିନ୍ନ ନାମରେ ପୂଜା କରିଆସୁଛନ୍ତି କାହିଁ କେଉଁ ଯୁଗରୁ, ତା'ର ହିସାବ ନାହିଁ । ଶକ୍ତିସ୍ୱରୂପିଣୀ ଏହି ମା'ଙ୍କୁ ପୂଜାକରି ଭକ୍ତ ହୃଦୟରେ ସାତ୍ତ୍ୱିକ ଭାବ ଓ ଚେତନା ଜାଗ୍ରତ ହୋଇଥାଏ । ଏହାଦ୍ୱାରା ଯେତେ ପ୍ରକାର ଯନ୍ତ୍ରଣା ଭିତର ଦେଇ ଭକ୍ତଟିଏ ଗତି କରୁଥିଲେ ମଧ୍ୟ, ମା'ଙ୍କର ଆଶୀର୍ବାଦରୁ ପରମବ୍ରହ୍ମ ସଚ୍ଚିଦାନନ୍ଦ ବ୍ରହ୍ମ ସମାଧି ଲାଭ କରିପାରିଥାଏ । ସେ ହିଁ ଶକ୍ତିସ୍ୱରୂପିଣୀ ମା' ଆନନ୍ଦମୟୀ ଶବ୍ଦବ୍ରହ୍ମଂ ସ୍ୱରୂପିଣୀ ମଧ୍ୟ । ସେ ସର୍ବତ୍ର ପରମ ମହାମାୟୀ ପ୍ରକୃତିରୂପିଣୀ ଭାବରେ ପୂଜା ପାଇଥାନ୍ତି । ସେ କେତେବେଳେ ରୁଦ୍ର ତ କେତେବେଳେ ଶାନ୍ତ । ସେ ଦୁର୍ଗା ପୁଣି କାଳୀ । ସେ ମହାମାୟୀ, ମହାଲକ୍ଷ୍ମୀ, ମହାସରସ୍ୱତୀ, ମହାଦୁର୍ଗା, ମହାଗୌରୀ, ମହାକାଳୀ, ମହାକାତ୍ୟାୟନୀ, ଯୋଗମାୟା, ଚଣ୍ଡୀ, ଚାମୁଣ୍ଡା,ଜଗଦମ୍ବା । ସେ ଆଦ୍ୟାଶକ୍ତି, ଭୈରବୀ ମଧ୍ୟ । 'ଦେବୀ ଭାଗବତ'ରେ ଏହି ଶକ୍ତି ଶବ୍ଦକୁ ବ୍ୟାଖ୍ୟା କରାଯାଇ କୁହାଯାଇଛି ଯେ, 'ଶ'ର ନାମ ଐଶ୍ୱର୍ଯ୍ୟ ଏବଂ 'କ୍ତି'ର ନାମ ପରାକ୍ରମ । ତେଣୁ ଯିଏ ଐଶ୍ୱର୍ଯ୍ୟ ଓ ପରାକ୍ରମ ପ୍ରଦାନ କରିଥାଏ, ସେ 'ଶକ୍ତି' । ଏହି ଆଦିଶକ୍ତି ମା' ବା ଦେବୀଙ୍କ ପ୍ରକୃତି ହେଉଛି ଏହି ବିଶାଳ ଜଗତ । ମାନବିକ ବିବର୍ତ୍ତନର ମୂଳରେ ଏହି ଶକ୍ତି ରହିଛି । ଜଗତର ଯାବତୀୟ ପୁଂଲିଙ୍ଗ ଶବ୍ଦ ବାଚ୍ୟ ପଦାର୍ଥ ସବୁ 'ଶିବ'ଙ୍କର ବିଭୂତି ଏବଂ ଯାବତୀୟ ସ୍ତ୍ରୀଲିଙ୍ଗ ବାଚ୍ୟ ପଦାର୍ଥ ସବୁ 'ଗୌରୀ'ଙ୍କର ବିଭୂତି । ତେଣୁ ପ୍ରତ୍ୟେକ ପଦାର୍ଥରେ ଶିବ ଓ ଶକ୍ତିଙ୍କର ବିଭୂତି ରହିଛି । ଏହି ଶକ୍ତି ଦୁଇ ଭାଗରେ ବିଭକ୍ତ । ପୁଂ ଶକ୍ତି ଓ ସ୍ତ୍ରୀ ଶକ୍ତି । ପୁଂ ଶକ୍ତିର ସ୍ମରଣରେ ଶିବ, ବିଷ୍ଣୁ ଆଦି ଦେବତା ଗଣ ଈଶ୍ୱରଙ୍କର ପୁଂ ମୂର୍ତ୍ତି ରୂପରେ ପ୍ରତିପାଦିତ ହୁଅନ୍ତି । ସେହିପରି ସ୍ତ୍ରୀ ଶକ୍ତିର ସ୍ମରଣରେ ଦୁର୍ଗା, ଲକ୍ଷ୍ମୀ ଆଦି ଦେବୀଗଣ ମଧ୍ୟ ଈଶ୍ୱରଙ୍କର ସ୍ତ୍ରୀ ମୂର୍ତ୍ତି ରୂପରେ ପ୍ରତିପାଦିତ ହୋଇଥାଆନ୍ତି । ଏହି ଶକ୍ତି ବିଦ୍ୟା ଓ ଅବିଦ୍ୟା ନାମରେ ପୁନଶ୍ଚ ଦୁଇ ଭାଗରେ ବିଭକ୍ତ । ଋକ୍ ବେଦରେ ଏହି ଶକ୍ତିତତ୍ତ୍ୱର ପରିଚୟ ରହିଛି, କିନ୍ତୁ ମାନବ ସମାଜ ଏହି ଶକ୍ତିର ଉତ୍ସ ଦେବୀମାତାଙ୍କୁ

ବିଭିନ୍ନ ନାମରେ ଯଥା- ଦୁର୍ଗା, କାଳୀ, ଉମା, କାତ୍ୟାୟନୀ, ଅମ୍ବିକା ଆଦି ଯେଉଁ ଦେବୀଙ୍କୁ ଆଧାର କରି ଶାକ୍ତ ଧର୍ମାଚାର ବିକଶିତ, ସେମାନଙ୍କର ରୂପକଳ୍ପନା ଏହି ଋକ୍ ବେଦରେ ନାହିଁ, ବରଂ ଉପନିଷଦ ଯୁଗରେ ଏହି ନାମଯୁକ୍ତ ଦେବୀ କଳ୍ପନାର ଅଭ୍ୟୁଦୟ ଘଟିଛି ବୋଲି ଅନୁମେୟ । ବେଦର ଋଷିଗଣ ତାଙ୍କୁ ବ୍ରହ୍ମ ଓ ବ୍ରହ୍ମ ଶକ୍ତିଙ୍କୁ ଏକ ରୂପେ ପରିକଳ୍ପନା କରି ତାଙ୍କୁ ଦେବୀ ରୂପରେ ଗ୍ରହଣ କରିଛନ୍ତି । ଏହାର ଜ୍ୱଳନ୍ତ ଉଦାହରଣ 'ଦେବୀସୂକ୍ତ'ରେ ପରିଲକ୍ଷିତ । ଋକ୍ ବେଦର ଦଶମ ମଣ୍ଡଳରେ ଥିବା ଆଠଟି ମନ୍ତ୍ର ବା ସୂକ୍ତ ହିଁ 'ଦେବୀସୂକ୍ତ' । ଏହି 'ଦେବୀସୂକ୍ତ' ପୁନଶ୍ଚ ଚଣ୍ଡୀର ମୌଳିକ ତତ୍ତ୍ୱ । 'ଦେବୀସୂକ୍ତ'ରୁ ଜଣାଯାଏ ଯେ ଏକାଦଶ ରୁଦ୍ର, ଦ୍ୱାଦଶ ଆଦିତ୍ୟ, ସର୍ବଦେବଗଣ, ଅଗ୍ନି, ବରୁଣ, ମିତ୍ର, ଅଶ୍ୱିନୀ କୁମାର ଆଦି ସମସ୍ତେ ଏହି ଦେବୀ ଚଣ୍ଡୀଙ୍କର ଅଂଶବିଶେଷ । ସେହିଭଳି ବୈଦିକ ଶ୍ରୀସୂକ୍ତରେ ଦେବୀଙ୍କୁ ହିରଣ୍ୟବର୍ଣ୍ଣା ଲକ୍ଷ୍ମୀ ରୂପରେ, ତୈତିରୀୟ ଆରଣ୍ୟକ ଉପନିଷଦରେ ଦେବୀ ଅମ୍ବିକାଙ୍କୁ ରୁଦ୍ରଙ୍କର ପତ୍ନୀ ରୂପରେ ବର୍ଣ୍ଣନା କରାଯାଇଛି । ଏତଦ୍‌ବ୍ୟତୀତ କେନୋପନିଷଦରେ ତାଙ୍କୁ ହିମବନ୍ତ କନ୍ୟା, ଉମା, ଗୌରୀ, ଗିରିସୂତା ଆଦି ରୂପରେ ଆବାହନ କରାଯାଇଛି । ଐତିହାସିକମାନଙ୍କ ଅନୁମାନ ଅନୁଯାୟୀ ଭାରତବର୍ଷରେ ପ୍ରାକ୍ -ବୈଦିକ ଓ ବୈଦିକ ଧର୍ମର ସମନ୍ୱୟରେ ଶକ୍ତିବାଦର ବିକାଶ ହୋଇଛି । ସେହିପରି ବ୍ରହ୍ମବୈବର୍ତ୍ତ ପୁରାଣର ପ୍ରକୃତି ଖଣ୍ଡରେ ପ୍ରକୃତି ରୂପିଣୀ ମହାଶକ୍ତିଙ୍କ ବିଷୟରେ ବର୍ଣ୍ଣନା କରାଯାଇଛି । ଆହୁରି ମଧ୍ୟ କୁର୍ମ ପୁରାଣ, ବାମନ ପୁରାଣ ଆଦିରେ ଦେବୀଙ୍କର ଅଲୌକିକ ଶକ୍ତି ବିଷୟରେ ଅନେକ ବର୍ଣ୍ଣନା କରାଯାଇଛି ।

ତ୍ରେତୟା ଯୁଗରେ ପ୍ରଭୁ ରାମଚନ୍ଦ୍ର ରାବଣର ନିଧନ ନିମିତ୍ତ ଶରତକାଳୀନ ମା' ଦୁର୍ଗାଙ୍କର ଶରଣାପନ୍ନ ହେବା ବାଲ୍ମୀକି ରାମାୟଣରୁ ଜଣାଯିବା ସହ, ମହାଭାରତରେ ଶ୍ରୀକୃଷ୍ଣଙ୍କ ଉପଦେଶ ଅନୁଯାୟୀ ଅର୍ଜୁନ ଯୁଦ୍ଧ ପୂର୍ବରୁ ଦୁର୍ଗାସ୍ତବ କରିଥିବାର ଜଣାଯାଏ । ଏତଦ୍ ବ୍ୟତୀତ ଶ୍ରୀମଦ୍ ଭାଗବତରେ ଗୋପାଙ୍ଗନାମାନେ କାତ୍ୟାୟନୀ ଦେବୀଙ୍କୁ ପୂଜାର୍ଚ୍ଚନା କରିଥିବାର ସୂଚନା ମିଳେ । ସେହିପରି ମାର୍କଣ୍ଡେୟ ପୁରାଣରେ ସର୍ବଶ୍ରେଷ୍ଠ ଶକ୍ତି ଏବଂ ବଳିଷ୍ଠ ମହିମା ପ୍ରକଟିତ ହୋଇଛି ମାତୃଶକ୍ତିଙ୍କର । କାର୍ତ୍ତିକ ପୁରାଣ, ଦେବୀ ଭାଗବତ ଆଦିରେ ମଧ୍ୟ ଏହି ଶକ୍ତିଙ୍କର ତାତ୍ତ୍ୱିକ ଆଲୋଚନା ହୋଇଛି । ତତ୍ ସଙ୍ଗେ ସଙ୍ଗେ ଶ୍ରୀ ଶ୍ରୀ ଚଣ୍ଡୀରେ ମଧ୍ୟ ଦେବୀଙ୍କର ତ୍ରିଗୁଣାତ୍ମିକା ଶକ୍ତିର ତ୍ରିବିଧ ରୂପର ତାତ୍ତ୍ୱିକ ଆଲୋଚନା ହୋଇଛି । ବ୍ରହ୍ମବୈବର୍ତ୍ତ୍ୟ ପୁରାଣର ପ୍ରକୃତି ଖଣ୍ଡରେ ଶ୍ରୀକୃଷ୍ଣ ଏହି ଶକ୍ତି ସଂପର୍କରେ କହିଛନ୍ତି ଯେ, ତୁମେ ବିଶ୍ୱ ଜନନୀ, ମୂଳ ପ୍ରବୃତ୍ତି ଈଶ୍ୱର, ତୁମେ ଆଦ୍ୟାଶକ୍ତି ରୂପରେ ସୃଷ୍ଟିର ଉତ୍ପତ୍ତି କାଳରେ ବିରାଜମାନ କରି ଏବଂ ନିଜ ଇଚ୍ଛା ଅନୁସାରେ ତ୍ରିଗୁଣାତ୍ମିକରେ ପରିଣତ ହୋଇଥାଅ । ତେଣୁ ତୁମେ ଆବଶ୍ୟକ ହେଲେ ନିର୍ଗୁଣରୁ ସଗୁଣ ହୋଇଯାଅ । ତୁମେ ପରଂ ବ୍ରହ୍ମ ସ୍ୱରୂପ ସତ୍ୟ, ନିତ୍ୟ ଏବଂ ସନାତନୀ । ତୁମେ ପରମ ତେଜ ସ୍ୱରୂପା ଏବଂ ଶରୀର ଧାରଣ କରିଥାଅ ଭକ୍ତଙ୍କୁ ଅନୁଗ୍ରହ କରିବା ନିମିତ୍ତ । ତେଣୁ ତୁମେ ମହାମାୟୀ ତେଜ ବୀର୍ଯ୍ୟ ସଂପନ୍ନା । ତୁମେ ନିତ୍ୟ, ଅକ୍ଷୟ, ଜନ୍ମମୃତ୍ୟୁ ରହିତ । ତୁମେ ଆହୁରି ମଧ୍ୟ ସର୍ବରୂପା, ସର୍ବପୂଜ୍ୟା ଏବଂ ଆଶ୍ରୟ ରହିତ । ସେହି ଶକ୍ତିମୟୀ ସର୍ବଜ୍ଞ, ସର୍ବ ମଙ୍ଗଳା ଏବଂ ସର୍ବ ମଙ୍ଗଳର ମଙ୍ଗଳ । ସେ ଏ ସମାଜର ଶାନ୍ତିରକ୍ଷା କାରିଣୀ । ଏହାର ଜ୍ୱଳନ୍ତ ଉଦାହରଣ ହେଲା ମହିଷାସୁରଙ୍କୁ ବଧ କରିବା ମାତଃ ଶ୍ରୀଶ୍ରୀ ଦୁର୍ଗା ରୂପରେ । ଏହି ମହାଶକ୍ତି ଏକାଧାରରେ ମହାବିଦ୍ୟା, ମହାମାୟା, ମହାମେଧା, ମହାସ୍ମୃତି, ମହାଶକ୍ତି, ମହାସୁରୀ । ସେ ସୃଷ୍ଟିରୂପା, ସ୍ଥିତିରୂପା ଏବଂ ସଂହତି ରୂପା ତଥା ତ୍ରିଗୁଣା । ସେ ମଧ୍ୟ ସନ୍ଧ୍ୟା, ସାବିତ୍ରୀ ଏବଂ ପରମ ଜନନୀ ଓ ପରମେଶ୍ୱରୀ । ସେ ଆଦ୍ୟାଶକ୍ତି ରୂପରେ ବିଶ୍ୱର ଅଣୁ ପରମାଣୁରେ ବିଦ୍ୟମାନ ଏବଂ ଦେବୀ ପରମେଶ୍ୱରୀ ରୂପରେ ଏହି ସୃଷ୍ଟିର ଜୀବ ଜଗତକୁ ରକ୍ଷା କରିଥାନ୍ତି । ଏହି ପୃଥିବୀରେ ସର୍ବତ୍ର ଦେବୀ ଓ ଆସୁରିକ ଉଭୟ ଚେତନା ବିଦ୍ୟମାନ । ତେଣୁ ଯେତେବେଳେଏହି ପୃଥିବୀରେ ଆସୁରିକ ଶକ୍ତିର ବୃଦ୍ଧି ଘଟେ, ସେତେବେଳେ ଦେବୀ ପ୍ରତ୍ୟକ୍ଷ ଭାବରେ ଆବିର୍ଭୂତା ହୋଇ ଦୁଷ୍ଟ ଦମନ ପୂର୍ବକ ସଜ୍ଜନମାନଙ୍କୁ ପାଳନ କରିଥାନ୍ତି ।

ଏହି ଆଦ୍ୟାଶକ୍ତି ବିଭିନ୍ନ ନାମରେ ସହରଠାରୁ ଆରମ୍ଭ କରି ପଲ୍ଲୀ ପର୍ଯ୍ୟନ୍ତ ପରିବ୍ୟାପ୍ତା । ଭାରତବର୍ଷରେ ଏହି ମାଆଙ୍କର ପ୍ରମୁଖ ପୀଠ ଭାବରେ କାଉଁରୀ କାମାକ୍ଷା, ବୈଷ୍ଣବ ଦେବୀ ବହୁ ପ୍ରସିଦ୍ଧ । ଆମ ରାଜ୍ୟରେ ଏହି ମାତା ଷୋହଳ ସ୍ତମ୍ଭରେ

ଅର୍ଥାତ ଷୋହଳଟି ପ୍ରମୁଖ ପୀଠର ଅଧିଷ୍ଠାତ୍ରୀ ଦେବୀ ଭାବରେ ବିଭିନ୍ନ ନାମରେ ପୂଜିତା । ଏହି ଶକ୍ତି ସ୍ୱରୂପିଣୀ ମା' ପୁରୀର ବିମଳା, ଝଙ୍କଡ଼ର ଶାରଳା, କାକଟପୁରର ମଙ୍ଗଳା, ବାଙ୍କୀର ଚର୍ଚ୍ଚିକା, ବାଣପୁରର ଭଗବତୀ, ଯାଜପୁରର ବିରଜା, ଭଦ୍ରକର ଭଦ୍ରକାଳୀ, ତାଳଚେରର ହିଙ୍ଗୁଳା, କୋଣାର୍କର ରାମଚଣ୍ଡୀ, ସମ୍ବଲପୁରର ସମଲାଇ, ଘଟଗାଁର ତାରିଣୀ, ପୁରୁଷୋତ୍ତମପୁରର ତାରାତାରିଣୀ, ବଡ଼ମ୍ବାର ଭଟ୍ଟାରିକା, ଚିଲିକାର କାଳିଜାଇ, କଟକର ଚଣ୍ଡୀ ଓ ଗଡ଼ଚଣ୍ଡୀ, ହୀରାପୁରର ଚଉଷଠି ଯୋଗିନୀ, ଭୁଷଣ୍ଡପୁରର ଉଗ୍ରତାରା, ଖୋରଧାର ବରୁଣେଇ ଆଦି ବିଭିନ୍ନ କ୍ଷେତ୍ରରେ ଜନମାନସରେ ପ୍ରସିଦ୍ଧ । ପ୍ରତ୍ୟେକ ଓଡ଼ିଆ ପ୍ରାଣର ସେ ଆଦ୍ୟା ପୂଜ୍ୟା । ତାଙ୍କର ଶ୍ରେଷ୍ଠ ପୂଜା ଭାବରେ ଦୁର୍ଗା ପୂଜା ଓ କାଳୀ ପୂଜା ଖ୍ୟାତ ।

ତେଣୁ ଆସନ୍ତୁ ଏହି ଆଦ୍ୟାଶକ୍ତି ମାଆଙ୍କର ଶରଣାପନ୍ନ ହୋଇ ସମସ୍ତଙ୍କର ମଙ୍ଗଳ କାମନା କରିବା ।

ପ୍ଲଟ୍ ନଂ-୧୮୬୮, ଲେନ୍-୬
ଭକ୍ତମଧୁ ନଗର, ଗଣ୍ଡମୁଣ୍ଡା
ଖଣ୍ଡଗିରି, ଭୁବନେଶ୍ୱର-୩୦

# ମାତୃ ଆବାହନ

**ଗିରିଜା ମଞ୍ଜରୀ ପାଢ଼ୀ**

ବ୍ରହ୍ମାଶ୍ରିତା ମାଆ ତୁମେ ପ୍ରକୃତି ରୂପିଣୀ
ସୃଷ୍ଟି ତବ ଆଦି ଅବଦାନ
ଲୀଳାମୟୀ ମାଆ ତୁମେ, ଏ ବିଶ୍ୱ ବ୍ରହ୍ମାଣ୍ଡେ
ସକଳ କାରଣ, ସୃଷ୍ଟି, ସ୍ଥିତି, ବିନାଶନ ।
ତୁମଠାରୁ ଉଦ୍‌ଭୂତ ପଞ୍ଚତତ୍ତ୍ୱ
ଆକାଶ, ବାୟୁ, ଜଳ, ପୃଥ୍ୱୀ, ହୁତାଶନ
ସବୁଠାରେ ତୁମରି ଅସ୍ତିତ୍ୱ
ସର୍ବବ୍ୟାପକ, ସର୍ବଜ୍ଞ, ସର୍ବଶକ୍ତିମାନ ।
ପ୍ରକୃତି ପୁରୁଷ ସଙ୍ଗେ ହୋଇ ଏକାକାର
ମାଆ ତୁମେ ସର୍ବ ଶକ୍ତିମୟୀ
ତୁମ ବିନା ଶିବ, ଶବ
ଶକ୍ତିହୀନ ବିଶ୍ୱ ଚରାଚର ।

ସତ୍, ଚିତ୍ ଆନନ୍ଦମୟୀ,
ମହାକାଳୀ, ମହାଲକ୍ଷ୍ମୀ, ମହାସରସ୍ୱତୀ
ସକଳ ଦେବୀ ମଧ୍ୟରେ ତୁମରି ପ୍ରତିଷ୍ଠା
କିଏ ବା ପାରିବ ରଚି ତବ କୀର୍ତ୍ତି ସ୍ତୁତି ?
ଆଖିରେ ଆଖିଏ ଲୁହ, କଣ୍ଠେ ଆକୁଳ ମିନତି
କୃତାଞ୍ଜଳି ପୁଟେ କରୁ ତବ ଆବାହନ
ଆସ, ମାଆ ଆସ ତୁମେ ଏହି ପାର୍ବଣରେ
ଜଗତର ପାପ, ତାପ କର ଅବସାନ ।

ଏଲ୍, ୩/୩, ଖାରବେଳ ନଗର
ଭୁବନେଶ୍ୱର



# ଜୈବ ବିବିଧତା ସୁରକ୍ଷାରେ ପର୍ଯ୍ୟଟନ

**ଡକ୍ଟର ସଂଘମିତ୍ରା ଦେଓଭଞ୍ଜ**

ବିଭିନ୍ନ ସ୍ଥାନକୁ ବୁଲିଯିବାକୁ ପିଲାଙ୍କଠାରୁ ବୟସ୍କଙ୍କ ପର୍ଯ୍ୟନ୍ତ ପ୍ରାୟ ସମସ୍ତେ ଭଲ ପାଆନ୍ତି, ସେ ପାଖ ଜାଗା ହେଉ କି ଦୂର ଜାଗା । ମଣିଷର ଏ ବୁଲିଯିବା ସଉକ କିନ୍ତୁ ଏବେକାର ନୁହେଁ, ବହୁ ପୁରୁଣା । ଗମନାଗମନର ଏତେ ବେଶୀ ସୁବିଧା ନଥାଇ ମଧ୍ୟ ଅତୀତରେ ବହୁ ପରିବ୍ରାଜକ, ଭ୍ରମଣକାରୀ ତଥା ବ୍ୟବସାୟୀ ସ୍ଥଳପଥ ଓ ଜଳପଥରେ ଅନେକ ଦୂର ସ୍ଥାନକୁ ଯାତ୍ରା କରୁଥିଲେ, ଯାହାର ବିବରଣୀ ବିଭିନ୍ନ ସ୍ଥାନରେ ଶିଳାଲେଖ ଓ ପୁସ୍ତକମାନଙ୍କରେ ଲିପିବଦ୍ଧ ହୋଇ ରହିଛି । ଏବେ ଆଗକାଳ ଅପେକ୍ଷା ଯୋଗାଯୋଗ ଓ ଗମନାଗମନର ସୁବିଧା ଅଧିକ ଉପଲବ୍ଧ ହେବାରୁ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଉଥିବା ଲୋକଙ୍କ ସଂଖ୍ୟା ଆଶାତୀତ ଭାବରେ ବଢ଼ିବାରେ ଲାଗିଛି । ବସ୍, ଟ୍ରେନ୍, ଉଡ଼ାଜାହାଜ ସବୁଥିରେ ଲୋକଙ୍କ ଭିଡ଼ ଦେଖିବାକୁ ମିଳୁଛି । ଏତେସବୁ ଯିବା ଆସିବା ଭିତରେ ମଣିଷ ଯେତେବେଳେ ନିଜର ଖୁସି, ଆମୋଦ ପ୍ରମୋଦ ତଥା ମନୋରଞ୍ଜନ ଲାଗି ବିଭିନ୍ନ ସ୍ଥାନକୁ ବୁଲିଯାଏ ସେତେବେଳେ ତାହା ପର୍ଯ୍ୟଟନ ଶ୍ରେଣୀଭୁକ୍ତ ହୋଇଥାଏ । ଏହାଦ୍ୱାରା ସେ ନିଜେ ଆନନ୍ଦିତ ହେବା ସହିତ ଭିନ୍ନଭିନ୍ନ ପରିବେଶ, ସଂସ୍କୃତି ଓ ସଂପ୍ରଦାୟ ସଂପର୍କରେ ଜ୍ଞାନ ଆହରଣ କରି ଅନେକ ସ୍ଥାନୀୟ ତଥା ବିଶ୍ୱସ୍ତରୀୟ ସମସ୍ୟା ବିଷୟରେ ଅବଗତ ତଥା ସଚେତନ ହୋଇଥାଏ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ମଣିଷ ନିଜେ ସଚେତନ ହେବା ସହ ଅନ୍ୟମାନଙ୍କୁ ସଚେତନ କରାଇ ସେ ଦିଗରେ ପଦକ୍ଷେପ ନେଲେ ପର୍ଯ୍ୟଟନର ପ୍ରକୃତ ସୁଫଳ ମିଳିପାରିବ । ବିଶ୍ୱ ସ୍ତରରେ ଦେଖାଯାଉଛି ଅର୍ଥନୈତିକ ବିକାଶରେ ମଧ୍ୟ ପର୍ଯ୍ୟଟନ ଏକ ପ୍ରମୁଖ ସ୍ଥାନ ଅଧିକାର କରିଛି । ୨୦୧୭ ବର୍ଷ ପାଇଁ ଜାତିସଂଘର ବିଷୟବସ୍ତୁ ରଖାଯାଇଛି 'ବିକାଶ ଲାଗି ଧାରଣୀୟ ପର୍ଯ୍ୟଟନ' (ସସ୍‌ଟେନେବଲ୍ ଟୁରିଜିମ୍ ଫର୍ ଡେଭେଲପ୍‌ମେଣ୍ଟ) ଆଉ 'ବିଶ୍ୱ ଜୈବ ବିବିଧତା ଦିବସ', ଯାହାକି ପ୍ରତିବର୍ଷ ମଇ ମାସ ୨୨ ତାରିଖ ଦିନ ପାଳିତ ହୁଏ, ତାହାର ମଧ୍ୟ ଏହି ବର୍ଷର ବିଷୟବସ୍ତୁ ହେଉଛି 'ଜୈବ ବିବିଧତା ଓ ଧାରଣୀୟ ପର୍ଯ୍ୟଟନ' (ବାୟୋଡାଇଭର୍‌ସିଟି ଏଣ୍ଡ୍ ସସ୍‌ଟେନେବଲ୍ ଟୁରିଜିମ୍) । ଏଥିରୁ ଧାରଣୀୟ ପର୍ଯ୍ୟଟନକୁ ବର୍ତ୍ତମାନ ଉଭୟ ବିକାଶ ଓ ବିଜ୍ଞାନ କ୍ଷେତ୍ରରେ ବିଶ୍ୱବ୍ୟାପୀ କେତେ ବେଶୀ ଗୁରୁତ୍ୱ ଦିଆଯାଉଛି ତାହା ଅନୁମେୟ ।

ପ୍ରକୃତିରେ ଦେଖାଯାଉଥିବା ଜୀବରୂପର ଭିନ୍ନତା ବା ବିବିଧତାକୁ ଜୈବ ବିବିଧତା କୁହାଯାଏ । ଭାବିଲେ ଆଶ୍ଚର୍ଯ୍ୟ ଲାଗେ ଯେ ବର୍ତ୍ତମାନ ସୁଦ୍ଧା ବୈଜ୍ଞାନିକମାନେ ପୃଥିବୀରେ ପ୍ରାୟ ୧୭ ଲକ୍ଷ ପଚାଶ ହଜାର ପ୍ରକାର ପ୍ରଜାତିର ଜୀବରୂପ ଚିହ୍ନଟ କରିପାରିଛନ୍ତି । ନ୍ୟାସନାଲ୍ ଜିଓଗ୍ରାଫିକ୍ ସଂସ୍ଥାର ତଥ୍ୟ ଅନୁସାରେ ଏମାନଙ୍କ ମଧ୍ୟରେ ପ୍ରାୟ ୧୦ ଲକ୍ଷ କୀଟ ପ୍ରଜାତି ଥିବାବେଳେ, ପ୍ରାୟ ୩ ଲକ୍ଷ ବିଭିନ୍ନ ଉଦ୍ଭିଦ ପ୍ରଜାତି, ୧୯ ହଜାର ମାଛ ପ୍ରଜାତି, ୯ ହଜାର ପକ୍ଷୀ ପ୍ରଜାତି ଓ ପ୍ରାୟ ୪ ହଜାର ସ୍ତନ୍ୟପାୟୀ ପ୍ରାଣୀ ପ୍ରଜାତିର ଅଟନ୍ତି । ଆମକୁ ବେଶୀ ଲାଗୁଥିବା ଏ ସଂଖ୍ୟା ସବୁ କିନ୍ତୁ ପ୍ରକୃତ ସଂଖ୍ୟାର ଏକ କ୍ଷୁଦ୍ର ଅଂଶ ମାତ୍ର । କାରଣ ପୃଥିବୀରେ ଏବେ ମଧ୍ୟ ଅନେକ ପ୍ରଜାତିର ଜୀବରୂପ ଚିହ୍ନଟ ନ ହୋଇ ଉଭୟ ସ୍ଥଳଭାଗ ଓ ଜଳଭାଗରେ ରହିଛନ୍ତି । ଏହି ଜୈବ ବିବିଧତାକୁ ଆମେ ଭିନ୍ନ ଭିନ୍ନ ସ୍ତରରେ ଲକ୍ଷ୍ୟ କଲେ ଜାଣିପାରିବା ଯେ ଏହା କେତେ ବିଚିତ୍ର ଓ କୌତୁହଳମୟ । ଅଷ୍ଟ୍ରେଲିଆ ମହାଦେଶରେ

ଦେଖାଯାଉଥିବା ଜୈବ ବିବିଧତା ଆଫ୍ରିକା ମହାଦେଶଠାରୁ ଅନେକ ଭିନ୍ନ । ମଙ୍ଗୋଲିଆର ଜୈବ ବିବିଧତା କାନାଡ଼ାଠାରୁ ଭିନ୍ନ । ଆମେ ନିଜ ଦେଶ କଥା ଚିନ୍ତାକଲେ ଦେଖିବା ଯେ ରାଜସ୍ଥାନଠାରୁ ମେଘାଳୟର, ଜାମ୍ମୁକାଶ୍ମୀରଠାରୁ କେରଳର ଓ ସେହିପରି ଅନ୍ୟସ୍ଥାନ ସବୁର ଜୈବ ବିବିଧତା କେତେ ଭିନ୍ନ । ଆମ ରାଜ୍ୟରେ ମଧ୍ୟ ପାହାଡ଼ିଆ ଅଞ୍ଚଳର ଜୈବବିବିଧତା ଉପକୂଳର ସନ୍ତସନ୍ତିଆ ଅଞ୍ଚଳଠାରୁ ଅନେକ କିଛି ଭିନ୍ନ । ପ୍ରକୃତିରେ ଏତେ ପ୍ରକାର ବିବିଧତା କିନ୍ତୁ ମଣିଷ ସମାଜ ପାଇଁ ବେଶ୍ ଲାଭଦାୟକ । କେତେକ ଉଦାହରଣରୁ ଆମେ ଏହା ଭଲଭାବରେ ଉପଲବ୍ଧି କରିପାରିବା, ଯେମିତିକି ବିଭିନ୍ନ ରୋଗ ଓ ସ୍ୱାସ୍ଥ୍ୟଗତ ସମସ୍ୟାର ପ୍ରତିକାର ପାଇଁ ଆମେ ବ୍ୟବହାର କରୁଥିବା ଔଷଧ ସବୁର ପ୍ରାୟ ଏକ-ଚତୁର୍ଥାଂଶକୁ ରାସାୟନିକ ପଦାର୍ଥ ରୂପରେ ଉଦ୍ଭିଦ, ପ୍ରାଣୀ ତଥା ଅନ୍ୟ ଜୀବନ୍ତ-ରୂପରୁ ସଂଗ୍ରହ କରାଯାଏ । ଆହୁରି ମଧ୍ୟ ବିଭିନ୍ନ ପ୍ରକାର ପକ୍ଷୀ, ମହୁମାଛି, କୀଟଦ୍ୱାରା ପରାଗସଙ୍ଗମ ଘଟିଥିବାରୁ ଏତେ ପ୍ରକାର ଫଳ, ଫୁଲ, ପନିପରିବା ଓ ଫସଲ ଉତ୍ପାଦନ ସୁବିଧାଜନକ ହୋଇପାରୁଛି । ମୋଟାମୋଟି ଭାବରେ କହିବାକୁ ଗଲେ, ମଣିଷ ସମାଜର ଜୀବନ ଶୈଳୀ ଓ ଅର୍ଥନୀତି, ପ୍ରକୃତିର ଏହି ଜୈବ ବିବିଧତା ଯୋଗୁଁ ସବୁବେଳେ ପରିପୁଷ୍ଟ ହୋଇଆସିଛି ।

କିନ୍ତୁ ଏହି ଜୈବ ବିବିଧତାର କ୍ଷୟ ଏବଂ ପ୍ରତିଦିନ ତାହା ପ୍ରତି ଦେଖାଦେଉଥିବା ବିପଦ ଆଜି ବିଶ୍ୱସ୍ତରରେ କ୍ଷୋଭ, ଉଦ୍‌ବେଗ ଓ ଚିନ୍ତାର ଏକ ପ୍ରମୁଖ କାରଣ ହୋଇଛି । ଦେଖିବାକୁ ଗଲେ ଏଥିପାଇଁ ମଣିଷ ସମାଜର ବେପରୁଆ କାର୍ଯ୍ୟକଳାପ ମୁଖ୍ୟତଃ ଦାୟୀ । ଆମେ କ'ଣ ଖାଇବା, କ'ଣ ପିନ୍ଧିବା, କେମିତି ଯିବାଆସିବା କରିବା, କେମିତି ରହିବା... ଏହିସବୁର ନିଷ୍ପତ୍ତି ସାଧାରଣତଃ ଆମେ ଆମ ଦୈନନ୍ଦିନ ଜୀବନରେ ନେଇଥାଉ । ସେହିପରି ସ୍କୁଲ, ଅଫିସ୍, ସରକାରୀ କଳ, ଦୋକାନ ବଜାର, କାରଖାନା ଇତ୍ୟାଦି ମଧ୍ୟ ସେଗୁଡ଼ିକର ସୁପରିଚାଳନା ନିମନ୍ତେ ଅନେକ ନିଷ୍ପତ୍ତି ନେଇଥାନ୍ତି । ଲକ୍ଷ୍ୟ କଲେ ଦେଖିବା ଯେ ଏତେସବୁ ନିଷ୍ପତ୍ତି ମଧ୍ୟରୁ କିନ୍ତୁ ଅନେକଗୁଡ଼ିଏ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ପୃଥିବୀର ଏହି ଆଶ୍ଚର୍ଯ୍ୟମୟ ଜୈବ ବିବିଧତା ଉପରେ ତାହାର କୁପ୍ରଭାବ ପକାଇଥାଏ । ଏହାର ଫଳସ୍ୱରୂପ ପୃଥିବୀରେ ଅନେକ ପ୍ରଜାତିର ଜୀବ ଓ ଉଦ୍ଭିଦ ଲୋପ ପାଇ ସାରିଲେଣି ଏବଂ ଅନେକ ସଂପୂର୍ଣ୍ଣ ବିଲୁପ୍ତ ହେବାକୁ ଯାଉଛନ୍ତି । ଆଗକୁ ଆଉ ଯଦି କେଉଁ ପ୍ରଜାତି ବିଲୁପ୍ତ ହୋଇଯାଏ ତାହାହେଲେ ତାକୁ ପୁଣି ଥରେ ଫେରିପାଇବା ପ୍ରାୟତଃ ସମ୍ଭବ ହେବ ନାହିଁ । ଏ ଭିତରେ ବୈଜ୍ଞାନିକମାନେ ଏମିତି ପ୍ରାୟ ୪୭ ହଜାର ପ୍ରଜାତି ବଲୁପ୍ତ ହେବା ବିପଦର ପାଖାପାଖି ଅଛନ୍ତି ବୋଲି କଳନା କରିଛନ୍ତି । ଆଉ ଏହି ଜୀବ ପ୍ରଜାତିସବୁ ବିଲୁପ୍ତ ହେବାର ବେଗ ଅତୀତର ଜୀବାଶ୍ମ ଅନୁଧ୍ୟାନରୁ ଜଣାଯାଇଥିବା ବେଗଠାରୁ ପ୍ରାୟ ୫୦ ରୁ ୫୦୦ ଗୁଣ ଅଧିକ। ଏହି ନିକଟରେ ବିଖ୍ୟାତ ପଦାର୍ଥ ବିଜ୍ଞାନୀ ଷ୍ଟିଫେନ୍ ହକିନ୍ସ, ମଣିଷ ତଥା ସମଗ୍ର ପୃଥିବୀର ସତ୍ତା ବିଲୁପ୍ତ ହେବାର ସମୟ ଦ୍ରୁତ ବେଗରେ ପାଖେଇ ଆସୁଛି ବୋଲି ପୁନର୍ବାର ସତର୍କବାଣୀ ଶୁଣାଇଛନ୍ତି । ଯଦିଓ ତାଙ୍କ ବକ୍ତବ୍ୟ ଉପରେ ଖୁବ୍ ତର୍କ ବିତର୍କ ଚାଲିଛି ।

ହେଲେ ଏସବୁ ବିପଦ ଓ ନୈରାଶ୍ୟବାଣୀ ମଧ୍ୟରେ ଏ ସୁନ୍ଦର ସବୁଜ ତଥା ନୀଳ ପୃଥିବୀକୁ ବଞ୍ଚାଇବାକୁ ଆଉ ଭବିଷ୍ୟତ ପିଢ଼ିମାନେ ବଞ୍ଚିବା ଲାଗି ଯଥେଷ୍ଟ ସାଧନ ଓ ସଂପଦ ରଖିଯିବାକୁ ମଣିଷକୁ ଖୁବ୍ ସଂଘର୍ଷ କରିବାକୁ ପଡ଼ିବ । ଜଳବାୟୁ ପରିବର୍ତ୍ତନ, ପ୍ରଦୂଷଣ, ବାସସ୍ଥାନର ହରଣ, ପ୍ରାକୃତିକ ସମ୍ପଦର ଅତିରିକ୍ତ ଶୋଷଣ, ବିଦେଶୀ ପ୍ରଜାତିର ସ୍ଥାନୀୟ ଜୀବ ପ୍ରଜାତି ଉପରେ ଆକ୍ରମଣ ଇତ୍ୟାଦି ଦିଗଗୁଡ଼ିକ ପ୍ରତି ଜନସାଧାରଣଙ୍କ ସଚେତନତା ବଢ଼ାଇ ବିଶ୍ୱସ୍ତରରେ କଠୋର ପଦକ୍ଷେପ ନେବାକୁ ପଡ଼ିବ ।

ଏବେ ଦେଖିବା ପର୍ଯ୍ୟଟନ, ତାହା ପୁଣି ଧାରଣୀୟ ପର୍ଯ୍ୟଟନ (ସସ୍‌ଟେନେବଲ୍ ଟୁରିଜିମ୍) କିପରି ଏହି ଜୈବ ବିବିଧତାର ସୁରକ୍ଷା କରିବା ସହିତ ବିକାଶର ଧାରାକୁ ଆଗେଇ ନେବ । ପ୍ରାକୃତିକ ଦୃଶ୍ୟ, ପରିବେଶ, ଜୀବପ୍ରଜାତିର ବିବିଧତା ମଣିଷକୁ ପର୍ଯ୍ୟଟନ କ୍ଷେତ୍ର ପ୍ରତି ଆକୃଷ୍ଟ କରେ । ପର୍ଯ୍ୟଟନ କ୍ଷେତ୍ରରେ ବିକାଶ ସହିତ ବ୍ୟବସ୍ଥାର ସୁପରିଚାଳନା କରିପାରିଲେ ପ୍ରାକୃତିକ ପରିବେଶର ସଂରକ୍ଷଣ ହେବା ସହିତ ଜୈବ ବିବିଧତା ପ୍ରତି ଥିବା ବିପଦଗୁଡ଼ିକୁ ମଧ୍ୟ ରୋକାଯାଇପାରିବ । ପର୍ଯ୍ୟଟକମାନଙ୍କ ସଂଖ୍ୟା ତଥା ପର୍ଯ୍ୟଟନ ସ୍ଥଳୀଗୁଡ଼ିକରେ ତାଙ୍କ କାର୍ଯ୍ୟକଳାପକୁ ନିୟନ୍ତ୍ରିତ କରିପାରିଲେ ପରିବେଶ ପ୍ରଦୂଷଣ

ରୋକିବା ସହିତ ଅର୍ଥନୈତିକ ତଥା ସାମାଜିକ ବିକାଶ ମଧ୍ୟ କରିହେବ । ଅନେକ ସମୟରେ ପର୍ଯ୍ୟଟକମାନେ ଫିଙ୍ଗି ଆସିଥିବା ଅଳିଆ, ଆବର୍ଜନା ଆଉ ବର୍ଜ୍ୟବସ୍ତୁ ସବୁ ଅନେକ ସମସ୍ୟା ସୃଷ୍ଟି କରେ । ପର୍ଯ୍ୟଟନ ବିକାଶ ସହିତ ଜନସାଧାରଣଙ୍କ ମଧ୍ୟରେ ଏ ଦିଗଟି ପ୍ରତି ବିଶେଷ ଧ୍ୟାନ ଆକର୍ଷଣ କରିବାକୁ ହେବ ।

ବିଶ୍ୱ ଜୈବବିବିଧତା ପାଳନ ଅବସରରେ ବିଶ୍ୱବ୍ୟାପୀ ଅନେକ କାର୍ଯ୍ୟକ୍ରମର ଆୟୋଜନ କରାଯାଉଛି । ଆମ ଭାରତବର୍ଷରେ ମଧ୍ୟ ଏ ବର୍ଷଟିକୁ ପାଳନ କରିବା ନିମନ୍ତେ କେନ୍ଦ୍ର ପରିବେଶ, ଜଙ୍ଗଲ ଓ ଜଳବାୟୁ ପରିବର୍ତ୍ତନ ମନ୍ତ୍ରଣାଳୟ ତରଫରୁ ପାଳନ କରିବା ନିମନ୍ତେ ଅନେକ ପଦକ୍ଷେପ ନିଆଯାଉଛି । ଏହିସବୁ କାର୍ଯ୍ୟକ୍ରମ ଦ୍ୱାରା ପ୍ରତ୍ୟେକ ଦର୍ଶନୀୟ ଓ ପର୍ଯ୍ୟଟନ ସ୍ଥାନର ବିକାଶ ହେବା ସହିତ ପରିବେଶ ସମ୍ବନ୍ଧୀୟ ବିଭିନ୍ନ ପ୍ରସଙ୍ଗ ବିଷୟରେ ଜନ ସଚେତନତା ବୃଦ୍ଧି ପାଇବ । ଏମିତି ଦେଖିବାକୁ ଗଲେ ସାରା ବିଶ୍ୱରେ ୩୫ଟି ଗୁରୁତ୍ୱପୂର୍ଣ୍ଣ ପ୍ରାକୃତିକ ଅଞ୍ଚଳକୁ ଜୈବ ବିବିଧତା ହଟ୍‌ସ୍ପଟ୍ ଅଞ୍ଚଳ ନାମରେ ନାମିତ କରାଯାଇଛି । ସେହି ତାଲିକା ଭାରତର ପଶ୍ଚିମ ଘାଟ ପର୍ବତମାଳା ଓ ପୂର୍ବ ହିମାଳୟ ଅଞ୍ଚଳ ବିଷୟ ଉଲ୍ଲେଖ ଅଛି । ଆଣ୍ଡାମାନ୍ ଦ୍ୱୀପପୁଞ୍ଜ ମଧ୍ୟ ଜୈବବିବିଧତା ପାଇଁ ବିଶ୍ୱରେ ମାନ୍ୟତା ପାଇଛି । ଏହିସବୁ ଅଞ୍ଚଳରେ ଜୈବ ବିବିଧତା ପ୍ରଚୁର ପରିମାଣରେ ଦେଖାଯାଏ, କିନ୍ତୁ ସେଠାକାର କିଛି ପ୍ରଜାତି ବିଲୁପ୍ତ ହେବାର ବିପଦ ସ୍ତରରେ ମଧ୍ୟ ଅଛନ୍ତି । ଲକ୍ଷ ଲକ୍ଷ ବର୍ଷର କ୍ରମ-ବିକାଶ ଫଳରେ ଆମେ ପାଇଥିବା ପ୍ରକୃତିର ଏହି ଅମୂଲ୍ୟ ଜୈବ ବିବିଧତାକୁ ନଷ୍ଟ ହେବାରୁ ବଞ୍ଚାଇବାର ପ୍ରୟାସ ନିହାତି ଜରୁରୀ ।

ଏହି ପରିପ୍ରେକ୍ଷୀରେ ଜନସାଧାରଣ ଜୈବ ବିବିଧତାର ସୁରକ୍ଷା ଓ ସଚେତନତା ବୃଦ୍ଧିରେ ଧାରଣୀୟ ପର୍ଯ୍ୟଟନର ଗୁରୁତ୍ୱ ଉପଲବ୍ଧି କରି ସଂକଳ୍ପବଦ୍ଧ ହୋଇ ଏହି ଦିଗରେ କାର୍ଯ୍ୟ କଲେ ଏହି ମହାନ ଲକ୍ଷ୍ୟର ଯଥାର୍ଥତା ପ୍ରତିପାଦନ ହୋଇପାରିବ ।

୯୪୫, ମହାନଦୀ ବିହାର, କଟକ

---



# ଦୁର୍ଗାଂ ତ୍ରିନେତ୍ରାଂ ଭଜେ

**ଉର୍ମିଳା ମିଶ୍ର**

ଦୁର୍ଗାଂ ତ୍ରିନେତ୍ରାଂ ଅମ୍ବିକା, ମାଆ ସିଂହ ବାହିନୀ
ବିଘ୍ନ ବିନାଶିନୀ ଭୈରବୀ, ଶିବାନୀ କାତ୍ୟାୟିନୀ ।
ହୈମବନ୍ତୀ ସୁତା କାଳିକା ଶ୍ୟାମା ଉମା ଗୌରୀ
ଜୟ ମା' ମଙ୍ଗଳକାରିଣୀ ମା' ରାଜରାଜେଶ୍ୱରୀ ।
ଶାରଳା ବିମଳା ହିଙ୍ଗୁଳା, ମାଆ ମନମୋହିନୀ ।
ଶକ୍ତି ସ୍ୱରୂପିଣୀ, ମା' ଜଗତଜନନୀ ।
ଶ୍ରୀରାମଚଣ୍ଡୀ ଭଗବତୀ, ଦେବୀ ମା' ସରସ୍ୱତୀ ।

ସିଦ୍ଧି ଦାତ୍ରୀ ବୁଦ୍ଧି ଦାତ୍ରୀ ମା', ରୌଦ୍ରମୟୀ ମୂରତି ।
ମହାକାଳୀ ମହାଲକ୍ଷ୍ମୀ ମା', ତାରିଣୀ ଜଗଦ୍ଧାତ୍ରୀ ।
ସର୍ବ ବିପଦ ସଂହାରିଣୀ, ଚର୍ଚ୍ଚିକା ଧୂମାବତୀ ।
ତୁମର ପାଦସ୍ପର୍ଶେ ଧନ୍ୟ ହୋଇଥାଏ ଧରଣୀ ।
କୃପାନେତ୍ରେ ଚାହିଁଥିବ ମା', ପାଦେ କରେ ମାଗୁଣି ।

ମାର୍ଫତ୍- ଶ୍ରୀଚରଣ ମିଶ୍ର
ଗ୍ରାମ-ପୋ- ମହୁଲିଆ
ଭାୟା- ବଡମ୍ବା, କଟକ

# ଓଡ଼ିଶାର ଏକ ପ୍ରମୁଖ ଶକ୍ତିପୀଠ ବିରଜା କ୍ଷେତ୍ର

**ଡକ୍ଟର ଭାରତୀ ପାଲ୍**

ବିରଜାକ୍ଷେତ୍ର ବୈତରଣୀ ନଦୀର ଉତ୍ତର କୂଳରେ ବିରଜା ନଗରରେ ଅବସ୍ଥିତ ଥିଲା । ଶ୍ରୀକ୍ଷେତ୍ର ପୁରୀର ଜଗନ୍ନାଥ ଓ ଭୁବନେଶ୍ୱରର ପ୍ରସିଦ୍ଧ ଶୈବକ୍ଷେତ୍ର ଲିଙ୍ଗରାଜଙ୍କ ବହୁ ପୂର୍ବରୁ ବିରଜା କ୍ଷେତ୍ର ପ୍ରସିଦ୍ଧିଲାଭ କରିଥିଲା । ଓଡ଼ିଶାରେ ପ୍ରସିଦ୍ଧି ଲାଭ କରିଥିବା ପଞ୍ଚକ୍ଷେତ୍ର ମଧ୍ୟରୁ ବିରଜାକ୍ଷେତ୍ର ଅନ୍ୟତମ, ଯାହାକି ହିନ୍ଦୁମାନଙ୍କର ପଞ୍ଚଦେବତାଙ୍କ ପୀଠସ୍ଥଳୀ । କଥିତ ଅଛି ଯେ ପାଣ୍ଡବମାନେ ଏହି ବୈତରଣୀ ନଦୀରେ ସ୍ନାନ ସାରି ଏହି ନଦୀକୂଳରେ ସେମାନଙ୍କ ପିତୃପୁରୁଷଙ୍କୁ ପିଣ୍ଡଦାନ କରିଥିଲେ । ଆହୁରି ମଧ୍ୟ ଅନଙ୍ଗଭୀମଦେବ ତୃତୀୟଙ୍କ ଚାଟେଶ୍ୱର ମନ୍ଦିର ଶିଳାଲେଖରୁ ଜଣାଯାଏ ଯେ ତାଙ୍କର ସୁଦକ୍ଷ ମନ୍ତ୍ରୀ ବିଷ୍ଣୁଙ୍କ ପ୍ରଚେଷ୍ଟାରେ ଓଡ଼ିଶାରେ ଏକ ଅଭିନବ ପୁରାଣ ସ୍ଥାପନ କରାଯାଇଥିଲା । ଯେଉଁଥିରେ କି ଓଡ଼ିଶାରେ ବିଭିନ୍ନ ପବିତ୍ର ସ୍ଥାନମାନଙ୍କର ବିଶଦ ବିବରଣୀ ଲିପିବଦ୍ଧ କରାଯାଇଥିଲା । ଓଡ଼ିଶାର ପବିତ୍ର ସ୍ଥାନ ଯଥା-ବିରଜାକ୍ଷେତ୍ର, ଏକାମ୍ରକ୍ଷେତ୍ର, ପୁରୁଷୋତ୍ତମ କ୍ଷେତ୍ର ଓ ମହେନ୍ଦ୍ର ପର୍ବତ ଇତ୍ୟାଦିର ସଂକ୍ଷିପ୍ତ ବିବରଣୀ ଅଷ୍ଟାଦଶ ଅଧ୍ୟାୟରେ ବର୍ଣ୍ଣିତ ହୋଇଥିବାର ଜଣାଯାଏ । ବର୍ତ୍ତମାନ ଏହି ବିରଜା ମୂର୍ତ୍ତି ଗୁପ୍ତଯୁଗ ସମୟର ଅଟେ ।



ଓଡ଼ିଶାରେ ବିରଜାକ୍ଷେତ୍ର ପୁରାତନ ଯୁଗର ଧାର୍ମିକ ପୀଠସ୍ଥଳୀ ଭାବେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ବହନ କରେ । ଖ୍ରୀଷ୍ଟାୟ ୪ର୍ଥ କିମ୍ବା ୫ମ ଶତାବ୍ଦୀରେ ବିରଜା ମୂର୍ତ୍ତି ପ୍ରତିଷ୍ଠା ହେବା ଫଳରେ ଏଠାରେ ହିନ୍ଦୁ ଧର୍ମର ଅଭ୍ୟୁଦୟ ହେଲା । ବୌଦ୍ଧଧର୍ମର ପ୍ରାଧାନ୍ୟ କ୍ରମଶଃ ଲୋପ ପାଇବାକୁ ବସିଲା ଓ ଶାକ୍ତ ଧର୍ମର ପ୍ରାଧାନ୍ୟ ବିସ୍ତାରିତ ହେଲା । କାରଣ ଭୌମ ବଂଶୀୟ ରାଣୀ ତ୍ରିଭୁବନା ମହାଦେବୀ ସିଂହାସନ ଆରୋହଣ କଲାବେଳେ ନିଜକୁ କାତ୍ୟାୟନୀ ସହିତ ତୁଳନା କରିଥିଲେ । ତେଣୁ ଏହା କୁହାଯାଇପାରେ କି ସେହି ଦେବୀ ବିରଜା ଛଡ଼ା ଅନ୍ୟ କେହି ନୁହନ୍ତି । କାଳିକା ପୁରାଣରେ ମଧ୍ୟ ବର୍ଣ୍ଣିତ ଅଛି ଯେ ଶ୍ରୀଜଗନ୍ନାଥ ଓ କାତ୍ୟାୟନୀ ଉଡ୍ରଦେଶର ପ୍ରତିଷ୍ଠିତ ଦେବାଦେବୀ । ରାଜନୈତିକ ଓ ଐତିହାସିକ ଘଟଣାବଳୀ ଏହି ପୀଠକୁ ଆହୁରି ସୌନ୍ଦର୍ଯ୍ୟଶାଳୀ କରିପାରିଛି । ଖ୍ରୀଷ୍ଟିୟ ୬ଷ୍ଠ ଶତାବ୍ଦୀଠାରୁ ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଅନେକ ରାଜବଂଶ ରାଜତ୍ୱ କରିଯାଇଛନ୍ତି । ଯେତେବେଳେ କି ଭୌମକର ଓ ସୋମବଂଶୀ ରାଜାମାନେ ଏହି କ୍ଷେତ୍ରକୁ ସେମାନଙ୍କର ରାଜଧାନୀ କରିଥିଲେ । ଯାଜପୁର ଜିଲ୍ଲାସ୍ଥିତ ରତ୍ନଗିରି, ଲଳିତଗିରି ଓ ଉଦୟଗିରି ଭଗ୍ନାବଶେଷ ପ୍ରମାଣ କରେ କି ଏଗୁଡ଼ିକ ଓଡ଼ିଶାର

ବୌଦ୍ଧମାନଙ୍କର କେନ୍ଦ୍ରସ୍ଥଳୀ ଥିଲା । ରତ୍ନଗିରି, ଲଳିତଗିରି ଓ ଉଦୟଗିରି ଖନନ ବେଳେ ବହୁ ସୌନ୍ଦର୍ଯ୍ୟଶାଳୀ ବୌଦ୍ଧ ସନ୍ନ୍ୟାସୀ ମଠଗୁଡ଼ିକ ଶିକ୍ଷାର ପ୍ରକୃଷ୍ଟ ସ୍ଥଳୀ ଥିଲା, ଏଥିରେ ଯୋଗବିଦ୍ୟା ଓ ବୌଦ୍ଧ ଦର୍ଶନ ଶାସ୍ତ୍ର ଆଦି ଶିକ୍ଷା ଦିଆଯାଉଥିଲା ।

ଓଡ଼ିଶାର ଦକ୍ଷିଣ ପୂର୍ବ ପ୍ରାନ୍ତରରେ ପୁଷ୍ପଗିରି ନାମକ ଏକ ପର୍ବତ ଥିଲା ବୋଲି ହୁଏନ୍‌ସାଂ ଉଲ୍ଲେଖ କରିଛନ୍ତି । ସେଥିରେ ଏକ ପ୍ରସ୍ତର ସ୍ତୂପ ଥିଲା, ଯେଉଁଥିରେ ଏକ ଅଲୌକିକ ଦୃଶ୍ୟ ପ୍ରତୀୟମାନ ହେଉଥିଲା । ଏହି ଦୃଶ୍ୟ ଏହା ଯେ, ଏଥିରୁ ଉଜ୍ଜ୍ୱଳ ଆଲୋକ ବିଚ୍ଛୁରିତ ହେଉଥିଲା । ଏହି ଦୃଶ୍ୟକୁ ଦେଖିବା ପାଇଁ ବହୁ ଦର୍ଶକ ତଥା ଭକ୍ତ ବହୁ ଦୂର ଦୂରାନ୍ତରରୁ ଆସି ଠୁଳ ହୁଅନ୍ତି । ଅନେକ ଦର୍ଶକ ତଥା ଭକ୍ତ ବହୁ ଶିଳ୍ପ ଚାତୁରୀରେ ବୁଣାଯାଇଥିବା ଚାନ୍ଦୁଆମାନ ମଧ୍ୟ ଅର୍ପଣ କରୁଥିଲେ । ବୋଧିଶ୍ରୀ ନାଗାର୍ଜୁନ କୋଣ୍ଡା ଅଭିଲେଖରେ ପୁଷ୍ପଗିରିଠାରେ ଏକ ବୌଦ୍ଧବିହାର ନିର୍ମାଣ କରାଯାଇଥିବା କଥା ଉଲ୍ଲେଖ କରିଛନ୍ତି । ତିବ୍ବତୀୟ ବିବରଣୀରୁ ଜଣାଯାଏ କି ବୋଧିଶ୍ରୀ ରତ୍ନଗିରିରେ ଯୋଗଶିକ୍ଷା କରୁଥିଲେ ।

ଖ୍ରୀଷ୍ଟାବ୍ଦ ଷଷ୍ଠ ଶତାବ୍ଦୀରେ ପୃଥିବୀ ମହାରାଜଙ୍କ ପାରଳାଖେମୁଣ୍ଡି ତାମ୍ର ଫଳକରେ ପ୍ରଥମ କରି ବିରଜା କ୍ଷେତ୍ର ବିଷୟରେ ଉଲ୍ଲେଖ ରହିଛି । ଜ୍ୟେଷ୍ଠମାସ ଶୁକ୍ଳପକ୍ଷ ଅଷ୍ଟମ ଦିନରେ ତାଙ୍କର ୪୯ତମ ରାଜତ୍ୱ କାଳରେ ସେ ବିରଜା ନଗର ନିକଟରେ ଥିବା ବିଜୟୀ ସୈନ୍ୟଛାଉଣୀ ନିକଟରେ ଏହି ଫଳକ ସ୍ଥାପନ କରିଥିଲେ । ଏହି ଫଳକରେ ଏହା ବର୍ଣ୍ଣନା କରାଯାଇଅଛି ଯେ–

'ସ୍ୱସ୍ତି ଶ୍ରୀବିଜୟ ସ୍କନ୍ଧାବାରାତ ବିରାନଗରାଧିବାସକତା' । ସେ ଭୃଗୁଗୋତ୍ରର ବ୍ରାହ୍ମଣ ପଦ୍ମଶର୍ମାଙ୍କୁ ଗୋଳାଭଳି ଗ୍ରାମଟିକୁ ଦାନ କରିଥିଲେ । ଖ୍ରୀଷ୍ଟୀୟ ୭ମ ଶତାବ୍ଦୀରେ ମହାପ୍ରତିହାର ଉପାଧିରେ ବିଭୂଷିତ ଭାନୁଦତ୍ତ ସୋର ତାମ୍ର ଫଳକଟିକୁ ବିରା ନାମକ ସ୍ଥାନରେ ପ୍ରଦାନ କରିଥିଲେ । ଯେଉଁ ସ୍ଥାନଟି ପରବର୍ତ୍ତୀ ସମୟରେ ଯାଜପୁର ଜିଲ୍ଲାର ବିରଜାକ୍ଷେତ୍ର ବୋଲି ଜଣାଯାଏ । ଏହି ଫଳକରେ ବତ୍ସଗୋତ୍ର ଏବଂ ବାଜସାନେୟ ଚରଣ ପ୍ରିୟମିତ୍ର ସ୍ୱାମୀ ଧ୍ରୁବମିତ୍ର ସ୍ୱାମୀ ଓ ଅରୁଙ୍ଗମିତ୍ର ସ୍ୱାମୀଙ୍କୁ ବହିରଭାଟକ ଗ୍ରାମଟିକୁ ପ୍ରଦାନ କରାଯାଇ ଥିବାର ଉଲ୍ଲେଖ କରାଯାଇଅଛି । ଅଷ୍ଟମ ଶତାବ୍ଦୀରେ ଗଙ୍ଗଶ୍ୱେତକ ବଂଶର ଜୟବର୍ମନଙ୍କ ବଡ଼ଖେମୁଣ୍ଡି ଫଳକ ବିରଜାକ୍ଷେତ୍ର ଉପରେ ବହୁ ଚିତ୍ତାକର୍ଷକ ବସ୍ତୁର ଆଭାସ ଦିଏ । ଏହି ଅଭିଲେଖ ଶ୍ୱେତକର ବଂଶର ରାଜା ଜୟବର୍ମ ଦେବଙ୍କ ପ୍ରସିଦ୍ଧି ବିଷୟରେ ଉଲ୍ଲେଖ କରାଯାଇଛି । ଭୌମକର ରାଜବଂଶର ରାଜା ଉନ୍ମତ୍ତକେଶ୍ୱରୀଙ୍କ ରାଜଧାନୀ ବିରଜା ନଗରର କଙ୍ଗୋଦ ମଣ୍ଡଳରେ ଏହି ଦାନକାର୍ଯ୍ୟ ସମାପନ କରାଯାଇଥିଲା । 'ଓମ୍ ସ୍ୱସ୍ତି ବିରଜାସି ରାଜ୍ଞା ଶ୍ରୀ ଉନ୍ମତ୍ତକେଶରୀ ରଣକ' ବୋଲି ଏହି ଫଳକରେ ଉଲ୍ଲେଖ କରାଯାଇଅଛି ।

ଧଉଳି ଗୁମ୍ଫା ଅଭିଲେଖରେ ଏହି ବିରଜା ନଗର ବିଷୟରେ ମଧ୍ୟ ଉଲ୍ଲେଖ କରାଯାଇଅଛି । ବିରଜା ନଗର ଅଧିବାସୀ ଇଜ୍ୟା ଗର୍ଭରୁ ଜାତ ଭଟ୍ଟ ଲୟୋମାକା ଓ ଭିମାଟ ଶାନ୍ତିକର ଦେବଙ୍କ ରାଜତ୍ୱ ସମୟରେ ଅର୍ଘ୍ୟକା ବର୍ତ୍ତିକା ନାମକ ଏକ ମଠ ତିଆରି କରିଥିଲେ ବୋଲି ଏହି ଅଭିଲେଖରେ ବର୍ଣ୍ଣନା କରାଯାଇଅଛି । ଦ୍ୱିତୀୟ ଶିବକର ଦେବଙ୍କ ଚଉରାଶି ଫଳକରେ ମଧ୍ୟ ବିରଜା ସଂପର୍କରେ ତଥ୍ୟ ଉଲ୍ଲେଖ କରାଯାଇଅଛି ।

ତୀର୍ଥସ୍ଥାନ ହିସାବରେ ବିରଜାକ୍ଷେତ୍ର ବହୁ ପୂର୍ବରୁ ପ୍ରସିଦ୍ଧି ଲାଭ କରିଛି । ଲୌକିକ ପରମ୍ପରା ଅନୁଯାୟୀ ଏହା ଜଣାଯାଏ ଯେ ରାଜା ଯଯାତିକେଶରୀ ବିରଜା କ୍ଷେତ୍ର ନିକଟସ୍ଥ ଦଶାଶ୍ୱମେଧ ଘାଟଠାରେ ଅଶ୍ୱମେଧ ଯଜ୍ଞର ଆୟୋଜନ କରିଥିଲେ । ଏହି ବିରଜା କ୍ଷେତ୍ର ସାଧାରଣତଃ ମୁଖ୍ୟ ଦେବୀ ବିରଜାଙ୍କ ନାମରେ ନାମିତ କରାଯାଇଅଛି । ଭୌମକର ରାଜାମାନଙ୍କର ପୃଷ୍ଠପୋଷକତାରେ ଏଠାରେ ବହୁ ଧାର୍ମିକ ଅନୁଷ୍ଠାନ ଏହି ବିରଜା ନଗର ତଥା ଏହାର ଚତୁଃପାର୍ଶ୍ୱରେ ଗଢି ଉଠିଛି ।

ସଂଗ୍ରହାଧ୍ୟକ୍ଷା, ଲିପିତତ୍ତ୍ୱ ବିଭାଗ
ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର




# ଶ୍ରୀଦୁର୍ଗା ତତ୍ତ୍ୱ ଓ ଶାରଦୀୟ ଦୁର୍ଗୋତ୍ସବ

ଜାନକୀ ବଲ୍ଲଭ ପଟ୍ଟନାୟକ

ଶ୍ରୀମଦ୍ ଭଗବଦ୍ ଗୀତା କହିଲେ ଭଗବାନ୍ ଶ୍ରୀକୃଷ୍ଣ ହେଉଛନ୍ତି 'ଦେବଦେବ ଜଗତ୍‌ପତେ', 'ପୁଣି ଅନନ୍ତ ଦେବେଶ ଜଗନ୍ନିବାସ', ତାଙ୍କଠାରୁ ଶ୍ରେଷ୍ଠ ତତ୍ତ୍ୱ ଆଉ କିଛି ନାହିଁ, 'ମତଃ ପର ତର ନାନ୍ୟ କିଞ୍ଚିଦସ୍ତି ଧନଞ୍ଜୟ' । ବ୍ରହ୍ମ ସଂହିତା ମତରେ ସେ 'ଅନାଦି ଆଦି ଗୋବିନ୍ଦ ସର୍ବକାରଣଂ ସେ ହିଁ ନୀଳାଚଳର ଶ୍ରୀଜଗନ୍ନାଥ । ଶ୍ରୀଜୟଦେବଙ୍କ ମତରେ 'କେଶବ ଧୃତ ଦଶବିଧରୂପ ଜୟ ଜଗଦୀଶ ହରେ' ତଥା 'ଦଶାକୃତି କୃତେ କୃଷ୍ଣାୟ ତୁଭ୍ୟଂ ନମଃ' । ଆଚାର୍ଯ୍ୟ ଶଙ୍କରଙ୍କ ମତରେ ରମା, ଶମ୍ଭୁ, ବ୍ରହ୍ମା, ସୁରପତି, ମରପତି, ଗଣେଶାର୍ଚ୍ଚିତ ପଦ ଶ୍ରୀଜଗନ୍ନାଥ । ଏମାନେ ସମସ୍ତେ ତାଙ୍କ ସେବକ ତତ୍ତ୍ୱ ଶ୍ରୀଜଗନ୍ନାଥଙ୍କ ସେବା କରନ୍ତି ସେହିପରି ଶ୍ରୀଦୁର୍ଗା ଶ୍ରୀକୃଷ୍ଣଜଗନ୍ନାଥଙ୍କ ଛାୟାଶକ୍ତି । ଯାହାଙ୍କ ଅପରନାମ ମହାମାୟା । ସେ ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶାନୁସାରେ କାର୍ଯ୍ୟ କରନ୍ତି ଏଣୁ ପରମାବୈଷ୍ଣବୀ । ଜୀବର ସ୍ୱରୂପ ହେଲା କୃଷ୍ଣ ବା ବିଷ୍ଣୁଦାସ । ସମସ୍ତ ଦେବାଦେବୀଗଣ ତାଙ୍କର ସେବକ ଅତଏବ ବୈଷ୍ଣବ ବୈଷ୍ଣବୀ । ଋଗ୍‌ବେଦ କହନ୍ତି, 'ତଦ୍ ବିଷ୍ଣୁ ପରମଂ ପଦଂ ସଦା ପଶ୍ୟନ୍ତିସୂରୟଃ, ବେଦର ସେହି ବିଷ୍ଣୁ ହିଁ



ନୀଳାଚଳର ଶ୍ରୀଜଗନ୍ନାଥ । ସେ ସର୍ବେଶ୍ୱରେଶ୍ୱର ସ୍ୱରାଟ । ସର୍ବୋଚ୍ଚ ପରତତ୍ତ୍ୱ । ଏଥିପାଇଁ ଶ୍ରୀମଦ୍ ଭାଗବତରେ ଶ୍ରୀ ବ୍ୟାସ ଦେବ ଘୋଷଣା କଲେ ଯେ କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ । ଭଗବଦ୍ ଗୀତା କହିଲେ 'ମୟାଧ୍ୟକ୍ଷେଣ ପ୍ରକୃତି ସୂୟତେ ସଚରାଚରଂ । ବ୍ରହ୍ମ ସଂହିତାରେ ବ୍ରହ୍ମାଜୀ ସ୍ତବ କଲେ, ସୃଷ୍ଟି ସ୍ଥିତି ପ୍ରଳୟ ସାଧନକାରିଣୀ ଦୁର୍ଗା ଯାହାଙ୍କ ଇଛାନୁସାରେ କାର୍ଯ୍ୟ କରନ୍ତି, ମୁଁ ସେହି ଆଦି ପୁରୁଷ ଗୋବିନ୍ଦଙ୍କୁ ଭଜନ କରେ ।

ସୃଷ୍ଟିସ୍ଥିତି ପ୍ରଳୟ ସାଧନ ଶକ୍ତିରେକା<br>ଛାୟୈବ ଯସ୍ୟ ଭୁବନାନି ବିଭର୍ତ୍ତୀ ଦୁର୍ଗା<br>ଇଚ୍ଛାନୁରୂପ ମପି ଯସ୍ୟ ଚେଷ୍ଟତେ ସା<br>ଗୋବିନ୍ଦମାଦି ପୁରୁଷଂ ତମହଂଭଜାମି

(ବ୍ରହ୍ମସଂହିତା)

ଶ୍ରୀଦୁର୍ଗା ମହାମାୟା, ଛାୟା ଶକ୍ତି ହେତୁ ସର୍ବଦା ଭଗବାନ୍ ଶ୍ରୀକୃଷ୍ଣଜଗନ୍ନାଥଙ୍କ ପଶ୍ଚାତ୍ ଭାଗରେ ଅବସ୍ଥାନ କରନ୍ତି ଲଜ୍ଜାଶୀଳା ହୋଇ, ଏହା ଶ୍ରୀମଦ୍ ଭାଗବତର ନିମ୍ନଶ୍ଳୋକରୁ ପ୍ରତୀୟମାନ ହୁଏ ।

ବିଲଜମାନୟା ଯସ୍ୟ ସ୍ଥାତୁ ମୀକ୍ଷା ପଥେହ ମୁୟା<br>ବିମୋହିତା ବିକଖନ୍ତେ ମମାହମିତି ଦୁର୍ଦ୍ଧିୟ । (ଭାଗବତ)

ପରମାବୈଷ୍ଣବୀ ଦୁର୍ଗା । ଶାକ୍ତମାନେ ତ ତାଙ୍କ ଭକ୍ତ ମାତ୍ର ବୈଷ୍ଣବମାନେ 'ବୈଷ୍ଣବାନାଂ ଯଥାଶମ୍ଭୁ' ଶିବଜୀ ଏବଂ

ପରମା ବୈଷ୍ଣବୀ ଦୁର୍ଗାଙ୍କୁ ମଧ୍ୟ ଭକ୍ତି ପ୍ରାର୍ଥନା କରନ୍ତି ତାଙ୍କଠାରୁ ଶ୍ରୀଜଗନ୍ନାଥଙ୍କ ଚରଣାରବିନ୍ଦ ପ୍ରାପ୍ତ୍ୟାର୍ଥେ । କଳିଯୁଗ ପାବନାବତାରୀ ଶ୍ରୀକୃଷ୍ଣାଭିନ୍ନ ଶ୍ରୀକୃଷ୍ଣ ଚୈତନ୍ୟ ମହାପ୍ରଭୁ ଶ୍ରୀ ଜଳେଶ୍ୱର, କପୋତେଶ୍ୱର, ଲିଙ୍ଗରାଜ, ବିରଜା ଓ ବିମଳାଙ୍କୁ ଭକ୍ତି ପ୍ରଦର୍ଶନ କରିଛନ୍ତି । ଏଣୁ ବୈଷ୍ଣବମାନେ ଅନ୍ୟମାନଙ୍କଠାରୁ ଦୁର୍ଗାଙ୍କୁ ଅଧିକ ଭକ୍ତି କରନ୍ତି ପରମାବୈଷ୍ଣବୀ ଭାବେ ଯାହାଙ୍କ କୃପାରୁ ଶ୍ରୀକୃଷ୍ଣଜଗନ୍ନାଥଙ୍କ ଶ୍ରୀଚରଣ ପ୍ରାପ୍ତି ସୁଲଭ ହୁଏ । ଏଣୁ ବ୍ରଜର ଗୋପୀମାନେ କାତ୍ୟାୟନୀ ଦୁର୍ଗାଙ୍କ ପୂଜା କରି ତାଙ୍କୁ କୃଷ୍ଣ ପ୍ରାପ୍ତ୍ୟାର୍ଥେ ପ୍ରାର୍ଥନା କରନ୍ତି ।

କାତ୍ୟାୟନୀ ମହାମାୟୀ ମହାଯୋଗୀନ୍ ଅଧିଶ୍ୱରୀ<br>
ନନ୍ଦ ଗୋପ ସୂତଂ ଦେବୀ ପତିଂମେ କୁରୁତେ ନମଃ

(ଭାଗବତ)

ବୈଷ୍ଣବମାନେ ସମସ୍ତ ଦେବଦେବୀଙ୍କୁ ଭକ୍ତି କରନ୍ତି । ମାତ୍ର ସ୍ୱତନ୍ତ୍ର ଈଶ୍ୱର-ଈଶ୍ୱରୀ ଜ୍ଞାନରେ ନୁହେଁ ବୈଷ୍ଣବ ବୈଷ୍ଣବୀ ଜ୍ଞାନରେ । ସ୍ୱତନ୍ତ୍ର-ସ୍ୱରାଟ, ସର୍ବେଶ୍ୱରେଶ୍ୱର ହେଲେ ଏକମାତ୍ର ଶ୍ରୀଜଗଦୀଶ କୃଷ୍ଣ । ସମସ୍ତେ ତାଙ୍କର ଦାସ ଦାସୀ ସୂତ୍ରରେ ବୈଷ୍ଣବ । ଦେବାଦେବୀ ଅବା କ'ଣ ବୈଷ୍ଣବ ଧର୍ମରେ ସମସ୍ତ ଜୀବମାନଙ୍କୁ ଶ୍ରୀକୃଷ୍ଣ ଅଧିଷ୍ଠାନ ଜାଣି ପ୍ରଣାମ କରାଯାଏ ।

କୁକୁର ଶୃଗାଳ ଆଦି ଦନ୍ତେତୃଣ କରି<br>
ଦଣ୍ଡବତ କରିବେକ ବହୁମାନ୍ୟ କରି<br>
ସେଇ ସେ ବୈଷ୍ଣବ ଧର୍ମ ସବାରେ ପ୍ରଣତି<br>
ସେଇ ଧର୍ମ ଧ୍ୱଜୀ ଯା'ର ଇଥେ ନାହିଁ ମତି ।

ଏଣୁ ଆଦିଶକ୍ତି- ଆଦିମାତା ପରମ ବୈଷ୍ଣବୀ ଦୁର୍ଗାଙ୍କୁ ବୈଷ୍ଣବମାନେ ଶାସ୍ତ୍ରୀୟ ଦୃଷ୍ଟିରେ ଦେଖନ୍ତି । 'ଚଣ୍ଡୀ'ର ବିଷ୍ଣୁମାୟା ନିର୍ଗୁଣାବସ୍ଥାରେ ଚିତ୍‌ଶକ୍ତି ଓ ସଗୁଣାବସ୍ଥାରେ ଜଡଶକ୍ତି ବା ଛାୟା ଶକ୍ତି । ଶ୍ରୀରାଧା, ଲକ୍ଷ୍ମୀ, ସୀତା ଆଦି ନିର୍ଗୁଣ ଦୁର୍ଗା । ଏଣୁ ଶାସ୍ତ୍ରରେ ତାଙ୍କୁ ଯୋଗମାୟା କୁହାଯାଏ । ସୃଷ୍ଟି ସ୍ଥିତି ସଂହାରକାରିଣୀ ଦୁର୍ଗା ହେଲେ ମହାମାୟା । ଯୋଗମାୟା ସ୍ୱରୂପରେ ସେ ନିଷ୍କପଟ କୃପା କରନ୍ତି । ମହାମାୟା ଶ୍ରୀଜଗନ୍ନାଥଙ୍କ ଅଧୀନ କିନ୍ତୁ ଯୋଗମାୟାଙ୍କ ଅଧୀନ । ଭଗବାନ ଶ୍ରୀକୃଷ୍ଣ ଗୀତାରେ କହିଲେ 'ନାହଂ ପ୍ରକାଶ ସର୍ବତ୍ର ଯୋଗମାୟା ସମାବୃତ୍ତ' । ହ୍ଲାଦିନୀ ଶକ୍ତିର ଅଧୀନ ମହାପ୍ରଭୁ, ଏଥିପାଇଁ ସେ ପ୍ରାର୍ଥନା କରନ୍ତି 'ଦେହି ପଦପଲ୍ଲବ ମୁଦାରଂ (ଗୀତ ଗୋବିନ୍ଦ) କିନ୍ତୁ ମହାମାୟା ଦୁର୍ଗାଙ୍କୁ ସେ ଆଦେଶ ଦିଅନ୍ତି ।

ଭଗବାନ୍ ଶ୍ରୀକୃଷ୍ଣଜଗନ୍ନାଥ କହିଲେ ଦୁର୍ଗାଙ୍କୁ, ତୁମେ ମଦାଦେଶରେ ଯାଅ 'ଗଛଦେବୀ ବ୍ରଜଂ ଭଦ୍ରେ ଗୋପଗୋପୀରଲଂକୃତଂ' (ଭାଗବତ୧୦-୨-୭) ଏବଂ 'ପ୍ରାପ୍ସ୍ୟାମି ତ୍ୱଂ ଯଶୋଦାୟାଂ ନନ୍ଦପତ୍ନ୍ୟାଂ ଭବିଷ୍ୟସି (ଭା୧୦-୨-୯) ହେ ଦୁର୍ଗାଦେବୀ ତୁମେ ଯାଅ ଦେବକୀଙ୍କ ଗର୍ଭରୁ (ସଂକର୍ଷଣ) ବଳରାମଙ୍କୁ ନେଇ ରୋହିଣୀଙ୍କ ଗର୍ଭରେ ରଖ । ଏପରି କହି ଶ୍ରୀକୃଷ୍ଣଜଗନ୍ନାଥ ଦୁର୍ଗାଙ୍କୁ (ଭାଗବତରେ) ୧୪ଟି ନାମ ଦେଲେ ।

(୧) ଦୁର୍ଗେତି (୨) ଭଦ୍ରକାଳୀତି (୩) ବିଜୟା (୪) ବୈଷ୍ଣବୀତିଚ (୫) କୁମୁଦା (୬)ଚଣ୍ଡୀକା (୭) କୃଷ୍ଣା (୮) ମାଧବୀ (୯) କନ୍ୟକେତିଚ (୧୦) ମାୟା (୧୧) ନାରାୟଣୀ (୧୨) ଈଶାନୀ (୧୩) ଶାରଦେ (୧୪) ତ୍ର୍ୟମ୍ବିକେତିଚ ॥ (ଭାଗବତ ୧୦-୨-୧୨)

ଉପରୋକ୍ତ ନାମ ମଧ୍ୟରେ ଆମେ 'ଦୁର୍ଗା', 'ମାୟା', ବୈଷ୍ଣବୀ' 'କୃଷ୍ଣା', ନାରାୟଣୀ ନାମାଦି ପାଇଥାଉ । ଶ୍ରୀଦୁର୍ଗା ହେଉଛନ୍ତି ଆଦ୍ୟାଶକ୍ତି- ଆଦିମାତା ପୁଣି ସେ ଶ୍ରୀକୃଷ୍ଣଙ୍କ ଭଉଣୀ ସୁଭଦ୍ରା । ଏଣୁ ଶ୍ରୀକୃଷ୍ଣ କହିଲେ – ଗଛ ଦେବୀ ବ୍ରଜଂ ଭଦ୍ରେ (ଭା୧୦-୨-୭) । ନୀଳାଚଳର ସୁଭଦ୍ରା ଏଣୁ ଭୁବନେଶ୍ୱରୀ ମନ୍ତ୍ରରେ ଅର୍ଚ୍ଚିତ ହୁଅନ୍ତି ଏବଂ ଶ୍ରୀକୃଷ୍ଣଜଗନ୍ନାଥ 'ଗୋପାଳ ମନ୍ତ୍ରରେ' ଅର୍ଚ୍ଚିତ ହୋଇଥାନ୍ତି । ଏ ସମସ୍ତ ବୈଷ୍ଣବୀୟ ବିଧି । ଭାଗବତ ୧୦-୨-୯ରେ ଅଛି, 'ତ୍ୱଂ ଯଶୋଦାୟଂ ନନ୍ଦପତ୍ନ୍ୟାଂ ଭବିଷ୍ୟସି । ଏଣୁ ସେ ମଧ୍ୟ ଶ୍ରୀକୃଷ୍ଣଙ୍କ ଭଉଣୀ । ହରିବଂଶ ବିଷ୍ଣୁ ପର୍ବର ୨ୟ ଅଧ୍ୟାୟ ୩୩ ରୁ ୩୫ ଶ୍ଳୋକରେ ଶ୍ରୀକୃଷ୍ଣ ଦୁର୍ଗାଙ୍କୁ ଶ୍ରୀନଂଦ ଯଶୋଦାଙ୍କ କନ୍ୟା ରୂପେ ଜନ୍ମ ଗ୍ରହଣ କରିବାକୁ କହିବା କଥା ଉଲ୍ଲେଖ ଅଛି । ମହାପ୍ରସାଦର ମହିମା ଶ୍ରବଣ କରି ସେ ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କ ପଶ୍ଚାଦ୍‌ଭାଗରେ ବିମଳାରୂପେ ଅବସ୍ଥାନ କରି ଶାକାମ୍ବରୀ ବୈଷ୍ଣବୀ ରୂପେ ନିତ୍ୟ ମହାପ୍ରସାଦ ପ୍ରାପ୍ତ ହେଉଛନ୍ତି ।

ଶ୍ରୀ ଗୌରବର୍ଣ୍ଣ ବିଷ୍ଣୁ ଇତ୍ୟନେନ ସ୍ୱ ଶକ୍ତ୍ୟା ଚୈତନ୍ୟମେତ ପ୍ରାପ୍ତେ' (ଅଥର୍ବ ବେଦୀୟ ପୁରୁଷବୋଧିନୀ ସୁକ୍ତ) କଳି ଯୁଗାବତାରୀ ପ୍ରେମ ପୁରୁଷୋତ୍ତମ ଶ୍ରୀ ଗୌରହରି ନବଦ୍ୱୀପ ମାୟାପୁର ନିଜ ମଉସାଙ୍କ ଘର ଶ୍ରୀ ଚନ୍ଦ୍ରଶେଖର ଆଚାର୍ଯ୍ୟ ଭବନରେ ମହାମାୟା ଦୁର୍ଗା ରୂପରେ ନୃତ୍ୟ କରିଥିଲେ । ଏଣୁ ବୈଷ୍ଣବମାନେ ମହାମାୟାଙ୍କୁ ଯଥାଯଥ ସମ୍ମାନ କରି ବିଷ୍ଣୁଭକ୍ତି ପ୍ରାର୍ଥନା କରିଥାଆନ୍ତି ।

ଜୟ ଜୟ ଜଗତ ଜନନୀ ମହାମାୟା
ଦୁଃଖିତ ଜୀବେର ଦେହ ରାଙ୍ଗା ପଦଛାୟା
ଜୟ ଜୟ ଅନନ୍ତ ବ୍ରହ୍ମାଣ୍ଡ କୋଟୀଶ୍ୱରୀ
ତୁମି ଯୁଗେ ଯୁଗେ ଧର୍ମ ରାଖ ଅବତରୀ ॥
(ଶ୍ରୀଚୈତନ୍ୟ ଭାଗବତ)

ଶ୍ରୀରାଧାସହସ୍ର ନାମର ୩୪ରେ 'ସଂହତ୍ରୀ ସର୍ବଦୈତ୍ୟାନାଂ' ୪୫ରେ 'ଏକାନଂଶାଶି' ୪୭ରେ ପାର୍ବତୀ ୫୩ରେ ଗୌରୀ ୭୩ ଓ ୭୪ରେ ହରକାନ୍ତା, ହରେଶ୍ୱରୀ ଏବଂ ୭୬ରେ 'ନାରସିଂହୀ', 'ବାରାହୀ', 'ନବଦୁର୍ଗିକା', ଭାବେ ଶ୍ରୀରାଧାଙ୍କୁ ବର୍ଣ୍ଣନ କରାଯାଇଛି । ସେହିପରି 'ଚଣ୍ଡୀ' ବା 'ଦୁର୍ଗା ଶପ୍ତସତୀ' ୫/୭ ରେ ଦୁର୍ଗାଙ୍କୁ ବିଷ୍ଣୁମାୟା ଭାବେ ବର୍ଣ୍ଣନ କରାଯିବା ସହ ୧୧/୪୨ରେ 'ନନ୍ଦ ଗୋପେ ଜାତା ଯଶୋଦା ଗର୍ଭ ସଂଭବା' ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ଭଗ୍ନୀ ବୋଲି କୁହାଯାଇଛି । ତନ୍ତ୍ରୋକ୍ତ ଦେବୀ ସୂକ୍ତରେ 'ଯାଦେବୀ ସର୍ବଭୂତେଷୁ ଲକ୍ଷ୍ମୀ ରୂପେଣ ସଂସ୍ଥିତା' (୨୦) ଏବଂ ୬ରେ 'ବିଷ୍ଣୁ ମାୟେତି ଶବ୍ଦିତା' କୁହାଯାଇଥିବାରୁ ଦୁର୍ଗା ଯେ ଭଗବାନ୍ ଶ୍ରୀକୃଷ୍ଣଙ୍କ ମାୟାଶକ୍ତି, ଏହା ସ୍ପଷ୍ଟ ସୂଚୀତ ହୁଏ । ଆମ ଓଡିଶାର ଯାଜପୁରର ମା 'ବିରଜା' ବହୁ ପ୍ରାଚୀନ । ମହାଭାରତରେ ବିରଜା ପୀଠର ବର୍ଣ୍ଣନା ମିଳେ । ଶ୍ରୀବିଷ୍ଣୁ ଜଗନ୍ନାଥଙ୍କ ପ୍ରୀତ୍ୟାର୍ଥେ ମହାମାୟା ଦୁର୍ଗାଙ୍କ ପୂଜା ଭକ୍ତି ଶାସ୍ତ୍ର ସମ୍ମତ, ଯେଉଁଥିରେ ଶ୍ରୀକୃଷ୍ଣ ଖୁସି ହୁଅନ୍ତି । ଏଣୁ ବୈଷ୍ଣବ ଶାସ୍ତ୍ର ଶ୍ରୀଚୈତନ୍ୟ ଭାଗବତରେ ଦୁର୍ଗାଙ୍କ ପ୍ରାର୍ଥନା ଅଛି ।

ଓଡିଶାର ପ୍ରାଚୀନ ଦେବୀ ପୀଠ ଏବଂ ଠାକୁରାଣୀ ପୀଠରେ ମହାଷ୍ଟମୀଠାରୁ ବୈଦିକ ଦୁର୍ଗା ପୂଜା ଅନୁଷ୍ଠିତ ହୋଇ ଆସୁଥିଲା । ମାତ୍ର ବଙ୍ଗୀୟମାନଙ୍କ ପ୍ରଭାବରେ କ୍ରମେ ଉତ୍କଳରେ ଶାରଦୀୟ ମୃଣ୍ମୟୀ ଦୁର୍ଗା ପୂଜାର ବହୁଳ ପ୍ରଚଳନ ହେଲା । ମୂଳ ସଂସ୍କୃତ ରାମାୟଣରେ କିମ୍ବା ଗୋସ୍ୱାମୀ ତୁଳସୀ ଦାସ କୃତ ଶ୍ରୀରାମ ଚରିତ ମାନସରେ ଭଗବାନ୍ ଶ୍ରୀରାମ ଦୁର୍ଗାପୂଜା କରିବା କଥା ନାହିଁ, ଏହା ବଙ୍ଗୀୟ ରାମାୟଣରେ ଅଛି । ଶ୍ରୀରାମଙ୍କ ଜନ୍ମସ୍ଥାନ ଅଯୋଧ୍ୟା, ଉତ୍ତର ଭାରତରେ ଶାରଦୀୟ ଦୁର୍ଗୋତ୍ସବ ନହୋଇ ଶ୍ରୀରାମଙ୍କ ଲଙ୍କା ବିଜୟୋତ୍ସବ ଏକମାସ ଧରି ଶ୍ରୀରାମାୟଣରୁ ଅଭିନୀତ ହୁଏ । ମୁସଲମାନ ଶାସନ ସମୟରେ ବଙ୍ଗଳାର ତାହେର ପୁରର ଜମିଦାର ରାଜା କଂସ ନାରାୟଣ ରାୟ କର୍ତ୍ତୃକ ବଙ୍ଗଳାରେ ଶାରଦୀୟ ଦୁର୍ଗୋତ୍ସବ ପ୍ରବର୍ତ୍ତିତ ହୋଇ ପରେ ଏହା ଓଡିଶାରେ ପ୍ରବେଶ କଲା । ବୈଦିକ ଷଡଜୟନ୍ତୀ ମଧ୍ୟରେ 'ମହାଷ୍ଟମୀ ଅନ୍ୟତମ । ଏହି ତିଥିରେ ପଶୁବଳି ନୁହେଁ ମନୁଷ୍ୟର ପଶୁ ପ୍ରକୃତିକୁ ମହାମାୟା ମା'ଦୁର୍ଗାଙ୍କ ପାଖରେ ବଳି ଦିଆଯାଇ ଶ୍ରୀକୃଷ୍ଣଜଗନ୍ନାଥଙ୍କ ଶ୍ରୀଚରଣରେ ଶୁଦ୍ଧଭକ୍ତି ପ୍ରାପ୍ତି ପାଇଁ ଦୁର୍ଗାଙ୍କୁ ପୂଜାରାଧନା କରାଯାଏ ।

ବୁଢ଼ୀବଗିଚା, ଖୋର୍ଦ୍ଧା
ପିନ୍- ୭୫୨୦୫୫



# ପୁରାଣ ଇତିହାସରେ ଜଗଜ୍ଜନନୀ ମା' ଦୁର୍ଗା

ଅଧ୍ୟାପିକା ସୌଦାମିନୀ ବେହେରା

ଶକ୍ତି ହିଁ ମହାମାୟା ଅଟନ୍ତି । ସୃଷ୍ଟି ଓ ସ୍ରଷ୍ଟାଙ୍କ ମଧ୍ୟରେ ଭେଦଭାବ ଜାଗ୍ରତ କରୁଥିବା ଶକ୍ତି ସ୍ୱୟଂ ମହାମାୟା । ବାମକେଶ୍ୱର ତନ୍ତ୍ରରେ ବର୍ଣ୍ଣିତ ରହିଛି ଯେ, ଯେଉଁ ସମୟରେ ପରାଶକ୍ତି ଆପଣାର ସ୍ଫୁରଣକୁ ଦର୍ଶନ କରନ୍ତି, ସେହିସମୟରେ ଅମ୍ବିକାର ରୂପ ନେଇଥାନ୍ତି । ପଞ୍ଚଭୂତରେ ଗଢ଼ା ସଂସାର । ଆକାଶ, ବାୟୁ, ତେଜ, ଜଳ ଓ ପୃଥିବୀ ।



ଶକ୍ତି ସୃଷ୍ଟିର ମୂଳ ଆଧାର । କୁହାଯାଏ, ସୃଷ୍ଟିର ପୂର୍ବରୁ ଏକା ଦେବୀ ଥିଲେ । ସେ ପରମ ଶକ୍ତି । ତେଣୁ ସେ ଆଦ୍ୟା । ସେହି ଆଦ୍ୟାଙ୍କଠାରୁ ସୃଷ୍ଟି ହେଲା ଏ ଜଡ଼ଜୀବ, ପ୍ରକୃତି ପୁରୁଷାତ୍ମକ ଜଗତ ଶ୍ରୀବ୍ରହ୍ମା ଶ୍ରୀ ବିଷ୍ଣୁ ଓ ଶ୍ରୀ ମହେଶ୍ୱର ଆଦି । ମୁଖ୍ୟ ତ୍ରିବେଦ, ମହାସରସ୍ୱତୀ, ମହାଲକ୍ଷ୍ମୀ ଓ ମହାକାଳୀ ସେହି ଶକ୍ତି ଦେବୀଙ୍କଠାରୁ ଜାତ । ସେ ବହ୍ମ ଜୀବ ।

ଶକ୍ତି ଲୁକ୍କାୟିତ ଅବସ୍ଥାରେ ଯେତେବେଳେ ଥାଏ, ସେତିକିବେଳେ ତାହା ମାପିବା ଅସମ୍ଭବ ହୋଇପଡ଼େ । କିନ୍ତୁ ଶକ୍ତି ସକ୍ରିୟ ହେଲେ ଏ ବିଶ୍ୱ ବ୍ରହ୍ମାଣ୍ଡକୁ ଜାଳିପୋଡ଼ି ଛାରଖାର କରିଦେଇପାରେ । କାଠରେ ଅଗ୍ନି ସୁପ୍ତ ଅବସ୍ଥାରେ ଥାଏ । ମାତ୍ର କାଠକୁ ଘର୍ଷଣ କରାଗଲେ ଅଗ୍ନି ସଞ୍ଚାରିତ ହୋଇ ଦହନର ଶକ୍ତି ଯୋଗାଏ । ଠିକ୍ ସେହିପରି, ଏ ଜୀବଜଗତର ହିତ ପାଇଁ, ଧର୍ମ ସଂସ୍ଥାପନ ପାଇଁ ଯୁଗେ ଯୁଗେ ମା' ଅବତାରୀ ସାଜି ଧରାପୃଷ୍ଠରେ ଦୁଷ୍ଟର ବିନାଶ କରି ସଂସାରରେ ଶାନ୍ତି ସ୍ଥାପନ କରନ୍ତି । ଶକ୍ତି ସକଳ କର୍ମର ଅଧିଷ୍ଠାତ୍ରୀ । ଶକ୍ତି ଏକ ରୂପ ଅନେକ । କେଉଁ ଆଦିମ ଅତୀତରୁ ଶକ୍ତି ପୂଜା ପ୍ରଥମେ ଆଦିମ ଅଧିବାସୀଙ୍କଠାରୁ ଆରମ୍ଭ ହୋଇଥିଲା । ଆଧ୍ୟାତ୍ମିକ ଚେତନାର ସ୍ଥଳୀ ଆମ ଭାରତବର୍ଷ । ଭାରତ ସଂସ୍କୃତିରେ ଶକ୍ତି ଉପାସନାର ପ୍ରାରମ୍ଭ ଘଟିଲା । ଶକ୍ତି ଦୁଇ ପ୍ରକାର - ବିଦ୍ୟା ଓ ଅବିଦ୍ୟା । ପରାଶକ୍ତି ଜୀବକୁ ଅବିଦ୍ୟା ରୂପରେ ସଂସାରରେ ଆଶୀର୍ବାଦ ବେଢ଼ିରେ ଆବଦ୍ଧ କରି ରଖେ ଓ ପୁଣି ବିଦ୍ୟା ରୂପରେ ସେ ଜୀବକୁ ମୁକ୍ତ କରିଥାଏ । ମୋଚନ କରିବା ହେଉଛି ତା' ଧର୍ମ ଓ ଶକ୍ତି । ପରାଶକ୍ତି ହେଉଛନ୍ତି 'ଅକ୍ଷର ବ୍ରହ୍ମ' ଓ ଅପରାଶକ୍ତି ହେଉଛନ୍ତି 'କ୍ଷରବ୍ରହ୍ମ' । ଏହି ଅପରା ଶକ୍ତି ହିଁ ଦୁର୍ଗା ପୂଜାର ଆରାଧ୍ୟ ଶକ୍ତି ।

ଶିବ ଯିଏ, ଶକ୍ତି ସିଏ । ଯିଏ ଦେବ ଦେବ ମହାଦେବ, ସିଏ ହିଁ ପାର୍ବତୀ, ଦୁର୍ଗା, ସିଏ ଶକ୍ତି । ତେଣୁ କୁହାଯାଏ - 'ଶକ୍ତି ବିନା ଶିବ ଶବରେ ରୂପାନ୍ତରିତ ହୋଇଥାନ୍ତି' ।

ଯେଉଁସବୁ ଶାସ୍ତ୍ରରୁ ସମ୍ୟକ ଜ୍ଞାନଲାଭ ହୋଇଥାଏ, ସେ ସମସ୍ତ ଶାସ୍ତ୍ର ତନ୍ତ୍ର ନାମରେ ଅଭିହିତ । ତନ୍ତ୍ରରେ ପ୍ରଥମେ ଶିବଶକ୍ତିଙ୍କର ମହିମା ସମ୍ପର୍କରେ ଉଲ୍ଲେଖ ହୋଇଅଛି । ଶିବଶକ୍ତିକୁ ଲିଙ୍ଗ ଓ ଶକ୍ତି ରୂପରେ ପ୍ରଥମେ ପୂଜା କରାଯାଉଥିଲା । ତାନ୍ତ୍ରିକ ମୂଳଭିତ୍ତିର ମତବାଦ ହେଉଛି ଶିବଶକ୍ତିର ଉପାସନା କରିବା । ସନାତନ ଧର୍ମ ମଧ୍ୟ ଏହି ତାନ୍ତ୍ରିକ ମତବାଦର ସମର୍ଥକ ଥିଲେ ।

ଭାରତର ସଂସ୍କୃତି, ଐତିହ୍ୟ, ଧର୍ମ ପରମ୍ପରାର ସ୍ୱାତନ୍ତ୍ରତା ରହିଅଛି କାଳକାଳକୁ । ଧାର୍ମିକ ପରମ୍ପରାରେ ଭାରତୀୟମାନେ ସଦାକାଳେ ଧର୍ମରେ ନିମଜ୍ଜିତ ହୋଇ ରହିଥାଆନ୍ତି । ଦୁଇଟି ସଭ୍ୟତା ଭାରତରେ ଆଦିମ କାଳରୁ ପ୍ରଚଳିତ ହୋଇଆସୁଅଛି ଯଥା – ମାତୃ ପ୍ରଧାନ ଓ ପିତୃ ପ୍ରଧାନ ବୈଦିକ ସଭ୍ୟତା । ମାତୃ କୈନ୍ଦ୍ରିକ ତନ୍ତ୍ର ପରମ୍ପରାରେ ଦେବୀପୂଜା କେଉଁ ଯୁଗରୁ ଭାରତରେ ପ୍ରଚଳିତ ହୋଇ ଆସୁଅଛି ଏହା ପୌରାଣିକ ଓ ପ୍ରତ୍ନତାତ୍ତ୍ୱିକ ଆଖ୍ୟାନରୁ ପ୍ରମାଣ ମିଳିଅଛି । ଦେବୀଙ୍କର ବିଭିନ୍ନ ଅଲୌକିକ ଲୀଳା ଚମତ୍କାର ଭାବରେ ଶ୍ରୀ ଚଣ୍ଡୀ ପୁରାଣ, ତ୍ରିପୁରା ରହସ୍ୟ ତନ୍ତ୍ରସାର, ସ୍କନ୍ଦ ପୁରାଣ, ବ୍ରହ୍ମ ବୈବର୍ତ୍ତ ପୁରାଣ, ରାଶି ତନ୍ତ୍ରରେ ଶକ୍ତି ରହସ୍ୟ ଓ ଶକ୍ତି ପୂଜାର ବିଭିନ୍ନ ଦିଗ ବିଷୟରେ ବିଶଦ ଭାବରେ ବର୍ଣ୍ଣନା କରାଯାଇଛି ।

ଓଡ଼ିଶାର ଧର୍ମ ସଂସ୍କୃତି ପରମ୍ପରାର ଇତିହାସ ଅବଲୋକନ କଲେ ସତରେ ଆଶ୍ଚର୍ଯ୍ୟ ଲାଗେ । ତନ୍ତ୍ରପୂଜା ପ୍ରାଚୀନ ଓଡ଼ିଶାର ଧର୍ମ କୌଶଳ । ଓଡ଼ିଶାକୁ ଉଡ୍‌ଡ଼ୀୟାନ କ୍ଷେତ୍ର ବୋଲି ତନ୍ତ୍ରଶାସ୍ତ୍ରରେ ଉଲ୍ଲେଖ ଅଛି । ବଜ୍ରଯାନ, ତନ୍ତ୍ରଯାନ, ସହଜଯାନ ଆଦି ତନ୍ତ୍ରାୟିତ ବୌଦ୍ଧଧର୍ମ ଓ ସୁସଂସ୍କୃତି ଉଡ୍‌ଡ଼ୀୟାନ ତନ୍ତ୍ରର ଜନ୍ମଭୂମି ଥିଲା ଓ ଏହି ଓଡ଼ିଶାର ପବିତ୍ର ମାଟିରେ ସାର୍ବଜନୀନ ଦୁର୍ଗା ପୂଜାର ଶୁଭାରମ୍ଭ ଘଟିଥିଲା । ଓଡ଼ିଶାରେ ପ୍ରଥମେ ଆଦିବାସୀ ସମ୍ପ୍ରଦାୟମାନଙ୍କ ଦ୍ୱାରା ମା'ଙ୍କର ପୂଜା ଆରମ୍ଭ ହୋଇଥିଲା ।

ସମ୍ବଲପୁର, କଳାହାଣ୍ଡି ଜିଲ୍ଲାରେ ପ୍ରଥମେ ଶାକ୍ତ ପୂଜାର ପ୍ରମାଣ ମିଳେ । ବିଶେଷ କରି ପଶ୍ଚିମ ଓଡ଼ିଶାରେ ଶକ୍ତି ପୀଠମାନଙ୍କରେ ଦେବୀ ଉପାସନାର ସ୍ୱାତନ୍ତ୍ରତା ଦେଖିବାକୁ ମିଳେ । ଓଡ଼ିଶାର ପ୍ରାଚୀନତମ ଦେବୀମାନଙ୍କ ମଧ୍ୟରେ ମା' ସ୍ତମ୍ଭେଶରୀ କାଷ୍ଠ ଖମ୍ବ ଦେବୀ ଶୀର୍ଷସ୍ଥାନରେ ଥିଲେ । ବିଶ୍ୱାସ କରାଯାଏ ଯେ, ଶ୍ରୀମନ୍ଦିରର ରତ୍ନ ସିଂହାସନରେ ସ୍ଥାପିତା ମା' ସୁଭଦ୍ରା ହେଉଛନ୍ତି ଏହି ସ୍ତମ୍ଭେଶରୀଙ୍କ ବିବର୍ତ୍ତିତ ବିଗ୍ରହ ।

ମହାନ୍ ପଣ୍ଡିତ ଓ ବିଜ୍ଞ ସାଧକମାନଙ୍କ ମତରେ ଦେହର ନାମାନ୍ତର ଦୁର୍ଗ ଓ ତହିଁରେ ଆର୍ନ୍ତବର୍ତ୍ତିନୀ ଶକ୍ତି ହେଲେ ଦୁର୍ଗା । ସ୍ୱୟଂ ଆଲୋକ ପ୍ରଦାୟିନୀ ଶକ୍ତି ହିଁ ମା' ଦୁର୍ଗା ଅଟନ୍ତି । ସ୍କନ୍ଦ ପୁରାଣରେ ବର୍ଣ୍ଣିତ ଅଛି ଯେ – ଜୀବଜଗତକୁ ଦୁଷ୍ଟ ଶକ୍ତିରୁ ଉଦ୍ଧାର ପାଇଁ ଦୁର୍ଗମ ଯୁଦ୍ଧରେ ଜୀବଜଗତକୁ ଦୁର୍ଗତି ପ୍ରଦାନ କରୁଥିବା ଦୁର୍ଗଦୈତୀ ହନ୍ତ୍ରୀ ଦେବୀ ମହାଶକ୍ତି ଆପଣାକୁ ଦୁର୍ଗା ନାମରେ ଅଭିହିତ କଲେ ।

ଦେବତାଗଣଙ୍କ ଦୁଃଖ ମୋଚନ ପାଇଁ ଦେବତାମାନଙ୍କୁ ଦୁଃଖରୁ ତ୍ରାଣ କରିବା ସହିତ ଦୁର୍ଗତି ଖଣ୍ଡନ କରିଥିବାରୁ ଦେବପତି ବ୍ରହ୍ମା ସର୍ବପ୍ରଥମେ ଦେବୀଙ୍କୁ ଦୁର୍ଗତିନାଶିନୀ ଦୁର୍ଗା ନାମରେ ସମ୍ବୋଧନ କରିଥିଲେ । ଭକ୍ତକୁ ରକ୍ଷାକରିବା ପାଇଁ ମା' ବିଭିନ୍ନ ରୂପରେ ଏ ସଂସାରରେ ଆବିର୍ଭୂତା ହୋଇଥାନ୍ତି । କେତେବେଳେ କଲ୍ୟାଣୀ, ରୋହିଣୀ, ଚଣ୍ଡୀକା ଆଉ କେତେବେଳେ ଶାମ୍ଭବୀ, କାଳୀ, ଭଦ୍ରା ଓ ଦୁର୍ଗା ଆଦି ନବଧା ନବଦୁର୍ଗା ରୂପରେ ଦୁଷ୍ଟ ଶକ୍ତିକୁ ସଂହାର କରିଥାନ୍ତି ।

ଶରତ ଋତୁର ଆଗମନରେ କାଶତଣ୍ଡୀ ଫୁଲରେ ଧବଳିତ ଧରଣୀମାତା ଉଲ୍ଲସିତ ହେଉଥାଏ ମା' ଦୁର୍ଗାଙ୍କ ଆବାହନୀ ବାର୍ତ୍ତା ପାଇ । ନିର୍ମଳ ଆକାଶରେ ଚନ୍ଦ୍ରର ଶୀତଳ ସ୍ୱଚ୍ଛକିରଣ, ମନ୍ଦମନ୍ଦ ମଳୟ ସାଥେ ଧାନକିଆରୀ ଶୋଇପଡ଼େ ସବୁଜ ଚାଦର ଘୋଡ଼େଇ । କି ଚମତ୍କାର ପ୍ରାକୃତିକ ଦୃଶ୍ୟରେ ମା'ଙ୍କର ଆଗମନୀ ପର୍ବ । ଦଶଭୁଜାରେ ଶୋଭା ପାଉଥାଏ ଖଣ୍ଡା, ଖର୍ପର, ଧନୁତୀର, ତ୍ରିଶୂଳ, ଢ଼ାଲ, ଚକ୍ର, ଫାର୍ସା, ମୁକୁଳିତ କେଶ, ଲାଲପାଟ ଶାଢ଼ୀର ଝଲକରେ ମା'ଙ୍କ ଦିବ୍ୟ ରୂପରେ ବିମୋହିତ ହୋଇପଡ଼େ ଭକ୍ତ । ଗଦ୍ ଗଦ୍ ହୋଇ ଆଖିରୁ ଝରିପଡ଼େ ଲୋତକର ଧାର । ସେହି ସୌନ୍ଦର୍ଯ୍ୟର ଦେବୀ, ଭକ୍ତମାନଙ୍କୁ ଆଶୀର୍ବାଦ କରିବା ନିମନ୍ତେ ଓହ୍ଲାଇ ଆସନ୍ତି ପୃଥିବୀ ବକ୍ଷରେ ।

ମା' ଦୁର୍ଗାଙ୍କର ମହାପୂଜା ବସନ୍ତ ଋତୁରେ ବାସନ୍ତି ଦୁର୍ଗାପୂଜା ଓ ଶରତ ଋତୁରେ ଶାରଦୀୟ ଦୁର୍ଗାପୂଜା ଅନୁଷ୍ଠିତ ହୋଇଥାଏ । କିନ୍ତୁ ଆଶ୍ୱିନ ମାସର ମା'ଙ୍କ ପୂଜା ଖୁବ୍ ଧୁମ୍‌ଧାମ୍‌ରେ ପାଳନ କରାଯାଏ । ନବରାତ୍ର ଦୁଇଟି ଶବ୍ଦର ସମାହାର ଯଥା – ନବ ଓ ରାତ୍ର । ଉପାସନା ଓ ତତ୍ତ୍ୱ ଜ୍ଞାନ ସର୍ବଦା ରାତ୍ରି ଉପରେ ନିର୍ଭର କରେ । ଜ୍ଞାନ ଆହରଣ ପାଇଁ ରାତ୍ରିକାଳ ହିଁ ସଠିକ୍ ସମୟ । ସମସ୍ତ ପ୍ରାଣୀମାନଙ୍କ ପାଇଁ ଯେଉଁ ସମୟ ବିଶ୍ରାମ ସମୟ ସେହି ସମୟରେ ସଂଯମୀ ପୁରୁଷ ରାତ୍ରି ସମୟରେ ଉଜାଗର ରହି ଏକାଗ୍ରତା ଚିତ୍ତରେ ତପ କରିଥାଏ ।

ନବଶବ୍ଦର ଅର୍ଥ ତନ୍ତ୍ର ଶାସ୍ତ୍ରରେ ବର୍ଷକ ୩୬୫ ଦିନ ଓ ଏହାର ନଅ ଭାଗରୁ ଏକ ଭାଗ ମଣ୍ଡଳ ଭାବରେ ନାମିତ କରାଯାଏ । ଜପ ପାଇଁ ଏକ ମଣ୍ଡଳ ହେଉଛି ପ୍ରକୃଷ୍ଟ କାଳ । ଦେବୀ ଭାଗବତରେ ଦେବୀ ପୂଜାର ପ୍ରକୃଷ୍ଟ ମାସଗୁଡ଼ିକ ହେଲା ଚୈତ୍ର, ଆଷାଢ଼, ଆଶ୍ୱିନ ଓ ମାଘ ମାସର ଶୁକ୍ଳ ପ୍ରତିପଦାର ନବମୀ ପର୍ଯ୍ୟନ୍ତ ସମୟ ଜଗତଜନନୀ ମା' ଦୁର୍ଗାଙ୍କର ଉପାସନା ନବରାତ୍ରୀ ପୂଜା ଭାବରେ ବିଖ୍ୟାତ । ଉପାସନାର ସମୟ ସୀମା ୯ ଗୋଟି ରାତ୍ରି ମଧ୍ୟରେ ସୀମିତ ରଖାଯାଏ କାରଣ – ମା' ନବବିଧା, ତାଙ୍କର ପୂଜାପାଇଁ ୯ ଦିନ ଧାର୍ଯ୍ୟ କରାଯାଇଛି । ଯଦିଓ ମା' ଦଶମହାବିଦ୍ୟା ଭାବରେ ଦଶଭାଗରେ ବିଭକ୍ତ । ଦଶଟି ସ୍ୱରୂପ ମଧ୍ୟରେ ସେ କ୍ରମ ବିକଶିତ ସ୍ଥିତିରେ ରହିଥାନ୍ତି ଓ ଦଶମ ସ୍ୱରୂପଟି ବିଜୟା ଦଶମୀରେ ବିଜୟିନୀର ସ୍ଥିତି ।

ସୃଷ୍ଟି ସଦା କାଳେ ସତ୍ତ୍ୱ , ରଜ ଓ ତମ ତ୍ରିତତ୍ତ୍ୱ ମଧ୍ୟରେ ସୀମିତ ରହିଥାଏ । ଏହି ତତ୍ତ୍ୱର ତିନିଗୁଣ ହେଉଛି ୯ । ଏହି ୯ହିଁ ମା'ଙ୍କର ଆବାହନ ପାଇଁ ସଠିକ୍ ଓ ଉପଯୁକ୍ତ ସଂଖ୍ୟକ ଦିନ ଅଟେ ।

ନବରାତ୍ର ପୂଜା ନବଧା ଭକ୍ତି ନବଗ୍ରହ, ନବତତ୍ତ୍ୱ , ନବକୁମାରୀ (ଯଥା – କୁମାରିକା, ତ୍ରିମୂର୍ତ୍ତୀ, କଲ୍ୟାଣୀ, ରୋହିଣୀ, କାଳୀ, ଚଣ୍ଡିକା, ଶମ୍ଭବୀ , ଦୁର୍ଗା , ସୁଭଦ୍ରା) ନବଦୁର୍ଗା (ଯଥା– ଶୈଳପୁତ୍ରୀ, ବ୍ରହ୍ମଚାରିଣୀ, ଚନ୍ଦ୍ରଘଣ୍ଟା, କୁଷ୍ମାଣ୍ଡ, ସ୍କନ୍ଦମାତା, କାତ୍ୟାୟନୀ, କାଳରାତ୍ରୀ, ମହାଗୌରୀ ଓ ସିଦ୍ଧିଦାତ୍ରୀ) ଓ ନବଶକ୍ତି (ଯଥା – ପଭା, ମାୟା, ଜୟା, ସୂକ୍ଷ୍ମା, ବିଶୁଦ୍ଧା, ନନ୍ଦିନୀ, ସୁପ୍ରଭା, ବିଜୟା, ସର୍ବସିଦ୍ଧିଦା)ଙ୍କ ପ୍ରତିବିମ୍ବ ରୂପ । କଦଳୀପତ୍ର, ଡ଼ାଳିମ୍ବପତ୍ର, ଧାନପତ୍ର, ହଳଦୀପତ୍ର, ସାରୁପତ୍ର, ମାଡାସାରୁପତ୍ର, ବେଲପତ୍ର, ଅଶୋକ ପତ୍ର ଓ ଜୟନ୍ତୀ ପତ୍ର ଇତ୍ୟାଦି ନଅପତ୍ରମାନଙ୍କୁ ଧଳା ଅପରାଜିତା ଲତା ଓ ହରିଡ଼ାଡ଼ାଳରେ ଗୁଡ଼ାଇ ପୂଜା ଆସ୍ଥାନରେ ରଖିବାର ବିଧି ରହିଅଛି । ବୃକ୍ଷ ପୂଜା ଆମ ସଂସ୍କୃତିରେ ପୁରାତନ ଯୁଗରୁ ରହିଆସିଛି । ତେଣୁ ମା ଦୁର୍ଗାଙ୍କ ଉପାସନାରେ ବୃକ୍ଷଡ଼ାଳର ମହତ୍ୱ ରହିଥାଏ ।

ଶକ୍ତିକୁ କେନ୍ଦ୍ରକରି ଓଡ଼ିଶାର ବିଭିନ୍ନ ଅଞ୍ଚଳମାନଙ୍କରେ ଶକ୍ତିପୀଠରେ ମା'ଙ୍କର ମହାଶକ୍ତିର ପ୍ରମାଣ ମିଳିଅଛି । ଶ୍ରୀମନ୍ଦିରରେ ମା' ବିମଳା, ଯାଜପୁରର ମା' ବିରଜା ଦୁର୍ଗାଙ୍କର ଅବତାର ଅଟନ୍ତି । ମା'ଙ୍କର ଲୀଳା ଅବର୍ଣ୍ଣନୀୟ ।

ଦଶହରା ଦୁର୍ଗାପୂଜାରେ ମୃଣ୍ମୟୀ ମୂର୍ତ୍ତିପୂଜା ସମଗ୍ର ଭାରତବର୍ଷରେ ଆଡ଼ମ୍ବର ସହ ପାଳନ କରାଯାଏ । ନବରାତ୍ରୀ ପୂଜା ପ୍ରାରମ୍ଭର ପ୍ରାୟ ଷଷ୍ଠୀ ଦିନରୁ ମା'ଙ୍କ ଉପାସନା ଆରମ୍ଭ କରାଯାଏ । ବର୍ତ୍ତମାନ ଓଡ଼ିଶା ଓ ପଶ୍ଚିମବଙ୍ଗରେ ଦୁର୍ଗାପୂଜାରେ ଅନେକ ନୂଆ ନୂଆ ଧର୍ମ ପରମ୍ପରା ଓ ନୂତନତ୍ୱ ଦେଖିବାକୁ ମିଳୁଅଛି । ଅଧିକ ବ୍ୟୟ ବହୁଳ ସହିତ ବିଭିନ୍ନ ରଙ୍ଗାରଙ୍ଗ କାର୍ଯ୍ୟକ୍ରମର ପ୍ରସାର ଘଟି ଦୁର୍ଗାପୂଜା ଅଧିକ ମନୋରଞ୍ଜନଧର୍ମୀ ହୋଇପାରୁଛି ।

ମୃଣ୍ମୟୀ ମୂର୍ତ୍ତିଙ୍କର ସପ୍ତମୀଠାରୁ ପୂଜା ଆରମ୍ଭ ହୋଇଥାଏ । ସପ୍ତମୀ ତିଥିରେ ମା'ଙ୍କର ଆବାହନୀ, ଅଷ୍ଟମୀରେ ବିଶେଷ ପୂଜା, ଅଷ୍ଟମୀ ଓ ନବମୀ ସନ୍ଧିକ୍ଷଣରେ ଚାମୁଣ୍ଡା । ଶକ୍ତିର ପୂଜା ଓ ନବମୀରେ ନବମୀ ପୂଜା ସହିତ ପ୍ରାର୍ଥନା ଶେଷ ହୁଏ ।

ଏହି ପୂଜା ଷୋଡ଼ଶ ଉପଚାରରେ ସମାପନ କରାଯାଏ ।

ଗଗନରେ ସୂର୍ଯ୍ୟ ଉଦୟ ହେବା ପରେ ଯେମିତି ଅନ୍ଧକାର ଆକାଶରୁ ଲିଭିଯାଏ ଠିକ୍ ସେହିପରି ଅନ୍ତରରୁ ମା'ଙ୍କର ନାମ ଉଚ୍ଚାରଣରେ ବିପଦ ମଧ୍ୟ ଅପସରି ଯାଏ । ମା' ଜଗତ୍ ଜନନୀଙ୍କ କରୁଣା ବର୍ଷୁଥାଉ ଜଗତ ସାରା, ଏହା ହିଁ ଆମର ଭକ୍ତିପୂତ ବିନମ୍ର ପ୍ରଣାମ ଓ ଆନ୍ତରିକ ନିବେଦନ ଓ ଇଚ୍ଛା ।

ସହାୟକ ପୁସ୍ତକ –
'ଓଡ଼ିଶାର ଦେବୀପୀଠ
ତତ୍ତ୍ୱ ଓ ଉପାସନା (ପ୍ରଥମ ଭାଗ )
ଲେଖକ – ଶ୍ରୀଯୁକ୍ତ ରାଜେନ୍ଦ୍ର କୁମାର ମହାନ୍ତି

---

ରାଜାବଜାର ଖୁଣ୍ଟିଆଗଳି, ମୟୂରଭିଲ୍ଲା
ଜଟଣୀ, ଖୋର୍ଦ୍ଧା– ୭୫୨୦୫୦

# ଭାରତଛାଡ଼ – ୧୯୪୨

**ନିର୍ମଳା କୁମାରୀ ମହାପାତ୍ର**

ଇନ୍‌କିଲାବ ଜିନ୍ଦାବାଦ, ଇନ୍‌କିଲାବ ଜିନ୍ଦାବାଦ
ଚାଲରେ ବନ୍ଧୁ ଚାଲରେ ସାଥୀ
ପାଦରେ ପକାଇ ପାଦ।
ମୁକ୍ତି ପଥର ସୈନିକ ଆମେ ଅଗ୍ନିପଥର ଯାତ୍ରୀ
ବଢ଼ି ଚାଲିବା ଲଢ଼ି ଚାଲିବା ନ ମାନି ଦିବସ ରାତ୍ରି
ସ୍ୱାଧୀନତାର ମଧୁ ଚାଖିବା
ଜାତୀୟତାର ସ୍ୱାଦ।
ଇନ୍‌କିଲାବ ଜିନ୍ଦାବାଦ ......
ମାଦକ ଦ୍ରବ୍ୟ ବର୍ଜନ କର, ଜିନ୍ଦାବାଦ ଜିନ୍ଦାବାଦ
ସ୍ୱାଧୀନତାକୁ ଅର୍ଜନ କର, ଜିନ୍ଦାବାଦ ଜିନ୍ଦାବାଦ
ଏଇ ଦେଶ ଏ ଜାତିର ପାଇଁ
ହୁଅରେ ଉନ୍ମାଦ .......
ଜିନ୍ଦାବାଦ......

(କ୍ରାନ୍ତି ଗୀତିକା – ପୃଷ୍ଠା ୫୨–୫୩) / କବି ବୈକୁଣ୍ଠନାଥ ମହାନ୍ତି ।

ଉପରେ ପ୍ରଦତ୍ତ ଗୀତର ବିରଚନ କାଳ ହେଲା ୧୯୪୨, ଅଗଷ୍ଟ–୧୫, ସ୍ଥାନ – କଟକ ଜେଲ। ଆଜକୁ ପ୍ରାୟ ୭୫ ବର୍ଷ ତଳର କଥା। ସେ କାଳର ଅଗଷ୍ଟ ବିପ୍ଳବ ମଧ୍ୟ ଭାରତଛାଡ଼ ୧୯୪୨ ନାମରେ ଇତିହାସରେ ପ୍ରସିଦ୍ଧ। ଏଇ ୨୦୧୭ ବର୍ଷ ମଧ୍ୟ ଚମ୍ପାରନ ସତ୍ୟାଗ୍ରହର ଶତବାର୍ଷିକୀ। ଅର୍ଥାତ୍ ଏକ ଶତାବ୍ଦୀ ତଳେ ୧୯୧୭ ମସିହାରେ ବିହାରର ଚମ୍ପାରନ୍‌ଠାରେ ନୀଳଚାଷୀମାନଙ୍କ ଉପରେ କରାଯାଇଥିବା ଅତ୍ୟାଚାର ବିରୋଧରେ ଗାନ୍ଧିଜୀ ସତ୍ୟାଗ୍ରହ ଜରିଆରେ ଆନ୍ଦୋଳନ କରି ସଫଳ ହୋଇଥିଲେ।

ଭାରତଛାଡ଼ ଆନ୍ଦୋଳନ, ୧୯୪୨ ପଛରେ ରହିଛି ଦୀର୍ଘ ୨୧ ବର୍ଷର ସଂଗ୍ରାମ। ପ୍ରଥମ ବିଶ୍ୱଯୁଦ୍ଧ (୧୯୧୪–୧୯) ବେଳେ ବ୍ରିଟିଶ ଶାସିତ ଭାରତକୁ ଯୁଦ୍ଧ ଖର୍ଚ୍ଚ ବାବଦକୁ ଦେବାକୁ ହୋଇଥିଲା ଦଶକୋଟି ପାଉଣ୍ଡ। ପ୍ରତି ମାସରେ ଯୁଦ୍ଧ ପାଇଁ ଦେବାକୁ ପଡୁଥିଲା ବାରଲକ୍ଷ ପାଉଣ୍ଡ। ଇଂଲଣ୍ଡ ସରକାରଙ୍କୁ



ଦେବାକୁ ହେଉଥିଲା ଚାଳିଶଲକ୍ଷ ପାଉଣ୍ଡ। ଏସବୁ ଭରଣା କଲା ବେଳକୁ ମନେ ହେଉଥିଲା ବିଦେଶୀ ସରକାର ଭାରତକୁ ଦୁହାଁଳିଆ ଗାଈ କରି ସବୁ ଗୋ–ରସ ଶୋଷଣ କରୁଥିଲା। ଏଥି ସହ ଏକ ନିର୍ଦ୍ଦିଷ୍ଟ କାଳ ବ୍ୟବଧାନରେ ଜାହାଜ ଭର୍ତ୍ତି ଖାଦ୍ୟଶସ୍ୟ ଇଂଲଣ୍ଡକୁ ଯୋଗାଇବାକୁ ହେଉଥିଲା। ଏଣେ ଆମ ଦେଶର ଲୋକେ ଭୋକ ଉପାସରେ ପଡ଼ି ରହୁଥିଲେ। ଆମ ଲୋକେ ଦୁର୍ଭିକ୍ଷରେ ପ୍ରପୀଡ଼ିତ ହେଉଥିବା ବେଳେ ଇଂରେଜ ସରକାର କେବଳ ଆପଣା ସ୍ୱାର୍ଥ ସାଧନରେ ଶୋଷଣ କରି ଚାଲୁଥିଲା। ସନ ୧୯୧୯ ମସିହାର ପୁରୀ ଦୁର୍ଭିକ୍ଷର କରାଳଚିତ୍ର ଇତିହାସ ଓ ସାହିତ୍ୟର ଛତ୍ରେ ଛତ୍ରେ ବର୍ଣ୍ଣିତ ହୋଇଛି। ପୁରୀ

ଜିଲାର ଡଭାର ଗ୍ରାମର ଚାଉଳବଣ୍ଟନ କେନ୍ଦ୍ରର ବର୍ଣ୍ଣନାରୁ କିଂଚିତ୍ ନିମ୍ନରେ ପ୍ରଦତ୍ତ, ଯେଉଁଥିରୁ ଆମ ଲୋକମାନଙ୍କର ଦୁରବସ୍ଥା ଆକଳନ କରିହେବ। ଯଥା –

ତଣ୍ଡୁଳ–ବଣ୍ଟନ କଥା ଡଭାର ଗ୍ରାମରେ
ଲାଗିଲା ସହସ୍ର ସେହି ବୁଭୁକ୍ଷୁ ପ୍ରାଣରେ,
ନିର୍ବଳ, ନିର୍ବସ୍ତ୍ର, ନିଃସ୍ୱ, ନିର୍ଲଜ, ନିଉନ
ନିରାଶ, ନିସ୍ତେଜ, ନିରାବଲମ୍ବନ, ନିର୍ଗୁଣ

ଦୁର୍ଭିକ୍ଷ ଦଳିତ ସେହି ଓଡ଼ିଆ ଜନତା
ମାନବିକ ପତନର ମୂର୍ତ୍ତିମନ୍ତ କଥା।
ସରୁ ସରୁ କର, ଜାନୁ, ସ୍ଫୀତ ପଦୋଦର
ରୁକ୍ଷ କେଶ, ପରିସ୍ଫୁଟ ଚକ୍ଷୁର କୋଟର
ମଳିନ ଗ୍ରନ୍ଥିଳ ବାସ ନିବାରେ ସରମ,
ନେଇ ଅବା ସଦ୍ୟ ଫେରାଇଛି ତାଙ୍କୁ ଯମ।

ଆମ ଦେଶର ଲୋକଙ୍କୁ ଭୋକିଲା, ଅବହେଳିତ ରଖି ନିଃଶୋଷକ ଇଂରେଜ ସରକାର ସବୁ ଚାଲାଣ କରୁଥିଲା ତା'ଦେଶକୁ। ତା' ସହିତ ଆମ ଦେଶର ସୈନିକଗଣ ଇଂରେଜ ସପକ୍ଷରେ ଫ୍ରାନ୍ସ, ଇଜିପ୍ଟ, ଆଡ଼େନ, ସୁଏଜ, ପୂର୍ବ–ଆଫ୍ରିକା, ପଶ୍ଚିମ ଆଫ୍ରିକା, ମେସୋପଟାମିଆରେ ଲଢ଼ି ବିରଳ ବୀରତ୍ୱ ପ୍ରଦର୍ଶନ କଲେ। ଇଂଲଣ୍ଡ ପକ୍ଷ ଜିତିଲା। କାହିଁ ଆମକୁ ସ୍ୱାଧୀନତା ? ଯେଉଁ ଶିଖ୍ ସୈନିକ ବଳ ଯୋଗୁଁ ଇଂଲଣ୍ଡର ଜିତାପଟ ହେଲା, ଅକୃତଜ୍ଞ ସେହି ସରକାର ସର୍ବପ୍ରଥମେ ଶିଖ୍‌ମାନଙ୍କ ରାଜ୍ୟରେ ନରସଂହାର କଲା, ଏପ୍ରିଲ ୧୩, ୧୯୧୯ରେ । ଜାଲିଆନାୱାଲାବାଗରେ। ନବବର୍ଷର ବୈଶାଖୀ ପର୍ବ ଅବସରରେ ୧୨୦୦ ଲୋକଙ୍କୁ ହତ୍ୟା, ୩୬୦୦ଙ୍କୁ କ୍ଷତାକ୍ତ–ରକ୍ତାକ୍ତ, ୧୫ ହଜାରରୁ ଅଧିକଙ୍କୁ ଭୟଭୀତ କରିଥିଲା ସରକାରର ସେଇ ନିଷ୍ଠୁର ପୁଲିସ ଦଳ। (ତା'ର ମୁଖ୍ୟ ପୁଣି ଥିଲା ସେଇ ବ୍ରିଗେଡ଼ିଅର ଆର.ଇ.ଏଚ୍.ଡାୟାର, ଯାହାଙ୍କୁ ହତ୍ୟା କଲେ ଉଦ୍ଧାମ ସିଂ।) ସେହି ଗଣ ନରସଂହାରର ପ୍ରତିବାଦରେ–

ତୀବ୍ର ତେଜରେ ସଭା ବସିଥିଲା କ୍ଷୁବ୍ଧ ଦଳିତ ଜନତାର
କଥା ଉଠୁଥିଲା 'ବଡ଼ ଧପାବାଜ ଆମ ଏ ବିଦେଶୀ ସରକାର।
ଯୁଦ୍ଧକୁ ଆମେ ସଂପଦ ଦେଲୁ ଢାଳିଦେଲୁ ଛାତି–ଲହୁଧାର
ଆମ ଦୁର୍ଦ୍ଦଶା ଦେଖିବାକୁ ଟିକେ ବିଚାରିଲା କାହିଁ ସରକାର ?
ଶାସନ ନୀତିର ଶୋଷଣ ପେଷଣ ସହିବାନି ଆଉ ମଥାପାତି
ଶକ୍ତି ଏଥର ଦେଖାଇବା ଆମେ, ଲୁହାରେ ଗଢ଼ିବା ଏଇ ଛାତି'

(ଗଡ଼ନାୟକ ଗ୍ରନ୍ଥାବଳୀ / ପ୍ରଥମଭାଗ – ପୃ.୪୦୨ / ଉଦ୍ଧାମ ସିଂ)

ଅତଏବ ଶକ୍ତି ପ୍ରଦର୍ଶନ କରାଯାଇଥିଲା ଅସହଯୋଗ ଆନ୍ଦୋଳନରେ। 'ଛାଡ଼, ଛାଡ଼, ସ୍କୁଲ, କଲେଜ, କୋର୍ଟ–କଚେରି ଛାଡ଼' କଳଲୁଗା ପରିହାର କର ଖଦଡ଼କୁ ଆଦରିବା ଥିଲା ୧୯୨୦–୨୨ର ଆହ୍ୱାନ।

ସନ ୧୯୩୦ର ଲବଣ ସତ୍ୟାଗ୍ରହରେ ଉଚ୍ଚ ସଫଳତାକୁ ଲକ୍ଷ୍ୟ କରି ବିଶ୍ୱର ଅନ୍ୟତମ ବିଶିଷ୍ଟ ସାମ୍ବାଦିକ ୱେବ ମିଲର୍ ଲେଖିଲେ– "India is now free technically & legally. ..." ... ଗାନ୍ଧୀ ଇରଉଇନି ଚୁକ୍ତି ପ୍ରୋକ୍ତ ଲବଣ ସତ୍ୟାଗ୍ରହର ଅନ୍ୟତମ ସଫଳତା। ରବୀନ୍ଦ୍ରନାଥ ଠାକୁରଙ୍କ ମନ୍ତବ୍ୟ ଥିଲା ଯେ ୟୁରୋପର ନୈତିକ ପତନ ଘଟିଛି। ପଣ୍ଡିତ ନୀଳକଣ୍ଠ ଦାସଙ୍କର ଆହ୍ୱାନ ଥିଲା –

ଛୋଡ଼କେ ଆଓ ଗୋଲାମୀ
ସ୍ୱରାଜ୍ୟ ଭୟା ଅଲବତ୍ ହୋଗା
ଛୋଡ଼କେ ଆଓ ଗୋଲାମୀ
ଭାରତ ଲଡ଼୍‌କା ଗୋଲାମ ହୋକେ
କାହେ କରୋ ବଦନାମୀ
ସ୍କୁଲ କଲେଜ କାଉନସିଲ୍‌କୁ
ୟାଦ ରଖୋ ବାବୁଜୀ
ମାୟା ଏ ସବୁ ଗୋଲାମୀ କା
ଇସ୍‌ମେ ନେହିଁ ଭୁଲୋଗି।

କ୍ରାନ୍ତି ଗୀତିକା, ପୃଷ୍ଠା–୪୨/

ଏସବୁକୁ ନେଇ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଗୋଲ ଟେବୁଲ ବୈଠକରେ ଆଲୋଚନା। ଗଣ ଆଇନ ଅମାନ୍ୟ ଆନ୍ଦୋଳନ। ଏହାକୁ ଭଣ୍ଡୁର କରିବା ପାଇଁ ଇଂରେଜ ସରକାରଙ୍କ Commual Award ବା ସାଂପ୍ରଦାୟିକ ବିଭେଦତା ଥିଲା ବିଷବର୍ଷୀ–କାରକ। ଭୋଟ ଅଧିକାର, ଶାସନରେ ଆସନ ସଂଖ୍ୟା ବଣ୍ଟନରେ ହିନ୍ଦୁ, ମୁସଲମାନ, ଶିଖ୍, ଆଙ୍ଗଲୋ, ହରିଜନ (ସେତେବେଳେ ଅସ୍ପୃଶ୍ୟ ଜାତି ବୋଲି କହୁଥିଲେ) ଆଦି

ବିଭେଦତା ବିଷ ଭର୍ତ୍ତି କରାଇଥିବା ମନ୍ତ୍ରୀ ଥିଲେ ରାମ୍‌ସେ ମେକଡ଼ୋନାଲ। ଏହାକୁ ବିରୋଧ କରି ଗାନ୍ଧିଜୀ ଆମରଣ ଅନଶନ କଲେ। ଏଥିନେଇ ପୁନାରେ ଚୁକ୍ତି ହେଲା, ଯାହାକୁ କୁହାଯାଏ POONA PACT । ସରକାର କଂଗ୍ରେସର କଥାକୁ ଗ୍ରହଣ କରିନେଲେ। ପୁଣି ମାର୍ଚ୍ଚ ୧୫, ୧୯୩୩ ରେ ଶ୍ୱେତପତ୍ର ପ୍ରକାଶ କଲେ କି ଭାରତ ଶାସନ ପାଇଁ ଏକ ସମ୍ବିଧାନ ତିଆର ହେବ। ଏହାର ରୂପରେଖ କିପରି ହେବ ପୁଣି ତାହା ଭାରତୀୟଙ୍କୁ ସୁହାଇବ କି ନାହିଁ – ଏସବୁ କଥାକୁ ନେଇ ଗାନ୍ଧିଜୀ ୧୯୩୩, ମଇ, ୦୮ରେ ୟାରଭାଡ୍ ଜେଲରେ ଅନଶନ କଲେ। ଫଳତଃ ସରକାର ଗାନ୍ଧିଜୀଙ୍କୁ ଜେଲରୁ ମୁକ୍ତ କଲେ। ସମ୍ବିଧାନ କଥା ଫସର ଫାଟିଗଲା। କଂଗ୍ରେସର ନେତାମାନଙ୍କ ଆଲୋଚନାରୁ ସ୍ପଷ୍ଟ ହେଲା ଯେ ଇଂରେଜ ସରକାରଠାରୁ କିଛି ସୁଫଳ ମିଳିବନି। ସବୁ ସରକାରୀ ଆଶ୍ୱାସନା ହେଲା ସେମାନଙ୍କର ସ୍ୱାର୍ଥ-ବିଜଡ଼ିତ। ଏଣୁ ତାହାର ପ୍ରତିବାଦ କରାଯିବ।

ଇତି ମଧ୍ୟରେ ସୁଭାଷଚନ୍ଦ୍ର ବୋଷ ବୁଝିଲେ ଯେ ଅହିଂସାରୁ କିଛି ମିଳିବନି। ତେଣୁ ସେ କଂଗ୍ରେସରୁ ଇସ୍ତଫା ଦେଇ 'ଫରୱାର୍ଡ଼୍ ବ୍ଲକ' ଗଢ଼ିଲେ। ତାଙ୍କୁ ପ୍ରଥମେ କାରାଗାର ଓ ପରେ ନଜରବନ୍ଦୀରେ ରଖିଥିବା ଫିରିଙ୍ଗି ସରକାର-ଆଖିରେ ଧୂଳି ଦେଇ ଛଦ୍ମବେଶରେ ସେ କଲିକତା ଛାଡ଼ି ମସ୍କୋ ବାଟେ ଯାଇ ବର୍ଲିନ୍‌ରେ ୧୯୪୧, ନଭେମ୍ବର ୦୨ ତାରିଖରେ ସ୍ୱାଧୀନ ଭାରତ କେନ୍ଦ୍ର ଗଠନ କଲେ। ଜାନୁଆରୀ ୨୬, ୧୯୪୨ରେ ସେ ବର୍ଲିନ୍‌ର ସ୍ୱାଧୀନ ଭାରତ କେନ୍ଦ୍ରରୁ ଭାରତ ସ୍ୱାଧୀନ ବୋଲି ଦେଶବାସୀଙ୍କୁ ରେଡ଼ିଓ ମାଧ୍ୟମରେ ଉଦ୍‌ବୋଧନ ଦେଲେ। ରବୀନ୍ଦ୍ରନାଥ ଠାକୁରଙ୍କ 'ଜନଗଣ-ମନ-ଅଧିନାୟକ ...'କୁ ଜାତୀୟ ସଂଗୀତର ମର୍ଯ୍ୟାଦା ଦିଆଯାଇଥିଲା । ନେତାଜୀଙ୍କ ଦ୍ୱାରା ଗଠିତ 'ଆଜାଦ୍ ହିନ୍ଦ୍ ଫୌଜ'ର ସଭ୍ୟମାନେ ପରସ୍ପରକୁ ଭେଟିଲେ 'ଜୟହିନ୍ଦ୍' କହି ଅଭିବାଦନ ଜଣାଇଲେ। ନେତାଜୀ ଓ ହିଟଲର୍ ମିଶି ବ୍ରିଟିଶ-ଶାସିତ ଭାରତକୁ ଆକ୍ରମଣ କରିବା ଆଶଙ୍କାରେ ଫିରିଙ୍ଗି ସରକାର ଆତଙ୍କିତ ହେଲେ।

ଅନ୍ୟ ପକ୍ଷରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଲାଗିଲା ଓ ଜାପାନ ଆକ୍ରମଣରେ ରେଙ୍ଗୁନ୍‌ର ପତନ ଥିଲା ଇଂରେଜ ସରକାର ପାଇଁ ମୁଣ୍ଡବ୍ୟଥାର କଥା। ଜାପାନ ମାଡ଼ି ଆସିବ – ଏଇ ଆଶଙ୍କାରେ ଇଂଲଣ୍ଡର ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ ସରକାର ଜନୈକ ମନ୍ତ୍ରୀ ସାର୍ ଷ୍ଟାଫୋର୍ଡ଼ କ୍ରିପ୍‌ସଙ୍କୁ ଭାରତର ବଡ଼ଲାଟ୍ କରି ପଠାଇଲେ। ଏତିକି ବେଳେ ମୁସଲିମ୍ ଲିଗ୍‌ର କନ୍ଦଳ ଥିଲା ଆଉ ଏକ ଧକ୍‌କା। ସାର୍ କ୍ରିପ୍ସଙ୍କର ସମସ୍ତ ପ୍ରସ୍ତାପନକୁ କଂଗ୍ରେସ ଅଗ୍ରାହ୍ୟ କଲେ ଓ ସେ ବିଲାତ ଫେରିଗଲେ। କଂଗ୍ରେସର ଆହ୍ଲାବାଦ ବୈଠକରେ ଭାରତଛାଡ଼ ପ୍ରସ୍ତାବ ବ୍ରିଟିଶ ସରକାରଙ୍କୁ ଦିଆଯାଇଥିଲା। କାରଣ ତେଣେ ଜାପାନ ମାଡ଼ି ଆସିବାର ଆଶଙ୍କା ଥିଲା। ତା'ପରେ ଆସିଲେ ଲର୍ଡ଼ ଲିନ୍‌ଲିଥଗୋ। କଂଗ୍ରେସର ବମ୍ବେ ଅଧିବେଶନରେ ଅଗଷ୍ଟ ୦୮, ୧୯୪୨ରେ 'ଭାରତଛାଡ଼' ପ୍ରସ୍ତାବ ଆଗତ କଲେ ମୌଲାନା ଆବୁଲ୍ କାଲାମ୍ ଆଜାଦ। ଏହାକୁ ସମର୍ଥନ କଲେ ବଲ୍ଲଭ ଭାଇ ପଟେଲ। ନେହେରୁ ଏହାର ସ୍ପଷ୍ଟୀକରଣ ଦେଇ କହିଲେ ବ୍ରିଟିଶ ସରକାରଙ୍କୁ ଏହା ଧମକ ନୁହେଁ, ବରଂ ତାହା ଏକ ସହଯୋଗମୂଳକ ଆମନ୍ତ୍ରଣ। ଏହାକୁ କାର୍ଯ୍ୟକାରୀ କରିବା ପାଇଁ ଗାନ୍ଧୀଙ୍କର ଅତି ଶକ୍ତିଶାଳୀ ଆହ୍ୱାନ ଥିଲା 'କର ବା ମର' (Do or Die) । ସ୍ୱାଧୀନତା ଭୀରୁ ବା ଦୁର୍ବଳ ହୃଦୟକୁ ମିଳେନାହିଁ। ଭାରତକୁ ସ୍ୱାଧୀନ କରିବା ବା ସେଥିପାଇଁ ଉଦ୍ୟମ କରୁ କରୁ ମରିବା ଶ୍ରେୟ। ଗାନ୍ଧିଜୀଙ୍କର କଥାଟି କ୍ଷୁଦ୍ର ହେଲେ ହେଁ ଥିଲା ଅସାଧାରଣ।

ତା' ପରଦିନ ସକାଳ ହେଲା ବେଳକୁ ବ୍ରିଟିଶ ସରକାର ଗାନ୍ଧିଜୀ ଓ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟଗଣଙ୍କୁ ଗିରଫ କଲେ। ପୁନାର ଆଗା ଖାଁ ପ୍ରାସାଦରେ ଗାନ୍ଧିଜୀଙ୍କୁ ରଖାଗଲା। ଅନ୍ୟମାନଙ୍କୁ ଅହମ୍ମଦାବାଦର ଦୁର୍ଗରେ ରଖାଗଲା। ସମଗ୍ର ଦେଶରେ ଯେଉଁଠି ଯେମିତି ସଂଗ୍ରାମୀମାନଙ୍କୁ ଧରିନେଇ ଜେଲଖାନାରେ ଭର୍ତ୍ତି କରିବା ଥିଲା ସରକାରଙ୍କ ମୁଖ୍ୟ କାର୍ଯ୍ୟ। ଗାନ୍ଧୀ ଆଦି ନେତୃବୃନ୍ଦଙ୍କୁ ଗିରଫ କରିବା ବାର୍ତ୍ତା ବନାଗ୍ନି ପରି ସମଗ୍ର ଦେଶରେ ବ୍ୟାପିଗଲା। ସାରା ଦେଶରେ ଅଭୂତପୂର୍ବ ବିପ୍ଲବର ନିଆଁ ଜଳିଲା। ଦେଶ-ରାଜ୍ୟ-ଜିଲା-ତାଲୁକ-ଗ୍ରାମ- – ସବୁଠୁଁ ନେତାମାନଙ୍କୁ ଆଗ ନେଇ ଜେଲଖାନାରେ ରଖାଗଲା। ସରକାର ଭାବୁଥିଲେ ନେତୃତ୍ୱବିହୀନ ବିଦ୍ରୋହ ଚଳିବ ନାହିଁ। କିଂତୁ ସେ ଅନୁମାନ ମିଥ୍ୟା ପ୍ରମାଣିତ ହେଲା। ନେତୃତ୍ୱ-ତତ୍ତ୍ୱ – ନିର୍ଦ୍ଦେଶ -- କିଛି ଲୋଡ଼ା ପଡ଼ିଲା ନାହିଁ। ସରକାର ପ୍ରତି ବିତୃଷ୍ଣ ହଜାର ହଜାର କର୍ମୀ ଆନ୍ଦୋଳନରେ ଯୋଗ ଦେଲେ। ପୃଥିବୀରେ ଘଟିଥିବା ବହୁ ଅବିସ୍ମରଣୀୟ ବିପ୍ଳବ ମଧ୍ୟରୁ

୧୯୪୨ର ଭାରତଛାଡ଼ ଆନ୍ଦୋଳନ ଅନ୍ୟତମ । ମହାନ୍ କ୍ରାନ୍ତିକୁ ସ୍ୱାଗତ କରିବା ପାଇଁ ଜେଲଖାନା ହେଲା ତୀର୍ଥସ୍ଥଳ । କାରାଗାରର ଭୟ ତୁଟାଇବା ପାଇଁ ଗାନ କରାଯାଇଥିବା ଗଣକବି ବୈଷ୍ଣବ ପାଣିଙ୍କ ବିରଚିତ ଗୀତ ଏଠାରେ ଉଲ୍ଲେଖ କରାଯାଇପାରେ, ଯଥା–

ଦେଖ ଦେଖ ଭାଇ ଭାଙ୍ଗିଲାଣି ଆଜି
ଗୋରାଙ୍କ ଜିହଲଖାନା ହେ ।
କାଲିର କାଇଦା ନାହିଁ ଆଜି ଆଉ
ପଶନ୍ତି ସ୍ୱରାଜସେନା ହେ ।
ଚିହ୍ନିଲାଣି ସରକାର
ଲାଭହାନୀ ପୁଣି କେ ନେବାର
ବଣିଆ ଟୋକାଟା ଉଠାଇ ଦେଲାଣି
ଜିହଲଖାନାର ଡର ହେ ...

କ୍ରାନ୍ତି ଗୀତିକା, ପୃ.୫୪

ବଣିଆଟୋକା କହିଲେ ଏଠାରେ ମହାତ୍ମା ଗାନ୍ଧୀଙ୍କୁ ବୁଝାଉଅଛି ।

ଜାତୀୟ କବି ବୀରକିଶୋର ଦାସଙ୍କ ଗୀତ –

ଆଇନ ଜାରି ସେ କରେ ନିତି
ମରଣକୁ ଆଉ ନାହିଁ ଭୀତି
ଲକ୍ଷ ଲକ୍ଷ ଲୋକ ଜାଗି ଉଠିଲେଣି
ଗୁଳିକୁ ପତାଇ ନିଜ ମଥା
ବନ୍ଧୁ, ସେଇ ଚିନ୍ତା ।
ମାରିବ ସେ କେତେ ମାରୁ
ବଳେ ବାହାରିବୁ ଆମେ ଦଳେ ଦଳେ
ଜୀବନକୁ ଆମେ ପାଣି ଛଡ଼ାଇଛୁ
ନ ଛାଡ଼ିବୁ କେବେ ଆମ ପନ୍ଥା
ବନ୍ଧୁ, ସେଇ ଚିନ୍ତା ।
କଚେରି କରିବୁ ଛତା ତଳେ
ସଭା ବସାଇବୁ ଗଛମୂଳେ
ସତ୍ୟାଗ୍ରହ ନୀତି ଦାଣ୍ଡେ ପ୍ରଚାରିବୁ
ଭାଙ୍ଗିବୁ ବେପାରି ଲୁହାଯନ୍ତା
ବନ୍ଧୁ, ସେଇ ଚିନ୍ତା ।
କଂସା ଥାଳି ପଛେ ନେଉ କାଢ଼ି
କୋରଖି କରୁ ସେ ଜମିବାଡ଼ି
ବିଲାତ ଦରବ ଖିଏ ନ ଛୁଇଁବୁ
ପିନ୍ଧିବୁ ଖଦଡ଼ ଛିଣ୍ଡାକନ୍ଥା
ବନ୍ଧୁ, ସେଇ ଚିନ୍ତା ।
ଅହିଂସା ଆମର ଧର୍ମନୀତି
ସାହସ ଆମର କର୍ମଭୀତି
ଚରିତ୍ର ଆମର ପରମ ଦେବତା
ଜୀବନର ବ୍ରତ ସ୍ୱାଧୀନତା
ବନ୍ଧୁ, ସେଇ ଚିନ୍ତା । ...

କ୍ରାନ୍ତି ଗୀତିକା, ପୃଷ୍ଠା–୪୯

ଭାରତଛାଡ଼ ଆନ୍ଦୋଳନକୁ ସଫଳ କରିବା ପାଇଁ ବ୍ୟବସାୟୀ–ପୁଞ୍ଜିପତିମାନେ ହାତଖୋଲା କରି ଚାନ୍ଦା ଦେଲେ । ବଡ଼ ବଡ଼ ନେତ୍ରୀ ଗୁପ୍ତ କୋଠରିମାନଙ୍କରେ ରହି ବିପ୍ଳବ ଜାରି ରଖିଲେ । ନେତା–ନେତ୍ରୀମାନଙ୍କୁ ଛଦ୍ମ ନାମରେ ଯୋଗାଯୋଗ କରାଗଲା । ସୁଚେତା କୃପାଳିନୀଙ୍କ ଛଦ୍ମନାମ ଥିଲା ଦିଦି/ ବା / ବହନଜୀ । ଅରୁଣା ଆସଫ୍ ଅଲ୍ଲୀଙ୍କ ନାମ ଥିଲା କଦମ୍ । ବାବା ରାଘବ ଦାସଙ୍କ ନାମ ଥିଲା ଦାଦି । ରାମ ମନୋହର ଲୋହିଆଙ୍କ ଛଦ୍ମନାମ ଥିଲା ଡକ୍ଟର । ଅଚ୍ୟୁତ ପଟ୍ଟବର୍ଦ୍ଧନଙ୍କ ନାମ ଥିଲା – କୁସୁମ । ଓଡ଼ିଶାରେ ବିପ୍ଳବିନୀ ମାଳତୀ ଦେବୀ ଚୌଧୁରୀ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଗୌରେନ୍ଦ୍ର ଦାସ, ବାଙ୍କବିହାରୀ ଦାସ, ଗୌରୀଶ୍ୟାମ ନାୟକ, ବୈଷ୍ଣବଚରଣ ପଟ୍ଟନାୟକ, ନବଘନ ବେହେରା (ଛଦ୍ମନାମ ଆଦିକନ୍ଦ) ଆଦି ଆନ୍ଦୋଳନ ଚଳାଉ ଥିଲେ । ବାଲେଶ୍ୱର ଜିଲାର ଇରମଠାରେ (୨୮ ସେପ୍ଟେମ୍ବର, ୧୯୪୨) ୩୫ଜଣ ନିହତ ହେଲେ । ସେଥିରେ ପରି ବେଓ୍ବା ନାମରେ ମହିଳା ସହିଦ୍ ହୋଇଛନ୍ତି । ଆଉ ୧୦୭ ଜଣ ଆହତ ହେଲେ । ସୋନପୁରରେ ସହିଦ୍ ହେଲେ ଶ୍ରୀମତୀ ଗୁରୁବାରୀ ମେହେର । କୋରାପୁଟ ଜିଲାରେ ପୋଲିସ ନିର୍ଯାତନାରେ ସହିଦ୍ ହୋଇଥିଲେ ମେସକା ସାନୀ ଓ ସୁବର୍ଣ୍ଣା ଲହରା । ଲକ୍ଷ୍ମଣ ନାଏକ ଫାଶୀ ପାଇଲେ ଏହି ବିପ୍ଳବ ଆଧାରରେ ।

ଜାପାନର ଭାରତ ଆକ୍ରମଣ ଆଶଙ୍କା କରି ଫିରିଙ୍ଗି ସରକାର ଆଗରୁ ଇଂଲଣ୍ଡରୁ ସୈନ୍ୟବଳ ଆଣି ମୁତୟନ କରିଥିଲେ । ଏବେ ସେହିମାନଙ୍କୁ ଲଗାଇ ଦେଲେ ଆମ

ସଂଗ୍ରାମୀମାନଙ୍କୁ ଦମନ କରିବାରେ । ନିଜର ପାରଙ୍ଗମ ପଣିଆ ଦେଖାଇ ତତ୍‌କାଳୀନ ବଡ଼ଲାଟ୍ ଲର୍ଡ଼ ଲିନ୍‌ଲିଥଗୋ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲଙ୍କୁ ଦେଇଥିବା ରିପୋର୍ଟର କିୟତ୍ ଅଂଶ ନିମ୍ନରେ ପ୍ରଦତ୍ତ ।

I am engaged here in meeting by far the most serious rebellion since that of 1857, the gravity and extent of which we have so far concealed from the world for reasons of military security.

(HISTORY OF FREEDOM MOVEMENT IN INDIA AND NATIONAL INTEGRATION, by M.N.Das - page-103)

ଭାରତଛାଡ଼ ଆନ୍ଦୋଳନରେ ଅଗଷ୍ଟ ୦୯ରୁ ନଭେମ୍ବର ମଧ୍ୟରେ ସରକାରୀ ରିପୋର୍ଟ ଅନୁସାରେ ନିହତ ସଂଗ୍ରାମୀଙ୍କ ସଂଖ୍ୟା ଥିଲା ୯୪୦ । ପୋଲିସ ମାଡ଼ପିଟରେ କ୍ଷତାକ୍ତ ହୋଇଥିବା ଲୋକଙ୍କ ସଂଖ୍ୟା ଥିଲା ୧୬୩୦ । ଗିରଫ ହୋଇଥିଲେ ଷାଠିଏ ହଜାର ଲୋକ । ସେମାନଙ୍କ ମଧ୍ୟରୁ ଛବିଶ ହଜାର ଲୋକଙ୍କୁ ଦୋଷୀ ସାବ୍ୟସ୍ତ କରାଯାଇ ଦଣ୍ଡ ଦିଆଯାଇଥିଲା । ଭାରତରକ୍ଷା ଆଇନ ବଳରେ ଅଠର ହଜାର ଲୋକ ଦଣ୍ଡ ପାଇବାର କଥା ପଢ଼ିବାକୁ ମିଳେ ।

ଭାରତଛାଡ଼ ଆନ୍ଦୋଳନ ବା ଅଗଷ୍ଟ ବିପ୍ଳବକୁ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଶେଷ ପର୍ଯ୍ୟାୟ କୁହାଯାଏ । ଏହା ଫଳରେ ଭାରତ ସ୍ୱାଧୀନ ହେଲା । ସୁଦୂରପ୍ରସାରୀ ଏହାର ପ୍ରଭାବ । ଏହାର ସ୍ୱଳ୍ପ କାଳ (ପାଖାପାଖି ୧୨ବର୍ଷ) ମଧ୍ୟରେ ଏସିଆ ଓ ଆଫ୍ରିକାର ବହୁ ପରାଧୀନ ଦେଶ ସ୍ୱାଧୀନ ହେଲେ । ତା' ଛଡ଼ା, ଫ୍ରାନ୍ସ, ହଲାଣ୍ଡ, ବେଲଜିୟମ୍, ପର୍ତ୍ତୁଗାଲ ଭଳି ସାମ୍ରାଜ୍ୟବାଦୀ ରାଷ୍ଟ୍ରଗଣ ଆଉ ଉପନିବେଶ ସ୍ଥାପନ କରିବାର ଇଚ୍ଛା ପରିହାର କଲେ । ନିଜ ନିଜର ଶକ୍ତି ଉପରୁ ଆସ୍ଥା ହରାଇଲେ । ପରାଧୀନ ଦେଶଗୁଡ଼ିକ ସ୍ୱାଧୀନତା ପ୍ରାପ୍ତିର ତରିକା ଏଇ ଅଗଷ୍ଟ ବିପ୍ଳବରୁ ଶିକ୍ଷା କଲେ ।

**ସହାୟକ ପୁସ୍ତକ**

୧. କ୍ରାନ୍ତି ଗୀତିକା (୨୦୧୭) ଓଡ଼ିଶା ରାଜ୍ୟ ଅଭିଲେଖାଗାର, ଭୁବନେଶ୍ୱର

୨. ସତ୍ୟାଗ୍ରହୀ ଗାନ୍ଧିଜୀ (୨୦୧୨)
ଲେ. ସଚ୍ଚିଦାନନ୍ଦ ମିଶ୍ର

୩. History of Freedom Movement in India and National Integration (1986) By Prof. M.N. Das

ସେକ୍ଟର ୨/୪୨୬, ନୀଳାଦ୍ରି ବିହାର
ଭୁବନେଶ୍ୱର–୨୧










# ସ୍ୱପ୍ନ, ସଂକଳ୍ପ ଓ ବାସ୍ତବତା







ସ୍ୱପ୍ନ ରାଇଜରେ ଉଡ଼ିବା ପାଇଁ
ଡେଣା ଲଗାଇଥିବା ଛାତ୍ରବୃତ୍ତି

ଅନ୍ୱେଷା– ଅନୁସୂଚିତ ଜନଜାତି ଓ ଜାତିବର୍ଗର ଛାତ୍ରଛାତ୍ରୀମାନଙ୍କ ନିମନ୍ତେ ସହରାଞ୍ଚଳ ଶିକ୍ଷା କାର୍ଯ୍ୟକ୍ରମ

ରେଶମ ଚାଷଦ୍ୱାରା ଗରିବ ଆଦିବାସୀମାନଙ୍କ ସାମାଜିକ–ଅର୍ଥନୈତିକ ବିକାଶ

ଜନଜାତି ଅଧ୍ୟୁଷିତ ଅଗମ୍ୟ ଗ୍ରାମ ଏବଂ ଆଦିବାସୀ ଆବାସିକ ବିଦ୍ୟାଳୟ ନିମନ୍ତେ ସୌରଶକ୍ତି ଚାଳିତ ବିଦ୍ୟୁତ୍ ସଂଯୋଗୀକରଣ

ଜଙ୍ଗଲ ଅଧିକାର ଅଧିନିୟମ :
ଜନଜାତିଙ୍କ ପାରମ୍ପରିକ ଅଧିକାରର ପୁନରୁଦ୍ଧାର

# ସ୍ୱପ୍ନ ରାଇଜରେ ଉଡ଼ିବା ପାଇଁ ଡେଣା ଲଗାଇଥିବା ଛାତ୍ରବୃତ୍ତି

ଜନଜାତି ବହୁଳ ରାୟଗଡା ଜିଲ୍ଲାର କାଶୀପୁର ବ୍ଲକ୍ ଅନ୍ତର୍ଗତ ଉପରଝିରି ପରି ଅନାମଧେୟ ଗ୍ରାମରୁ ଆସିଥିବା କରମୁ ମାଝି ପକ୍ଷରେ ନିଜର ଉଚ୍ଚାଭିଳାଷ ପରିପୂରଣ କରିବା ସେତେଟା ସହଜ ନଥିଲା । କୃଷି ଶ୍ରମିକ ପିତା ଏବଂ ଗୃହିଣୀ ମାତାଙ୍କ ସନ୍ତାନ ହିସାବରେ ସେ ସ୍ଥାନୀୟ ସରକାରୀ ବିଦ୍ୟାଳୟରେ ନିଜର ପ୍ରାରମ୍ଭିକ ଶିକ୍ଷାଲାଭ କରିଥିଲେ । ତେବେ ୨.୫ ଲକ୍ଷ କିମ୍ବା ତା'ଠାରୁ କମ୍ ଟଙ୍କାର ବାର୍ଷିକ ପାରିବାରିକ ଆୟ ମଧ୍ୟରେ ଆସୁଥିବା ସମସ୍ତ ଅନୁସୂଚିତ ଜନଜାତି ଏବଂ ଜାତିବର୍ଗର ଛାତ୍ରଛାତ୍ରୀମାନଙ୍କୁ ରାଜ୍ୟ ସରକାରଙ୍କ ପକ୍ଷରୁ ଯୋଗାଇ ଦିଆଯାଉଥିବା ମାଟ୍ରିକ ପରବର୍ତ୍ତୀ ଛାତ୍ରବୃତ୍ତିର ସହାୟତା ସହ ସମସ୍ତ ବାଧାବିଘ୍ନକୁ ଅତିକ୍ରମ କରି ନିଜର ଦୃଢ ଆତ୍ମପ୍ରତ୍ୟୟ ବଳରେ ରଙ୍ଗତୂଳୀରେ ଚିତ୍ର ଆଙ୍କିବା ପାଇଁ ଥିବା ଇଚ୍ଛାର ସାକାର ନିମନ୍ତେ ସେ ଭୁବନେଶ୍ୱରସ୍ଥିତ ବି.କେ. ଚାରୁ ଓ କାରୁକଳା ମହାବିଦ୍ୟାଳୟରେ ନାମ ଲେଖାଇଥିଲେ । ବାସ୍ତବିକ ଏହା ତାଙ୍କ ଜୀବନଯାତ୍ରାରେ ଏକ ସକାରାତ୍ମକ ମୋଡ ଥିଲା । ନିଜ ମଧ୍ୟରେ ଅଙ୍କୁରିତ ହେଉଥିବା ବୃତ୍ତିଗତ କଳାକାର ହେବାର ଲୁକ୍କାୟିତ ପ୍ରତିଭା ଏବଂ ସ୍ୱପ୍ନର ଚରିତାର୍ଥ ନିମନ୍ତେ ଏଠାରେ ସେ ଏକ ଅପୂର୍ବ ସୁଯୋଗ ଲାଭ କରିଥିଲେ । ଏଥିନିମନ୍ତେ ସେ ନିଜର ଯଥାସାଧ୍ୟ ଉଦ୍ୟମ ବଳରେ ଅହମ୍ମଦାବାଦ୍‌ର ପ୍ରଖ୍ୟାତ ଜାତୀୟ ଡିଜାଇନିଂ ପ୍ରତିଷ୍ଠାନ ପାଇଁ ମନୋନୀତ ହୋଇଥିଲେ । ଏହା ଏକ ଉଚ୍ଛ୍ୱାସର ମୁହୂର୍ତ୍ତ ଥିଲା । କିନ୍ତୁ ନାମ ଲେଖା ସକାଶେ ୨.୫ଲକ୍ଷ ଟଙ୍କାର ଆବଶ୍ୟକତା ପୂରଣ କରିବା ଆହ୍ୱାନମୂଳକ ଥିଲା ଏବଂ ଅର୍ଥାଭାବ ପାଇଁ ନିଜ ସମ୍ମୁଖରେ ନିଜର ସ୍ୱପ୍ନ ଧୂଳିସାତ୍ ହୋଇଯାଉଥିଲା ।

ମାତ୍ର ୩ଦିନ ହାତରେ ଥିବା ଯୋଗୁଁ ଶେଷ ଆଶାଭାବେ ସେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟାଳୟକୁ ଯାଇ ନିଜର ଅଭାବ ଅସୁବିଧା ପରିପ୍ରକାଶ କରିଥିଲେ । ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରବର୍ତ୍ତିତ 'ଜାତୀୟ ପ୍ରତିଷ୍ଠାନଗୁଡିକରେ ଶିକ୍ଷାଲାଭ ପାଇଁ ଜନଜାତି ଛାତ୍ରମାନଙ୍କ ପାଇଁ ଥିବା ଆର୍ଥିକ ସହାୟତା' ଯୋଜନା ତାଙ୍କୁ ତୁରନ୍ତ ସହାୟତା ଦେବା ପାଇଁ ଆଗେଇ ଆସିଲା ଏବଂ ରାଜ୍ୟ ସରକାରଙ୍କ ଦ୍ୱାରା ଅଢେଇ ବର୍ଷ ପାଇଁ ସମ୍ପୂର୍ଣ୍ଣ ଆର୍ଥିକ ସହାୟତା ତାଙ୍କୁ ଯୋଗାଇ ଦିଆଗଲା । ଆଜି କଳା କ୍ଷେତ୍ରରେ ସେ ଜଣେ ଉଦୀୟମାନ ଗ୍ରାଫିକ୍ ଡିଜାଇନର ଭାବେ ନିଜର ସ୍ୱତନ୍ତ୍ର ପରିଚୟ ଛାଡି ଯିବା ପାଇଁ ସତତ ଉଦ୍ୟମରତ ।

ଅନଗ୍ରସର ଅନୁସୂଚିତ ଜାତି ଓ ଜନଜାତି ଛାତ୍ରଛାତ୍ରୀମାନଙ୍କ ନିମନ୍ତେ ସରକାରଙ୍କ ଦ୍ୱାରା ପ୍ରବର୍ତ୍ତିତ ଛାତ୍ରବୃତ୍ତି ଯୋଜନା ସେମାନଙ୍କର ଶିକ୍ଷା ଜାରି ରଖିବା ପାଇଁ ଏକ ଉତ୍ତମ ପ୍ରୟାସ ଏବଂ ଏହା ସେମାନଙ୍କର ଜୀବନ ଏବଂ ବୃତ୍ତି ସାକାର ନିମନ୍ତେ ଉଲ୍ଲେଖନୀୟ ଅବଦାନ ରଖୁଛି । ଅନୁସୂଚିତ ଜନଜାତି ଓ ଜାତି ବର୍ଗର ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଶିକ୍ଷାଗତ ଯୋଗ୍ୟତା ନିମନ୍ତେ ସେମାନଙ୍କୁ ପ୍ରୋତ୍ସାହିତ କରିବା ଲକ୍ଷ୍ୟରେ ରାଜ୍ୟ ସରକାର ପ୍ରତିବର୍ଷ ୧୫.୬୫ ଲକ୍ଷରୁ ଊର୍ଦ୍ଧ୍ୱ ଅନୁସୂଚିତ ଜନଜାତି ଓ ଜାତି ବର୍ଗର ଛାତ୍ରଛାତ୍ରୀମାନଙ୍କୁ ମାଟ୍ରିକ୍ ପୂର୍ବବର୍ତ୍ତୀ ଏବଂ ପ୍ରାୟ ୩.୯୦ ଲକ୍ଷ ଅନୁସୂଚିତ ଜନଜାତି ଓ ଜାତି ବର୍ଗର ଛାତ୍ରଛାତ୍ରୀମାନଙ୍କୁ

ମାଟ୍ରିକ ପରବର୍ତ୍ତୀ ଛାତ୍ରବୃତ୍ତି ଯୋଗାଇ ଦେଉଛନ୍ତି । ରାଜ୍ୟ ସରକାର ବିଭିନ୍ନ ଛାତ୍ରବୃତ୍ତି ଯୋଜନାରେ ବାର୍ଷିକ ହଜାର କୋଟିରୁ ଊର୍ଦ୍ଧ୍ୱ ଟଙ୍କା ଖର୍ଚ୍ଚ କରିଥାନ୍ତି, ତନ୍ମଧ୍ୟରୁ ପ୍ରାୟ ୫୦ ପ୍ରତିଶତ ଅର୍ଥ ରାଜ୍ୟ ସରକାରଙ୍କ ନିଜସ୍ୱ ସମ୍ବଳରୁ ବିନିଯୋଗ ହୋଇଥାଏ । ବିଗତ ୧୫ବର୍ଷ ମଧ୍ୟରେ ରାଜ୍ୟ ସରକାରଙ୍କ ଛାତ୍ରବୃତ୍ତି ଯୋଜନା ଆଖିଦୃଶିଆ ଅଭିବୃଦ୍ଧି ହାସଲ କରିଛି । ଏଥିରେ ମାଟ୍ରିକ୍ ପୂର୍ବବର୍ତ୍ତୀ ଛାତ୍ରବୃତ୍ତି ପାଉଥିବା ଛାତ୍ରଛାତ୍ରୀଙ୍କ ସଂଖ୍ୟା ଦ୍ୱିଗୁଣିତ ହୋଇଥିବା ବେଳେ ମାଟ୍ରିକ ପରବର୍ତ୍ତୀ ଛାତ୍ରବୃତ୍ତି ଲାଭ କରୁଥିବା ଛାତ୍ରଛାତ୍ରୀଙ୍କ ସଂଖ୍ୟା ୪ ଗୁଣା ବୃଦ୍ଧି ପାଇଛି। ମାଟ୍ରିକ ପୂର୍ବବର୍ତ୍ତୀ ଛାତ୍ରବୃତ୍ତି କ୍ଷେତ୍ରରେ ବ୍ୟୟ ୮ ଗୁଣା ବୃଦ୍ଧି ପାଇଛି । ଛାତ୍ରବୃତ୍ତି ପ୍ରଦାନରେ ୨୦୦୨–୨୦୦୩ରେ ୫୪.୮୮ କୋଟି ଟଙ୍କା ଥିବା ସ୍ଥଳେ ୨୦୧୬–୧୭ରେ ୫୪୪.୬୫ କୋଟି ଟଙ୍କାର ଛାତ୍ରବୃତ୍ତି ପ୍ରଦାନ କରାଯାଇଛି । ପୁନଶ୍ଚ ମାଟ୍ରିକ ପରବର୍ତ୍ତୀ ଛାତ୍ରବୃତ୍ତି ହିସାବରେ ୧୧.୪୮ କୋଟି ଟଙ୍କାରୁ ୪୫୫. ୭୧କୋଟି ଟଙ୍କାର ପ୍ରଭୁତ ଅର୍ଥରାଶି ବ୍ୟୟବୃଦ୍ଧି ଘଟିଛି, ଯାହା ୩୮୬୯ ପ୍ରତିଶତର ଅଭିବୃଦ୍ଧି । ଛାତ୍ରବୃତ୍ତି ଲାଭ କରୁଥିବା ଅନୁସୂଚିତ ଜନଜାତି ଓ ଜାତି ବର୍ଗର ଛାତ୍ରଛାତ୍ରୀଙ୍କ ବର୍ଦ୍ଧିତ ସଂଖ୍ୟା ଏହାର ପ୍ରମାଣ ଦିଏ ଯେ, ଶିକ୍ଷାଗତ ସୁବିଧାସୁଯୋଗ ଏବଂ ଆର୍ଥିକ ସହାୟତା ଲାଭ ପାଇଁ ଉକ୍ତ ବର୍ଗର ଛାତ୍ରଛାତ୍ରୀଙ୍କୁ ମିଳୁଥିବା ପରିବର୍ଦ୍ଧିତ ସୁବିଧା, ସମାଜର ଏହି ବଞ୍ଚିତ ଶ୍ରେଣୀର ଛାତ୍ରଛାତ୍ରୀଙ୍କ ଶିକ୍ଷାଗତ ସୁବିଧା ନିମନ୍ତେ ପାରସ୍ପରିକ ଭାବେ ଅନୁପୂରକ ଓ ପରିପୂରକ ହୋଇପାରିଛି ।

## ଅନ୍ୱେଷା– ଅନୁସୂଚିତ ଜନଜାତି ଓ ଜାତିବର୍ଗର ଛାତ୍ରଛାତ୍ରୀମାନଙ୍କ ନିମନ୍ତେ ସହରାଞ୍ଚଳ ଶିକ୍ଷା କାର୍ଯ୍ୟକ୍ରମ

ଏହା ସ୍ୱୀକାର୍ଯ୍ୟ ଯେ, ଜନଜାତି ବର୍ଗର ହୁଅନ୍ତୁ କିମ୍ବା ଅନ୍ୟ କୌଣସି ବର୍ଗଭୁକ୍ତ ହୁଅନ୍ତୁ ପଛକେ ପିତାମାତାଙ୍କ ନିମନ୍ତେ ସେମାନଙ୍କର ପିଲାମାନଙ୍କ ଶିକ୍ଷାଲାଭ ହେଉଛି ଅତୀବ ଗୁରୁତ୍ୱପୂର୍ଣ୍ଣ । ପ୍ରତ୍ୟେକ ପିତାମାତା ଚାହାଁନ୍ତି ଯେ, ସେମାନଙ୍କର ପିଲାମାନେ ସର୍ବୋତ୍ତମ ଶିକ୍ଷାଲାଭ କରନ୍ତୁ । ତେବେ ସାମାଜିକ ଅର୍ଥନୈତିକ ଦୁରାବସ୍ଥା ଏବଂ ଶିକ୍ଷା ଗ୍ରହଣ ନିମନ୍ତେ ଅଧିକ ଖର୍ଚ୍ଚ ହେଉଥିବା ଯୋଗୁଁ ଅନେକ ଅନୁସୂଚିତ ଜନଜାତି ଓ ଜାତିବର୍ଗର ପିତାମାତାମାନେ ସେମାନଙ୍କ ପିଲାମାନଙ୍କୁ ଭଲ ସ୍କୁଲରେ ଶିକ୍ଷା ଦେବା ଏକ ସୁଦୂର ପରାହତ ସ୍ୱପ୍ନ ଥିଲା ।

ଧନୀକ ପରିବାରର ପିଲାମାନେ ଗୁଣାତ୍ମକ ଶିକ୍ଷା ପାଇଲା ପରି ଅନୁସୂଚିତ ଜନଜାତି ଓ ଜାତିବର୍ଗର ଛାତ୍ରଛାତ୍ରୀମାନେ ମଧ୍ୟ ଗୁଣାତ୍ମକ ଶିକ୍ଷାଲାଭ କରିବାର ଅଧିକାର ଅଛି – ଏହି ବିଶ୍ୱାସ ସହ ଅନୁସୂଚିତ ଜନଜାତି ଓ ଜାତି ବର୍ଗର ଛାତ୍ରଛାତ୍ରୀମାନଙ୍କୁ ଘରୋଇ ଶିକ୍ଷାନୁଷ୍ଠାନ ସହ ଭାଗିଦାରୀ ସୂତ୍ରରେ ଗୁଣାତ୍ମକ ଶିକ୍ଷା ପ୍ରଦାନ ନିମନ୍ତେ ୨୦୧୫–୧୬ରେ ରାଜ୍ୟ ସରକାର ଏକ ଅଭିନବ କାର୍ଯ୍ୟକ୍ରମ 'ଅନ୍ୱେଷା' ପ୍ରବର୍ତ୍ତନ କରିଛନ୍ତି । ଏହି କାର୍ଯ୍ୟକ୍ରମ ଅଧୀନରେ ପ୍ରତିବର୍ଷ ଆର୍ଥିକ ସ୍ୱଚ୍ଛଳତା ନଥିବା ୫ ହଜାର ଅନୁସୂଚିତ ଜନଜାତି ଓ ଜାତିବର୍ଗର ପିଲାମାନଙ୍କୁ ଖ୍ୟାତିସମ୍ପନ୍ନ ଘରୋଇ ବିଦ୍ୟାଳୟଗୁଡିକରେ ପ୍ରଥମ ଶ୍ରେଣୀରେ ନାମଲେଖା ଯାଇଛି ଏବଂ ସେମାନଙ୍କୁ ଦ୍ୱାଦଶ ଶ୍ରେଣୀ ଶେଷ ପର୍ଯ୍ୟନ୍ତ ଶିକ୍ଷାଦାନ କରାଯିବ । ଟ୍ୟୁସନ୍ ଫି', ସ୍କୁଲ ପୋଷାକ, ବହିପତ୍ର, ପାଠ୍ୟୋପକରଣ, ବିଦ୍ୟାଳୟକୁ ଯାତାୟାତ ଖର୍ଚ୍ଚ ଏବଂ ବିଦ୍ୟାଳୟ ପରବର୍ତ୍ତୀ କୋଚିଂ ସମେତ ଶିକ୍ଷାଦାନର ସମସ୍ତ ଖର୍ଚ୍ଚ ରାଜ୍ୟ ସରକାର ବହନ କରିଥାନ୍ତି । ସେମାନଙ୍କ ପାଇଁ ମାଗଣା ରହଣି ଓ ଖାଦ୍ୟପେୟର ବ୍ୟବସ୍ଥା ମଧ୍ୟ କରାଯାଇଛି । ରାଜ୍ୟର ୧୭ଗୋଟି ଆଦିବାସୀ ଅଧ୍ୟୁଷିତ ଜିଲ୍ଲାରେ ବର୍ତ୍ତମାନ କାର୍ଯ୍ୟକ୍ଷମ ଥିବା ଏହି ଯୋଜନାରେ ଆସନ୍ତା କିଛିବର୍ଷ ମଧ୍ୟରେ ୨୫ ହଜାର ଅନୁସୂଚିତ ଜନଜାତି ଓ ଜାତି ବର୍ଗର ଛାତ୍ରଛାତ୍ରୀଙ୍କୁ ସାମିଲ କରିବାର ଲକ୍ଷ୍ୟ ରଖାଯାଇଛି । ଏହି 'ଅନ୍ୱେଷା' ଯୋଜନା ଅଧୀନରେ ୨୦୧୫–୧୬ଠାରୁ ଏଯାବତ୍ ୧୩୪୩୭ ଜଣ ଅନୁସୂଚିତ ଜନଜାତି ଓ ଜାତିବର୍ଗର ଛାତ୍ରଛାତ୍ରୀ ୧୪୨ଗୋଟି ପବ୍ଲିକ୍ ସ୍କୁଲ୍‌ରେ ନାମ ଲେଖାଇଛନ୍ତି ।

ଏହି ସ୍ୱଳ୍ପ ସମୟର ଅବଧି ମଧ୍ୟରେ ପିଲାମାନେ ନୂତନ ପରିବେଶ ସହ ନିଜକୁ ଭଲ ଭାବରେ ଖାପଖୁଆଇ ନେଇଛନ୍ତି ଏବଂ ସେମାନଙ୍କର ସାଥୀମାନଙ୍କ ସହିତ ଆନନ୍ଦ ଏବଂ ଆତ୍ମପ୍ରତ୍ୟୟ ମଧ୍ୟରେ ଶିକ୍ଷାଲାଭ କରୁଛନ୍ତି ।

ଏହି ପଦକ୍ଷେପ, ସର୍ବୋତ୍ତମ ସ୍କୁଲଗୁଡିକରେ ଅଧ୍ୟୟନରତ ଅନ୍ୟ ପିଲାମାନଙ୍କ ପରି ଅନୁସୂଚିତ ଜନଜାତି ଓ ଜାତି ବର୍ଗର ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷାଲାଭ ସୁଯୋଗ ପ୍ରଦାନ କରିବା, ସେମାନଙ୍କୁ ପ୍ରତିଯୋଗିତାରେ ଭାଗ ନେବାକୁ ତଥା ଉତ୍କର୍ଷ ହାସଲ ନିମନ୍ତେ ସକ୍ଷମ କରିବା ଏବଂ ସେମାନଙ୍କର ଅନ୍ତର୍ନିହିତ ପ୍ରତିଭାର ବିକାଶ କରି ସେମାନଙ୍କ ଭବିଷ୍ୟତ ଜୀବନକୁ ନିଶ୍ଚିତଭାବେ ସମୃଦ୍ଧ କରିବା ନିମନ୍ତେ, ଏକ ଅପୂର୍ବ ସୁଯୋଗ ପ୍ରଦାନ କରିଥାଏ । ଏହି 'ଅନ୍ୱେଷା' ଯୋଜନାର ସଫଳ ରୂପାୟନ ଦିଗରେ ମାନ୍ୟବର ମୁଖ୍ୟମନ୍ତ୍ରୀ ନିୟମିତଭାବେ ସମୀକ୍ଷା କରିଥାନ୍ତି ।

# ରେଶମ ଚାଷଦ୍ୱାରା ଗରିବ ଆଦିବାସୀମାନଙ୍କ ସାମାଜିକ-ଅର୍ଥନୈତିକ ବିକାଶ

ଜଙ୍ଗଲ ଏବଂ ପ୍ରାଣୀ ସମ୍ପଦର ପ୍ରାଚୁର୍ଯ୍ୟ ମଧ୍ୟରେ ଓଡ଼ିଶା ସମୃଦ୍ଧ । ଏଠାରେ ରେଶମ ଚାଷର ବ୍ୟବସାୟୀକରଣ ନିମନ୍ତେ ବ୍ୟାପକ ସୁବିଧାସୁଯୋଗ ରହିଛି । ରେଶମ ଚାଷ ହେଉଛି ଗରିବ ଆଦିମ ଅଧିବାସୀଙ୍କର ଆର୍ଥିକ ଉତ୍ଥାନ ନିମନ୍ତେ ନିଯୁକ୍ତି ସୁବିଧା ସୁଯୋଗ ସୃଷ୍ଟି ପୂର୍ବକ ଏକ ସ୍ୱତନ୍ତ୍ର ସାମର୍ଥ୍ୟ ଥିବା ଗୁରୁତ୍ୱପୂର୍ଣ୍ଣ କୃଷିଭିତ୍ତିକ କୁଟୀର ଶିଳ୍ପ । ରେଶମ ଚାଷରେ ପୁଞ୍ଜି ବିନିଯୋଗ ଖୁବ୍ କମ୍, ଏହା ସ୍ୱଳ୍ପ ସମୟର ଅବଧି ମଧ୍ୟରେ ଅମଳକ୍ଷମ ତଥା ଏକ ଲାଭଜନକ ଚାଷ ଅଟେ । ରେଶମ ଚାଷର ୬ ମାସ ମଧ୍ୟରେ ଏହାର ଅମଳ କରାଯାଇଥାଏ । ଏପରିକି ଉକ୍ତ କୃଷିଭିତ୍ତିକ ଜଳବାୟୁ ଅବସ୍ଥା ଏବଂ ପ୍ରାକୃତିକ ସମ୍ପଦ ଟସର ପୋକ ପାଳନ ନିମନ୍ତେ ଅନୁକୂଳ ଅଟେ ।

ଉତ୍ପାଦନ ନିମନ୍ତେ ବିସ୍ତୃତ ଜମି, ଆବଶ୍ୟକୀୟ କୌଶଳ ପ୍ରୟୋଗ, ଜମି ଏବଂ ଶ୍ରମ, ରେଶମ ପୋକ ବ୍ରିଡ୍/ହାଇବ୍ରିଡ୍, ପ୍ରତିଷ୍ଠିତ ଭିତ୍ତିଭୂମି, ସ୍ୱଳ୍ପ ନିବେଶ, ସ୍ୱଳ୍ପ ଅବଧିଭିତ୍ତିକ, ଅଧିକ ଲାଭଜନକ, ସହଜ ପ୍ରୟୋଗୀକୃତ ଜ୍ଞାନକୌଶଳ ଏବଂ ଅତ୍ୟଧିକ ଘରୋଇ ଚାହିଦା – ଏସବୁ ଆଇଟିଡିଏ ଅଧୀନରେ ଥିବା ନିର୍ଦ୍ଦିଷ୍ଟ ଅଞ୍ଚଳ ପାଇଁ ସ୍ୱତନ୍ତ୍ର ଧ୍ୟାନ ଦେଇ ବିକାଶ କାର୍ଯ୍ୟକ୍ରମର କେତେକ ଗୁରୁତ୍ୱପୂର୍ଣ୍ଣ ଦିଗ ।

ଏଫ୍ଏଡିପି କାର୍ଯ୍ୟକ୍ରମ ଅଧୀନରେ କେନ୍ଦୁଝର, ବଣାଇଁ ଆଇଟିଡିଏ ଅନ୍ତର୍ଗତ ଆଦିମ ଅଧିବାସୀ ହିତାଧିକାରୀଙ୍କ ଆର୍ଥିକ ଉନ୍ନତି ନିମନ୍ତେ ଅସନ ଏବଂ ଅର୍ଜୁନରେ ଟସର ପୋକ ପାଳନ ପ୍ରୋତ୍ସାହିତ ହୋଇଆସୁଛି ।

ପ୍ରାଥମିକ ଟସର ପାଳନ ସମବାୟ ସମିତି ମାଧ୍ୟମରେ ରେଶମ ଚାଷୀମାନଙ୍କୁ ରେଶମ ପୋକ ଅଣ୍ଡା, ଖୋସା ଏବଂ ରେଶମ ପୋକ ପାଳନ ପାଇଁ ଋଣ ସହିତ ଅନ୍ୟାନ୍ୟ ସୁବିଧା ଯୋଗାଇ ଦିଆଯାଇଥାଏ । ସମ୍ପୃକ୍ତ ବିଭାଗର ବୈଷୟିକ କର୍ମଚାରୀମାନଙ୍କ ଦ୍ୱାରା ରେଶମ ପୋକ ପାଳନ ଓ ବିପଣନ ସୁବିଧା ସମ୍ବନ୍ଧରେ ବୈଷୟିକ ଦିଗ୍‌ଦର୍ଶନ ମଧ୍ୟ ଯୋଗାଇ ଦିଆଯାଏ । ଆଇଟିଡିଏ ସହାୟତାରେ ୧୧୧୨ ଆଦିବାସୀ ହିତାଧିକାରୀମାନଙ୍କଦ୍ୱାରା ବାର୍ଷିକ ୫କୋଟି ଖୋସା ଅମଳ କରାଯାଏ । ରେଶମ ଚାଷରୁ ବାର୍ଷିକ ୫୦ ହଜାର ଖୋସା ଅମଳ କରୁଥିବା ପ୍ରତ୍ୟେକ ହିତାଧିକାରୀଙ୍କ ହାରାହାରି ବାର୍ଷିକ ଆୟ ୨୦ ହଜାର ଟଙ୍କା ହେଉଥିବା ଆକଳନ କରାଯାଇଛି । ଗୁରୁତ୍ୱପୂର୍ଣ୍ଣ ଉପକରଣ ଯୋଗାଣ, ଆର୍ଥିକ ଦୁର୍ବଳ ଶ୍ରେଣୀର ଆଦିବାସୀଙ୍କ ସାମର୍ଥ୍ୟ ବୃଦ୍ଧି, ଉନ୍ନତ ଜ୍ଞାନକୌଶଳର ପ୍ରୟୋଗ ଏବଂ ବଜାରର ମୁଖ୍ୟଧାରାକୁ ପ୍ରବେଶ ମାଧ୍ୟମରେ ରେଶମ ଚାଷ କ୍ଷେତ୍ରରେ ଏଫ୍ଏଡିପି କାର୍ଯ୍ୟକ୍ରମ ଦ୍ରୁତ ବିକାଶକୁ





ସମ୍ଭବ କରିପାରିଛି । ରେଶମ ଚାଷକୁ ଏକ ଅତିରିକ୍ତ ବୃତ୍ତିଭାବେ ଗ୍ରହଣ କରି ଆଦିବାସୀମାନେ ଅଧିକ ଆୟ ସହ ଲାଭାନ୍ୱିତ ହୋଇପାରିଛନ୍ତି । ଏହି ବୃତ୍ତି କିଛି ଆଦିବାସୀ ପରିବାରମାନଙ୍କ ମଧ୍ୟରେ ସଞ୍ଚୟ ଅଭ୍ୟାସ, କ୍ଷୁଦ୍ର ଉଦ୍ୟୋଗ ପ୍ରତିଷ୍ଠା, ଜୀବନଶୈଳୀରେ ବିକାଶ ଆଦିକୁ ସୁନିଶ୍ଚିତ କରିପାରିଛି ।ରେଶମ ଚାଷ ସରଳ ଆଦିବାସୀମାନଙ୍କ ଜୀବନକୁ ଖାପଖୁଆଇ ପାରିଛି ଏବଂ ଏଥିପାଇଁ ଖର୍ଚ୍ଚ ଓ କୌଶଳର ଆବଶ୍ୟକତା ପ୍ରାୟ ନାହିଁ ।

ରେଶମ ଚାଷ ମହିଳାମାନଙ୍କ ପାଇଁ ଏକ ପ୍ରକୃଷ୍ଟ ପନ୍ଥା, କାରଣ ଏହିସବୁ କାର୍ଯ୍ୟକ୍ରମ ସେମାନଙ୍କ ବାସସ୍ଥାନର ଖୁବ୍ ନିକଟରେ କରାଯାଇପାରିବ । ଯେତେବେଳେ କି ଆଖପାଖରେ କୌଣସି କାର୍ଯ୍ୟ ମିଳେ ନାହିଁ, ସେତେବେଳେ ଟସର ପୋକ ପାଳନ ମହିଳାମାନଙ୍କର ଏକ ସ୍ଥିର ଆୟର ଉତ୍ସ ହୋଇଥାଏ । ଏହିଭଳି ଅଣକୃଷି ଋତୁରେ ମହିଳାମାନେ ରେଶମ ଚାଷ ମାଧ୍ୟମରେ ନିଜ ପରିବାରର ଗୁଜୁରାଣ ମେଣ୍ଟାଇବା ସଙ୍ଗେ ସଙ୍ଗେ ନିଜ ପିଲାମାନଙ୍କର ଶିକ୍ଷା ଜାରି ରଖନ୍ତି ଏବଂ ଏହା ସ୍ୱ ରୋଜଗାର କ୍ଷେତ୍ରରେ ଆଦିବାସୀ ମହିଳାମାନଙ୍କର ଆତ୍ମବିଶ୍ୱାସ ବୃଦ୍ଧି କରିବାରେ ସହାୟକ ହୋଇଥାଏ ।

# ଜନଜାତି ଅଧ୍ୟୁଷିତ ଅଗମ୍ୟ ଗ୍ରାମ ଏବଂ ଆଦିବାସୀ ଆବାସିକ ବିଦ୍ୟାଳୟ ନିମନ୍ତେ ସୌରଶକ୍ତି ଚାଳିତ ବିଦ୍ୟୁତ୍ ସଂଯୋଗୀକରଣ

ରାଜ୍ୟରେ ଆଦିବାସୀ ଜନଜାତି ଅଧ୍ୟୁଷିତ ଅଗମ୍ୟ ଅଞ୍ଚଳରେ ନିରବଚ୍ଛିନ୍ନ ବିଦ୍ୟୁତ୍ ଯୋଗାଣ ଏକ ପ୍ରମୁଖ ସମସ୍ୟା । ଜନଜାତିମାନଙ୍କର ସାମଗ୍ରିକ ଉନ୍ନତି ଓ ଗ୍ରାମାଞ୍ଚଳ ଭିତ୍ତିଭୂମି ବିକାଶ ଦିଗରେ ବିଦ୍ୟୁତ୍ ସଂଯୋଗୀକରଣ ପ୍ରାଥମିକ ଆବଶ୍ୟକତା । ଅଧିକାଂଶ ଆଦିବାସୀବହୁଳ ଗ୍ରାମଗୁଡ଼ିକରେ ବିଜୁଳି ସଂଯୋଗ ଥାଇ ମଧ୍ୟ ନଥିଲା ଭଳି ପରିସ୍ଥିତି ଉପୁଜୁ ଥିଲା । ଶିକ୍ଷା କ୍ଷେତ୍ରରେ ଜନଜାତି ବର୍ଗଙ୍କ ଉନ୍ନତି ସାଧନ ନିମନ୍ତେ ରାଜ୍ୟ ସରକାର ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ବିଭାଗ ଜରିଆରେ ରାଜ୍ୟରେ ଆବାସିକ ବିଦ୍ୟାଳୟମାନ ସ୍ଥାପନ କରିଛନ୍ତି । ତନ୍ମଧ୍ୟରୁ ଅନେକ ଆବାସିକ ବିଦ୍ୟାଳୟ ଦୁର୍ଗମ ଆଦିବାସୀ ଉପାନ୍ତ ଅଞ୍ଚଳରେ ଥିବା ହେତୁ ସେଠାରେ ବିଦ୍ୟୁତ୍ ସଂଯୋଗ ଅସମ୍ଭବ ଅବା ବାରମ୍ବାର ବ୍ୟାଘାତ ଘଟୁଥିବାରୁ ଛାତ୍ରଛାତ୍ରୀମାନଙ୍କ ଶିକ୍ଷା ବାଧାପ୍ରାପ୍ତ ହେଉଛି ।

ଅନୁସୂଚିତ ଜନଜାତି/ଜାତି ବର୍ଗଙ୍କ ଜୀବନଶୈଳୀ ମାନରେ ପରିବର୍ତ୍ତନ ଆଣିବା ଦିଗରେ ରାଜ୍ୟ ସରକାର ସୌରଶକ୍ତି ଚାଳିତ ବିଦ୍ୟୁତିକରଣ ଯୋଜନା ମାଧ୍ୟମରେ ଦୁର୍ଗମ ଉପାନ୍ତ ଆଦିବାସୀ ଗ୍ରାମାଞ୍ଚଳ ଓ ଆଦିବାସୀ ଛାତ୍ରାବାସଗୁଡ଼ିକରେ ବିଦ୍ୟୁତ୍ ସଂଯୋଗ ଯୋଗାଇ ଦେଇଛନ୍ତି । ଗ୍ରାମ୍ୟ ପ୍ରଯୁକ୍ତିବିଦ୍ୟାର ଆଧୁନିକୀକରଣ, ଶିକ୍ଷାର ଗୁଣାତ୍ମକମାନ ବୃଦ୍ଧି, ନିଯୁକ୍ତି ସୁଯୋଗ ସୃଷ୍ଟି ଏବଂ ଆଦିବାସୀମାନଙ୍କ ଜୀବନଧାରଣ ମାନରେ ଆଖିଦୃଶିଆ ଉନ୍ନତି ଆଣିବା ନିମନ୍ତେ ରାଜ୍ୟ ସରକାରଙ୍କ ଆଭିମୁଖ୍ୟ ରହିଆସିଛି । ଅଗମ୍ୟ ଅଞ୍ଚଳସ୍ଥିତ ଆଦିବାସୀ ଜନବସତିଗୁଡ଼ିକରେ ଅଣ ପାରମ୍ପରିକ ଶକ୍ତି ଉତ୍ସ ଜରିଆରେ ଗ୍ରୀଡ୍ ସଂଯୋଗୀକରଣ ସମ୍ଭବ ହୋଇପାରୁନଥିବା ସ୍ଥଳେ ସୌରଶକ୍ତିଚାଳିତ ଅକ୍ଷୟ ଶକ୍ତି ପ୍ରୟୋଗର ପର୍ଯ୍ୟାପ୍ତ ସୁଯୋଗ ରହିଛି । ଅକ୍ଷୟ ସୌରଶକ୍ତି ଆଦିବାସୀ ସମ୍ପ୍ରଦାୟର ଧାର୍ମିକ ଭାବନାକୁ ସୁହାଇଲା ଭଳି ତଥା ପ୍ରଦୂଷଣମୁକ୍ତ ରହିଥିବା ସହିତ ପ୍ରକୃତିର ଭାରସାମ୍ୟ ରକ୍ଷା କରିଥାଏ ।

୫୦୦ ଆବାସିକ ବିଦ୍ୟାଳୟ ଏବଂ ୨୫୦ ଆଦିବାସୀ ଗ୍ରାମାଞ୍ଚଳଗୁଡ଼ିକରେ ଆଗାମୀ ୪ ବର୍ଷ ମଧ୍ୟରେ ରାଜ୍ୟ ସରକାର ସୌରଶକ୍ତି ଚାଳିତ ବିଦ୍ୟୁତ୍ ସଂଯୋଗୀକରଣ କାର୍ଯ୍ୟକ୍ରମର ଲକ୍ଷ୍ୟ ରଖିଛନ୍ତି । ରାଜ୍ୟ ସରକାରଙ୍କ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ବିଭାଗ ଅଧୀନରେ ଓଡ଼ିଶା ଅକ୍ଷୟ ଶକ୍ତି ବିକାଶ ସଂସ୍ଥା (ଓରେଡ଼ା), ରାଜ୍ୟ ନୋଡ଼ାଲ୍ ସଂସ୍ଥା ମାଧ୍ୟମରେ ଏହି କାର୍ଯ୍ୟକ୍ରମ ପ୍ରଣୟନ କରାଯାଉଛି । ଏ ପର୍ଯ୍ୟନ୍ତ ୨୧୦ ଆବାସିକ ବିଦ୍ୟାଳୟରେ ସୌରଶକ୍ତିଚାଳିତ ବିଦ୍ୟୁତିକରଣ ଜରିଆରେ ଆଦିବାସୀ ଛାତ୍ରଛାତ୍ରୀମାନଙ୍କ ଶିକ୍ଷାର ଗୁଣାତ୍ମକ ପରିବର୍ତ୍ତନ ପରିଲକ୍ଷିତ ହୋଇଛି ।

# ଜଙ୍ଗଲ ଅଧିକାର ଅଧିନିୟମ : ଜନଜାତିଙ୍କ ପାରମ୍ପରିକ ଅଧିକାରର ପୁନରୁଦ୍ଧାର

ଅନୁସୂଚିତ ଜନଜାତି ବର୍ଗର ଲୋକମାନେ ଜଙ୍ଗଲ ବିନା ବଞ୍ଚିପାରିବେ ନାହିଁ । ସେମାନେ ଜଙ୍ଗଲ ମଧ୍ୟରେ ବାସ କରନ୍ତି । ସେମାନଙ୍କ ଜୀବିକା ନିର୍ବାହ ନିମନ୍ତେ ଜଙ୍ଗଲରୁ ଖାଦ୍ୟ, ଆଶ୍ରୟ ଏବଂ ସେମାନଙ୍କ ଆର୍ଥିକ ସ୍ଥିତିରେ ଉନ୍ନତି ନିମନ୍ତେ ଜଙ୍ଗଲ ଉପରେ ମୁଖ୍ୟତଃ ସେମାନେ ନିର୍ଭର କରିଥାନ୍ତି । ସେମାନେ ଜଙ୍ଗଲରୁ ଲଘୁ ବନଜାତ ଦ୍ରବ୍ୟ ସହିତ ଜାଳେଣି ସାମଗ୍ରୀ ସଂଗ୍ରହ କରି ଆର୍ଥିକ ସ୍ୱଚ୍ଛଳତା ଲାଭ କରିଥାନ୍ତି । ଜଙ୍ଗଲ ବିସ୍ତୀର୍ଣ୍ଣ ଉର୍ବର ଜମି ସେମାନଙ୍କୁ କୃଷି କାର୍ଯ୍ୟରେ ସହାୟତା ଯୋଗାଇବା ସହ ସେଥିରୁ ମଧ୍ୟ ସେମାନେ ଜୀବିକା ନିର୍ବାହ କରିଥାନ୍ତି । ଅନ୍ୟ ପକ୍ଷରେ ଏହି ଜଙ୍ଗଲ ଜମି କେତେକ ଆଦିବାସୀ ଲୋକଙ୍କ ନାମରେ ରେକର୍ଡ଼ଭୁକ୍ତ ହୋଇପାରିନଥିବା ହେତୁ ସେମାନେ ଜଙ୍ଗଲ ଅଞ୍ଚଳରେ ଚାଷ କାମ କରିବାରୁ ବଞ୍ଚିତ ଥିଲେ । ସେମାନଙ୍କୁ ଜଙ୍ଗଲ ମଧ୍ୟରେ ବସବାସ ପାଇଁ ଅନୁମତି ମଧ୍ୟ ମିଳିନଥିଲା । କେତେକ ବନବାସୀ ସମ୍ପ୍ରଦାୟ ଓ ସାଧାରଣ ବର୍ଗଙ୍କ ହସ୍ତକ୍ଷେପ ଫଳରେ ଏବଂ ସୁପ୍ରିମ କୋର୍ଟଙ୍କ ନିର୍ଦ୍ଦେଶ ଅନୁଯାୟୀ ଏହି ଆଦିବାସୀ ଜନଜାତିମାନେ ସେମାନଙ୍କ ଅଧିକାର ପୁନର୍ବାର ଫେରିପାଇଛନ୍ତି । ଓଡ଼ିଶା ଦେଶର ପ୍ରଥମ ରାଜ୍ୟ ଭାବେ ଏହି ଅଧିନିୟମ ବଳରେ ଅଗମ୍ୟ ଅଞ୍ଚଳରେ ବସବାସ କରୁଥିବା ଜନଜାତି ଲୋକମାନେ ଯେପରି ଏହାର ପ୍ରକାର ଏବଂ ପରିସର ନିର୍ଣ୍ଣୟ କରିବା ପାଇଁ ଦାବୀ କରି ପରବର୍ତ୍ତୀ କାର୍ଯ୍ୟାନୁଷ୍ଠାନ ପାଇଁ ଯାଇପାରିବେ ସେଥିପାଇଁ ପଲ୍ଲୀସଭାକୁ ଗ୍ରାମସଭାର ମାନ୍ୟତା ପ୍ରଦାନ କରିଛି । ଗ୍ରାମ ମଧ୍ୟରେ ଜଙ୍ଗଲ ଅଧିକାର କମିଟି ଗଠନ କରାଯିବା ସହ କ୍ଷୁଦ୍ର ବସତିଗୁଡ଼ିକୁ ଜଙ୍ଗଲ ଗ୍ରାମ ମଧ୍ୟରେ ଅନ୍ତର୍ଭୁକ୍ତ କରାଯାଇଛି । ଜଙ୍ଗଲ ମଧ୍ୟରେ ଅବସ୍ଥିତ ସର୍ବେକ୍ଷଣ ହୋଇନଥିବା ବସତିଗୁଡ଼ିକୁ ଚିହ୍ନଟ କରାଯାଇ ଜଙ୍ଗଲ ଅଧିକାର କମିଟି ମାଧ୍ୟମରେ ସେମାନଙ୍କର ଦାବୀକୁ ଗ୍ରହଣ କରାଯିବା ସହ ପରବର୍ତ୍ତୀ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଛି । ଏସବୁରେ ଫଳପ୍ରଦ ଏବଂ ଦକ୍ଷତାପୂର୍ଣ୍ଣ ଚିହ୍ନଟ ପ୍ରକ୍ରିୟା, ପ୍ରତିପାଦନ, ଆବଣ୍ଟନ, ହିତାଧିକାରୀ ଏବଂ ଜମିର ପ୍ରତିବିଧାନ ପାଇଁ ପାଣ୍ଠି ବ୍ୟବସ୍ଥିତ ହୋଇଛି ।

ସାମାଜିକ ନିରାପତ୍ତା ଏବଂ ଲାଇନ୍ ବିଭାଗ ଅନ୍ତର୍ଗତ ଜୀବିକା ନିର୍ବାହଭିତ୍ତିକ ଯୋଜନା ଯଥା ପଞ୍ଚାୟତିରାଜ, କୃଷି ଏବଂ କୃଷକ ସଶକ୍ତିକରଣ, ମତ୍ସ୍ୟ ଓ ପ୍ରାଣୀ ସଂପଦ ବିକାଶ, ଜଙ୍ଗଲ ଓ ପରିବେଶ ଆଦି ବିଭାଗର ମିଳିତ ସହଯୋଗରେ ଜଙ୍ଗଲ ଅଧିକାର ଅଧିନିୟମ ଅନ୍ତର୍ଗତ ଆବଣ୍ଟନ ହୋଇଥିବା ଜମିଗୁଡ଼ିକୁ ଅଧିକ ଉତ୍ପାଦନକ୍ଷମ କରିବା ସହ ସତ୍ତ୍ୱାଧିକାରୀମାନଙ୍କ ଆୟ ବୃଦ୍ଧିରେ ସହାୟକ ହୋଇଛି ।

ଦଳଗତ ପ୍ରଚେଷ୍ଟା, ସ୍ୱଚ୍ଛତା ଓ ପ୍ରଯୁକ୍ତିବିଦ୍ୟା : ରାଜ୍ୟ ସରକାରଙ୍କ ଏହି ତିନିଗୋଟି ମନ୍ତ୍ର ବଳରେ ରାଜ୍ୟରେ ୪.୦୬ ଲକ୍ଷ ସତ୍ତ୍ୱାଧିକାରୀଙ୍କୁ ୬.୦୯ ଲକ୍ଷ ଏକର ଜମି ବଣ୍ଟନ କରାଯାଇଛି ଏବଂ ୫୯୫୨ ଗୋଷ୍ଠୀ ସତ୍ତ୍ୱାଧିକାରୀଙ୍କୁ ୩.୨୭ ଲକ୍ଷ ଏକର ଜମି ଅନୁସୂଚିତ ଜନଜାତି ଏବଂ ଅନ୍ୟାନ୍ୟ ପାରମ୍ପରିକ ଜଙ୍ଗଲ ଅଧିବାସୀ (ଜଙ୍ଗଲ ଅଧିକାର) ଅଧିନିୟମ-୨୦୦୬ ଅନ୍ତର୍ଗତ ୨.୩୩ ଲକ୍ଷରୁ ଅଧିକ ବ୍ୟକ୍ତିଗତ ସତ୍ତ୍ୱାଧିକାରୀମାନଙ୍କୁ ସାମାଜିକ ନିରାପତ୍ତା ଏବଂ ଜୀବିକା ନିର୍ବାହଭିତ୍ତିକ ଲାଇନ୍ ବିଭାଗ ଅନ୍ତର୍ଗତ ଯୋଜନାରେ ଗୃହ ନିର୍ମାଣ, ଭୂ-ଉନ୍ନୟନ, ଉଦ୍ୟାନ କୃଷି ଇତ୍ୟାଦି ଜରିଆରେ ହିତାଧିକାରୀ ଉପକୃତ ହୋଇପାରିଛନ୍ତି । ଅନ୍ୟୂନ ୧୮,୪୦୭ (ପି.ଭି.ଟି.ଜି.) ସତ୍ତ୍ୱାଧିକାରୀମାନଙ୍କୁ ୩୧,୨୩୨ ଏକର ଜଙ୍ଗଲ ଜମି ବ୍ୟକ୍ତିଗତ ସତ୍ତ୍ୱାଧିକାର ବର୍ଗରେ ପ୍ରଦାନ କରାଯାଇଛି । ଦେଶରେ ଜାତୀୟ ଜମି ବଣ୍ଟନ ହାର ଦୁଇ ପଞ୍ଚମାଂଶ ରହିଥିବାବେଳେ ଜଙ୍ଗଲ ଅଧିକାର ଅଧିନିୟମ ଜରିଆରେ ଓଡ଼ିଶା ଭାରତର ଅଗ୍ରଣୀ ରାଜ୍ୟ ଭାବେ ଦୁଇ ତୃତୀୟାଂଶ ଦାବୀଦାରଙ୍କୁ ଜମି ସତ୍ତ୍ୱାଧିକାର ପ୍ରଦାନ କରିବାରେ ସକ୍ଷମ ହୋଇଛି ।



# ଜଳସମ୍ପଦ ବିଭାଗ

ରାଜ୍ୟ ସରକାର କୃଷି ଓ କୃଷକର ସର୍ବାଙ୍ଗୀନ ଉନ୍ନତି ପାଇଁ ଜଳସେଚନର ବିକାଶକୁ ପ୍ରାଥମିକତା ଦେଇଆସୁଛନ୍ତି । ବୃହତ୍ ଓ ମଧ୍ୟମ ଜଳସେଚନ ପ୍ରକଳ୍ପଗୁଡ଼ିକୁ ସମ୍ପୂର୍ଣ୍ଣ କରିବା ସହିତ କମ୍ ସମୟ ଅବଧି ଭିତରେ ଅଧିକରୁ ଅଧିକ ଚାଷ ଜମିକୁ ଜଳସେଚନ ଯୋଗାଇ ଦେବା ପାଇଁ ଗଭୀର ନଳକୂପ ଯୋଜନା, ପାର୍ବତୀ ଗିରି ଉଠା ଜଳସେଚନ ଯୋଜନା, ମୁଖ୍ୟମନ୍ତ୍ରୀ ଆଡ଼ିବନ୍ଧ ତିଆରି ଯୋଜନା ଇତ୍ୟାଦି କାର୍ଯ୍ୟକାରୀ କରିଛନ୍ତି ।

ରାଜ୍ୟ ସରକାର ବିଗତ ୧୭ ବର୍ଷ ମଧ୍ୟରେ ୧୩ଲକ୍ଷ ୨୬ ହଜାର ହେକ୍ଟର ଚାଷଜମି ପାଇଁ ଜଳସେଚନ ସୁବିଧା ସୃଷ୍ଟି କରିଛନ୍ତି । ଇତି ମଧ୍ୟରୁ ବିଗତ ୩ବର୍ଷ ମଧ୍ୟରେ ମୋଟ ୪ଲକ୍ଷ ୬୧ ହଜାର ଚାଷଜମି ପାଇଁ ଜଳସେଚନ ସୁବିଧା ସୃଷ୍ଟି କରାଯାଇଅଛି । ଗତ ସାଧାରଣ ନିର୍ବାଚନୀ ପ୍ରତିଶ୍ରୁତି ଅନୁଯାୟୀ ୨୦୧୯ ମସିହା ସୁଦ୍ଧା ୧୦ ଲକ୍ଷ ହେକ୍ଟର ଚାଷଜମି ପାଇଁ ଜଳସେଚନ ସୁବିଧା ସୃଷ୍ଟି କରିବାକୁ ପ୍ରଚେଷ୍ଟା ଜାରି ରହିଛି ।

ଜଳସମ୍ପଦ ବିଭାଗର ବ୍ୟୟ ଅଟକଳ ଆଶାନୁରୂପ ବୃଦ୍ଧି କରାଯାଇଛି । ୨୦୦୦-୨୦୦୧ ମସିହାରେ ବ୍ୟୟ ଅଟକଳ ୮୫୦.୩୩ କୋଟି ଟଙ୍କା ଥିବାବେଳେ ଏହାକୁ ହାରାହାରି ୧୧ଗୁଣ ବୃଦ୍ଧି କରାଯାଇ ୨୦୧୭-୧୮ ଆର୍ଥିକ ବର୍ଷରେ ୯୧୯୯.୬୮ କୋଟି ଟଙ୍କା କରାଯାଇଅଛି ।

ବିଗତ ୩ ବର୍ଷ ମଧ୍ୟରେ ଇନ୍ଦ୍ରାବତୀ ବୃହତ୍ ଜଳସେଚନ ପ୍ରକଳ୍ପର କେନାଲ ସମ୍ପ୍ରସାରଣ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇ କଳାହାଣ୍ଡି ଜିଲ୍ଲାର ୨୫ ହଜାର ୪୮୪ ହେକ୍ଟର ଏବଂ ଟିଟିଲାଗଡ ମଧ୍ୟମ ଜଳସେଚନ ପ୍ରକଳ୍ପକୁ କାର୍ଯ୍ୟକ୍ଷମ କରାଯାଇ ବଲାଙ୍ଗୀର ଜିଲ୍ଲାର ୨ ହଜାର ହେକ୍ଟର ଚାଷଜମିକୁ ଜଳସେଚିତ କରାଯାଇଅଛି । ଏତଦ୍‌ବ୍ୟତୀତ ରେଙ୍ଗାଲି ଜଳସେଚନ ପ୍ରକଳ୍ପର ଗଁନ୍ଦିଆ ବ୍ରାଞ୍ଚ କେନାଲକୁ ମଧ୍ୟ କାର୍ଯ୍ୟକ୍ଷମ କରାଯାଇ ଢେଙ୍କାନାଳ ଜିଲ୍ଲାର ୧୧ ହଜାର ହେକ୍ଟର ଚାଷଜମିକୁ ଜଳସେଚିତ କରାଯିବା ସହିତ ସୁନ୍ଦରଗଡ ଜିଲ୍ଲାର ରୁକୁରା ମଧ୍ୟମ ଜଳସେଚନ ପ୍ରକଳ୍ପର ଜଳଭଣ୍ଡାର ମଧ୍ୟରେ ପ୍ରଥମଥର ପାଇଁ ଜଳ ଗଚ୍ଛିତ କରାଯାଇ ୨ ହଜାର ହେକ୍ଟର ଚାଷ ଜମିକୁ ପରୀକ୍ଷାମୂଳକ ଭାବେ ଜଳସେଚନ ଦିଆଯାଇଅଛି । ଏତଦ୍‌ବ୍ୟତୀତ ଲୋୟର ଇନ୍ଦ୍ର, ରେତ୍, ତେଲେଙ୍ଗିରି, ସୁବର୍ଣ୍ଣରେଖା, ରୁକୁରା, ମନଯୋର, ମହେନ୍ଦ୍ରତନେୟା, ବାଘଲଟି ଓ ରାଜୁଆ ପ୍ରକଳ୍ପଗୁଡ଼ିକର ନିର୍ମାଣ କାର୍ଯ୍ୟ ଶେଷ ପର୍ଯ୍ୟାୟରେ ପହଞ୍ଚିଛି । ୨୦୧୯ ମସିହା ମାର୍ଚ୍ଚ ମାସ ଶେଷସୁଦ୍ଧା ଏହି ପ୍ରକଳ୍ପଗୁଡ଼ିକୁ ସମ୍ପୂର୍ଣ୍ଣ କରାଯାଇ ନୂଆପଡା ଜିଲ୍ଲାର ୭ହଜାର ୫୦୦ ହେକ୍ଟର, ବଲାଙ୍ଗିର ଜିଲ୍ଲାର ୧୬ ହଜାର ୪୦୦ ହେକ୍ଟର, କଳାହାଣ୍ଡି ଜିଲ୍ଲାର ୮ ହଜାର ୫୦୦ ହେକ୍ଟର, କୋରାପୁଟ ଜିଲ୍ଲାର ୯ ହଜାର ୯୫୦ ହେକ୍ଟର, ମୟୂରଭଞ୍ଜ ଜିଲ୍ଲାର ୩୪ ହଜାର ୩୦୦ ହେକ୍ଟର, ବାଲେଶ୍ୱର ଜିଲ୍ଲାର ୧୨ ହଜାର ୭୦୦ ହେକ୍ଟର ଓ ସୁନ୍ଦରଗଡ ଜିଲ୍ଲାର ୫ହଜାର ୭୫୦ ହେକ୍ଟର, ଅନୁଗୁଳ ଜିଲ୍ଲାର ୨ ହଜାର ହେକ୍ଟର, ରାୟଗଡା ଜିଲ୍ଲାର ୨ ହଜାର ହେକ୍ଟର, ଗଞ୍ଜାମ ଜିଲ୍ଲାର ୨୨୦ ହେକ୍ଟର, ଖୋର୍ଦ୍ଧା ଜିଲ୍ଲାର ୧ ହଜାର ୨୦୦ ହେକ୍ଟର ଓ ପୁରୀ ଜିଲ୍ଲାର ୧ହଜାର ୪୦୦ ହେକ୍ଟର ଏହିପରି ସର୍ବମୋଟ ୧ ଲକ୍ଷ ୧ ହଜାର ୯୨୦ ହେକ୍ଟର ଚାଷ ଜମିକୁ ଜଳସେଚନ ଯୋଗାଇ ଦିଆଯିବ ।

ଜାପାନ ଆନ୍ତର୍ଜାତିକ ସହଯୋଗୀ ସଂସ୍ଥା ଋଣ ସହାୟତାରେ ୨୨୫୦ କୋଟି ଟଙ୍କା ଅଟକଳ ମୂଲ୍ୟରେ ରେଙ୍ଗାଲି ଜଳସେଚନ ପ୍ରକଳ୍ପର ବାମପାର୍ଶ୍ୱ କେନାଲ ୭୧.୩୧ କି.ମିରୁ ୧୨୩.୫୦ କି.ମି କାର୍ଯ୍ୟ ଆରମ୍ଭ କରାଯାଇଅଛି । ଏହାଦ୍ୱାରା ଢେଙ୍କାନାଳ, ଯାଜପୁର, କେଉଁଝର ଜିଲ୍ଲାର ୩୯ହଜାର ୪୧୬ ହେକ୍ଟର ଜମିକୁ ଜଳସେଚନ ଯୋଗାଇ ଦିଆଯିବ । ଏହି ଯୋଜନା ମାଧ୍ୟମରେ ୨୦୧୯ ମସିହା ମାର୍ଚ୍ଚ ମାସ ଶେଷ ସୁଦ୍ଧା ଭୁବନ ଓ ସୁକିନ୍ଦା ବ୍ଲକରେ ୧୦ ହଜାର ହେକ୍ଟରରୁ ଉର୍ଦ୍ଧ୍ୱ ଚାଷଜମିକୁ ଜଳସେଚନ ଯୋଗାଇ ଦିଆଯିବ ।

ଏସୀୟ ଉନ୍ନୟନ ବ୍ୟାଙ୍କ ଋଣ ସହାୟତାରେ ପ୍ରଥମ ପର୍ଯ୍ୟାୟରେ କାର୍ଯ୍ୟକାରୀ କରାଯାଉଥିବା ତାଳଦଣ୍ଡା କେନାଲ, ସୁନେଇ ଗୋହିରା, ରେମାଳ ବୃହତ୍ ଓ ମଧ୍ୟମ ଜଳସେଚନ ପ୍ରକଳ୍ପ ସହିତ ୬୫୦ ଗୋଟି କ୍ଷୁଦ୍ର ଉଠା ଜଳସେଚନ ପ୍ରକଳ୍ପର ଉନ୍ନତିକରଣ କାର୍ଯ୍ୟ ୩୮୧ କୋଟି ଟଙ୍କାରେ ସମ୍ପୂର୍ଣ୍ଣ କରାଯାଇ ୬୪ ହଜାର ୯୬୭ ହେକ୍ଟର ସେଚାଞ୍ଚଳରେ ଜଳସେଚନ ବ୍ୟବସ୍ଥାର ସୁଦୃଢ଼ୀକରଣ କରାଯାଇଅଛି । ଇତି ମଧ୍ୟରେ ୧୦୨୯ କୋଟି ଟଙ୍କା ଅଟକଳ ମୂଲ୍ୟରେ ଦ୍ୱିତୀୟ ପର୍ଯ୍ୟାୟ କାର୍ଯ୍ୟ ମାଛଗାଁ କେନାଲ, ପଟ୍ଟାମୁଣ୍ଡାଇ କେନାଲ, High Level Canal-I, ମହାନଦୀ ଚିତ୍ରୋତ୍ପଳା ଦ୍ୱୀପାଞ୍ଚଳ ପ୍ରକଳ୍ପ, ରାମିଆଳ, କାନଝାରୀ, କାଂସବାହଲ ପ୍ରକଳ୍ପଗୁଡ଼ିକ ସହିତ ୭୫୦ ଗୋଟି ଉଠା ଜଳସେଚନ ପ୍ରକଳ୍ପ ଓ ୧୨ଗୋଟି ଲୁଣାବନ୍ଧର ଉନ୍ନତିକରଣ ଆରମ୍ଭ କରାଯାଇଅଛି । ୨୦୧୯ ମସିହା ମାର୍ଚ୍ଚ ମାସ ଶେଷ ସୁଦ୍ଧା ଏହିସବୁ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇ ୧ଲକ୍ଷ ୧୮ ହଜାର ହେକ୍ଟର ସେଚାଞ୍ଚଳରେ ଜଳସେଚନ ବ୍ୟବସ୍ଥାର ସୁଦୃଢ଼ୀକରଣ କରାଯିବା ସହିତ ୬ହଜାର ହେକ୍ଟର ଚାଷଜମିକୁ ଜଳସେଚନ ଯୋଗାଇ ଦିଆଯିବ ।

ରାଜ୍ୟ ସରକାରୀ ୨୦୧୧-୧୨ ଆର୍ଥିକ ବର୍ଷରେ ବୃହତ୍ ଉଠା ଜଳସେଚନ ଯୋଜନା ଆରମ୍ଭ କରିଛନ୍ତି । ବିଗତ ବର୍ଷ ଏହି ଯୋଜନାକୁ ମହାନ ସମାଜସେବୀ ପାର୍ବତୀ ଗିରିଙ୍କ ନାମରେ ନାମିତ କରାଯାଇଅଛି । ବର୍ତ୍ତମାନ ସୁଦ୍ଧା ଇନ୍ଦ୍ରାବତୀ Lift Canalକୁ ମିଶାଇ ସମୁଦାୟ ୧୭୦ ଗୋଟି ବୃହତ୍ ଉଠା ଜଳସେଚନ ପ୍ରକଳ୍ପର କାର୍ଯ୍ୟ ଆରମ୍ଭ କରାଯାଇଛି । ଏଥିମଧ୍ୟରୁ ବିଗତ ୩ ବର୍ଷ ମଧ୍ୟରେ ୫ହଜାର ୭୮୬ କୋଟି ଟଙ୍କା ଅଟକଳ ମୂଲ୍ୟର ୧୪୨ ଗୋଟି ପ୍ରକଳ୍ପର କାର୍ଯ୍ୟ ଆରମ୍ଭ କରାଯାଇଅଛି । ଇତିମଧ୍ୟରେ ୮ଗୋଟି ପ୍ରକଳ୍ପର କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇ ବଲାଙ୍ଗିର ଜିଲ୍ଲାର ୩ ହଜାର ୭୫୦ ହେକ୍ଟର ଓ କଳାହାଣ୍ଡି ଜିଲ୍ଲାର ୨ ହଜାର ୬୦୦ ହେକ୍ଟର ଏହିପରି ସର୍ବମୋଟ ୬ ହଜାର ୩୫୦ ହେକ୍ଟର ଚାଷ ଜମିପାଇଁ ଜଳସେଚନ ସୁବିଧା ସୃଷ୍ଟି କରାଯାଇଅଛି । ନିର୍ମାଣାଧୀନ ଅବଶିଷ୍ଟ ପ୍ରକଳ୍ପଗୁଡ଼ିକୁ ପର୍ଯ୍ୟାୟକ୍ରମେ ୨୦୧୯ ମସିହା ସୁଦ୍ଧା ସମ୍ପୂର୍ଣ୍ଣ କରାଯାଇ କଳାହାଣ୍ଡି, ବଲାଙ୍ଗୀର, ବରଗଡ, ଅନୁଗୁଳ, ବୌଦ୍ଧ, କଟକ, ଦେବଗଡ, ଗଜପତି, ଗଞ୍ଜାମ, ଯାଜପୁର, ଝାରସୁଗୁଡା, କେଉଁଝର, କେନ୍ଦ୍ରାପଡା, କୋରାପୁଟ, ମାଲକାନାଗିରି, ମୟୂରଭଞ୍ଜ, ନବରଙ୍ଗପୁର, ରାୟଗଡା, ନୂଆପଡା, ସମ୍ବଲପୁର, ସୁବର୍ଣ୍ଣପୁର ଓ ସୁନ୍ଦରଗଡ ଜିଲ୍ଲାଗୁଡ଼ିକର ୨ଲକ୍ଷ ୨୬ ହଜାର ୫୦୮ ହେକ୍ଟର ଚାଷଜମିକୁ ଜଳସେଚନ ଯୋଗାଇ ଦିଆଯିବ । ଏହି କାର୍ଯ୍ୟକ୍ରମରେ ୨୦୧୭-୧୮ ଓ ୨୦୧୮ -୧୯ ଆର୍ଥିକ ବର୍ଷରେ ୩ ହଜାର କୋଟି ଟଙ୍କା ବ୍ୟୟ କରାଯିବ ।

ରାଜ୍ୟ ସରକାର ଗଭୀର ନଳକୂପ ଯୋଜନା ୨୦୧୦-୧୧ ମସିହାରେ ରାଜ୍ୟର ୨୬ଗୋଟି ଜିଲ୍ଲାର ୨୫୬ଗୋଟି ବ୍ଲକ୍‌ରେ ଆରମ୍ଭ କରିଛନ୍ତି । ଏକ ଗଭୀର ନଳକୂପ ନିର୍ମାଣ କରିବା ପାଇଁ ୩ଲକ୍ଷ ୮୮ ହଜାର ଟଙ୍କା ବ୍ୟୟ କରାଯାଉଅଛି । ଏହି କାର୍ଯ୍ୟ ପାଇଁ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ତଫସିଲଭୁକ୍ତ ଜାତି ଓ ଜନଜାତି ବର୍ଗର ହୀତାଧିକାରୀମାନେ ସର୍ବାଧିକ ୧୦,୦୦୦ ଟଙ୍କା ଅଂଶଧନ ପୈଠ କରୁଥିବା ବେଳେ ଅନ୍ୟବର୍ଗର ହିତାଧିକାରୀମାନେ ସର୍ବାଧିକ ୨୦,୦୦୦ ଟଙ୍କା ଅଂଶଧନ ପୈଠ କରୁଛନ୍ତି । ୨୦୧୭ ମସିହା ମାର୍ଚ୍ଚ ମାସ ଶେଷସୁଦ୍ଧା ଏହି ଯୋଜନାରେ ୪୯ ହଜାର ୭୦୩ ଗୋଟି ନଳକୂପ ନିର୍ମାଣ କରାଯାଇ ହିତାଧିକାରୀମାନଙ୍କୁ ହସ୍ତାନ୍ତର କରାଯାଇଅଛି । ଏଥିମଧ୍ୟରୁ ବିଗତ ୩ବର୍ଷରେ ୩୫ ହଜାର ୮୨୨ ଗୋଟି ନଳକୂପ ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇ ହିତାଧିକାରୀମାନଙ୍କୁ ହସ୍ତାନ୍ତର କରାଯାଇଅଛି । ୨୦୧୭-୧୮ ଓ ୨୦୧୮-୧୯ ଆର୍ଥିକ ବର୍ଷରେ ଏହି କାର୍ଯ୍ୟକ୍ରମରେ ଅଧିକ ୩୫ ହଜାର ନଳକୂପ ନିର୍ମାଣ କରାଯାଇ ହୀତାଧିକାରୀମାନଙ୍କୁ ହସ୍ତାନ୍ତର କରାଯିବ ।

୨୦୧୪ ନିର୍ବାଚନୀ ଇସ୍ତାହାର ଅନୁଯାୟୀ ଅଚଳ ଉଠା ଜଳସେଚନ ପ୍ରକଳ୍ପ ପୁନରୁଦ୍ଧାର କରିବା ପାଇଁ ରାଜ୍ୟ ସରକାର ୨୦୧୫-୧୬ ଆର୍ଥିକ ବର୍ଷରେ ୫୨୮ କୋଟି ୮୫ ଲକ୍ଷ ଟଙ୍କାର ଏକ ଯୋଜନା (Revival of Defunct LIPs) ଆରମ୍ଭ କରିଛନ୍ତି । ଏତଦ୍‌ବ୍ୟତୀତ RIDF, Biju KBK, ବିଜୁ କୃଷକ ବିକାଶ ଯୋଜନା ଇତ୍ୟାଦିରୁ ଅଚଳ ପ୍ରକଳ୍ପକୁ ମଧ୍ୟ ମରାମତି କରାଯାଉଅଛି । ୨୦୧୯ ମସିହା ମାର୍ଚ୍ଚ ମାସ ଶେଷସୁଦ୍ଧା ୫ହଜାର ୪୪୭ ଗୋଟି ଅଚଳ ଉଠା ଜଳସେଚନ ପ୍ରକଳ୍ପକୁ ମରାମତି କରାଯିବ । ବିଗତ ୩ବର୍ଷ ମଧ୍ୟରେ ବିଭିନ୍ନ କାର୍ଯ୍ୟକ୍ରମରେ ୩ହଜାର ୬୨୯ ଗୋଟି ଅଚଳ ଉଠା ଜଳସେଚନ ପ୍ରକଳ୍ପଗୁଡ଼ିକୁ ମରାମତି କରି ସଚଳ କରାଯାଇ ୭୩ ହଜାର ୮୯୧ ହେକ୍ଟର ସେଚାଞ୍ଚଳକୁ ପୁନରୁଦ୍ଧାର କରାଯାଇଅଛି । ଏତଦ୍‌ବ୍ୟତୀତ ବିଜୁ କୃଷକ ବିକାଶ ଯୋଜନା, ହୀରାକୁଦ ସେଚାଞ୍ଚଳ ଓ ଅନ୍ୟାନ୍ୟ ଯୋଜନାରେ ବିଗତ ୩ବର୍ଷ ମଧ୍ୟରେ ୩ହଜାର ୬୬୮ ଗୋଟି ନୂତନ ଉଠା ଜଳସେଚନ ପ୍ରକଳ୍ପ ନିର୍ମାଣ କରି ପାଣି ପଞ୍ଚାୟତମାନଙ୍କୁ ହସ୍ତାନ୍ତର କରାଯାଇଅଛି ।

ଜଳ ସଂରକ୍ଷଣ ପାଇଁ ୨୦୧୦-୧୧ ଆର୍ଥିକ ବର୍ଷରୁ ଚେକ୍‌ଡ୍ୟାମ ଯୋଜନା ଆରମ୍ଭ କରାଯାଇଅଛି । ଚଳିତ ବର୍ଷ ଏହାକୁ 'ମୁଖ୍ୟମନ୍ତ୍ରୀ ଆଡ଼ିବନ୍ଧ ତିଆରି ଯୋଜନା' ନାମରେ ନାମିତ କରାଯାଇଅଛି । ଏହି କାର୍ଯ୍ୟକ୍ରମରେ ୨୦୧୭ ମସିହା ମାର୍ଚ୍ଚ ମାସ ଶେଷସୁଦ୍ଧା ୧୦ ହଜାର ୪୭୫ ଗୋଟି ଚେକ୍‌ଡ୍ୟାମ ନିର୍ମାଣ କରାଯାଇଅଛି । ଏହି ଚେକ୍‌ଡ୍ୟାମଗୁଡ଼ିକ ମାଧ୍ୟମରେ ହାରାହାରି ୮୪ ହଜାର ୩୮୩ ହେକ୍ଟର ଜଳସେଚନର ସାମର୍ଥ୍ୟ ସୃଷ୍ଟି କରାଯାଇଅଛି । ଏଥିମଧ୍ୟରୁ ବିଗତ ୩ବର୍ଷ ମଧ୍ୟରେ ୫ହଜାର ୭୫୦ ଗୋଟି ଆଡ଼ିବନ୍ଧ ନିର୍ମାଣ କରାଯାଇଅଛି ।

ବନ୍ୟା ନିୟନ୍ତ୍ରଣ ଜଳସମ୍ପଦ ବିଭାଗର ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । ବନ୍ୟାଜନିତ କ୍ଷୟକ୍ଷତିକୁ ହ୍ରାସ କରିବା ପାଇଁ Rural Infrastructure Development ଆର୍‌ଆଇଡିଏଫ୍ ଏବଂ ରାଜ୍ୟର ନିଜସ୍ୱ ପାଣ୍ଠିରୁ ବନ୍ୟା ପ୍ରତିରୋଧ ବନ୍ଧର ନିର୍ମାଣ ଓ ସୁଦୃଢ଼ୀକରଣ ପାଇଁ ବିଗତ ୩ବର୍ଷ ମଧ୍ୟରେ ୧ ହଜାର ୮୦୬ କୋଟି ଟଙ୍କା ବ୍ୟୟ କରାଯାଇଅଛି ।

୨୦୧୪ ସାଧାରଣ ନିର୍ବାଚନୀ ଇସ୍ତାହାର ମୁତାବକ ଗ୍ରାମାଞ୍ଚଳରେ ଥିବା ପାଟନାଳୀ ଓ ସହରାଞ୍ଚଳରେ ଥିବା ପ୍ରାକୃତିକ ଜଳ ନିଷ୍କାସନ ନାଳୀଗୁଡ଼ିକର ପୁନରୁଦ୍ଧାର କରି ଜଳ ନିଷ୍କାସନ ବ୍ୟବସ୍ଥାର ସୁଧାର ପାଇଁ ରାଜ୍ୟ ସରକାର ୧ ହଜାର କୋଟି ଟଙ୍କାର ଜଳ ନିଷ୍କାସନ ଉନ୍ନତିକରଣ ଯୋଜନା Drainage Improvement Scheme ଆରମ୍ଭ କରିଛନ୍ତି । ଏହି କାର୍ଯ୍ୟକୁ ସୁଚାରୁରୂପେ ସମ୍ପାଦନ କରିବା ପାଇଁ ଡ୍ରେନେଜ୍ ସଂସ୍ଥାକୁ Restructuring କରାଯାଇ ପ୍ରତ୍ୟେକ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଡ୍ରେନେଜ୍ ଡିଭିଜନ ଖୋଲାଯାଇଅଛି । ଏହି କାର୍ଯ୍ୟକ୍ରମରେ ବିଗତ ୩ବର୍ଷ ମଧ୍ୟରେ ୪୯୩ କୋଟି ଟଙ୍କା ବ୍ୟୟ କରାଯାଇ ୨ ହଜାର ୩୭୧ କି.ମି. ଜଳ ନିଷ୍କାସନ ନାଳୀର ଉନ୍ନତିକରଣ କରାଯାଇ ୩୮ ହଜାର ୨୫୦ ହେକ୍ଟର ଜମିକୁ ଜଳପ୍ଳାବନ ସମସ୍ୟାରୁ ମୁକ୍ତ କରାଯାଇଅଛି ।

୩୫ ଭାଗ ଜଳସେଚନ ଯୋଜନାରେ ୩୧୪ ଗୋଟି ବ୍ଲକରୁ ୨୨୨ ଗୋଟି ବ୍ଲକ୍‌କୁ ୩୫ ପ୍ରତିଶତରୁ ଊର୍ଦ୍ଧ୍ୱ ଜଳସେଚନ ସୁବିଧା ଯୋଗାଇ ଦିଆଯାଇଅଛି । ଏଥିମଧ୍ୟରୁ ବିଗତ ୩ବର୍ଷ ମଧ୍ୟରେ ୩୩ଗୋଟି ବ୍ଲକ୍‌କୁ ୩୫ ଭାଗରୁ ଊର୍ଦ୍ଧ୍ୱ ଜଳସେଚନ ସୁବିଧା ଯୋଗାଇ ଦିଆଯାଇଅଛି ।

ସେଚାଞ୍ଚଳ ଉନ୍ନୟନ କାର୍ଯ୍ୟକ୍ରମରେ ବିଗତ ୩ ବର୍ଷରେ ୨ଲକ୍ଷ ୨ହଜାର ୩୨୫ ହେକ୍ଟର ପରିମିତ ସେଚାଞ୍ଚଳରେ କ୍ଷେତ୍ରନାଳୀ ଏବଂ ୫୨ ହଜାର ୭୦୪ ହେକ୍ଟର ପରିମିତ ସେଚାଞ୍ଚଳରେ କ୍ଷେତ୍ର ଜଳ ନିଷ୍କାସନ ନାଳୀ ନିର୍ମାଣ କରାଯାଇଅଛି । କେନାଲ ଲାଇନିଂ ଏବଂ ପୁନରୁଦ୍ଧାର କାର୍ଯ୍ୟକ୍ରମରେ ବିଗତ ୩ ବର୍ଷରେ ୨୮୦ କି.ମି. କେନାଲର ଲାଇନିଂ ସମ୍ପୂର୍ଣ୍ଣ କରାଯାଇଛି ।

ବିଗତ ୩ ବର୍ଷ ମଧ୍ୟରେ ଜଳସମ୍ପଦ ବିଭାଗ ଦ୍ୱାରା ଜଳସେଚନ ପ୍ରକଳ୍ପ ନିର୍ମାଣ, ପରିଚାଳନା ଓ ରକ୍ଷଣାବେକ୍ଷଣ, ବନ୍ୟା ନିୟନ୍ତ୍ରଣ ଏବଂ ଜଳ ନିଷ୍କାସନ ଇତ୍ୟାଦି କାର୍ଯ୍ୟ ପାଇଁ ଯୋଜନା ଓ ଅଣଯୋଜନା ପାଣ୍ଠିରୁ ସମୁଦାୟ ୧୮ ହଜାର ୧୫୨ କୋଟି ଟଙ୍କା ବ୍ୟୟ କରାଯାଇଛି ।

❖ ❖ ❖



# ଗ୍ରାମ୍ୟ ଉନ୍ନୟନ ବିଭାଗର ସଫଳତା

ଗ୍ରାମ୍ୟ ଉନ୍ନୟନ ବିଭାଗ ଗ୍ରାମାଞ୍ଚଳରେ ଥିବା ନିର୍ଦ୍ଦିଷ୍ଟ କିଛି ଗ୍ରାମ୍ୟ ରାସ୍ତା, ସେତୁ ଏବଂ ସରକାରୀ କୋଠାବାଡ଼ିର ନିର୍ମାଣ ତଥା ରକ୍ଷଣାବେକ୍ଷଣ ଦାୟିତ୍ୱ ବହନ କରୁଅଛି ।

**୧. ମୁଖ୍ୟମନ୍ତ୍ରୀ ସଡକ ଯୋଜନା:** ରାଜ୍ୟ ସରକାରଙ୍କ ନିର୍ବାଚନ ପ୍ରତିଶ୍ରୁତି ଅନୁଯାୟୀ ଗ୍ରାମାଞ୍ଚଳରେ ଥିବା ୧୦୦ ଲୋକ ସଂଖ୍ୟା ପର୍ଯ୍ୟନ୍ତ ବାସ କରୁଥିବା ଗ୍ରାମଗୁଡ଼ିକୁ ଉନ୍ନତମାନର ସବୁଦିନିଆ ରାସ୍ତା ଯୋଗାଇଦେବା ପାଇଁ ଗ୍ରାମ୍ୟ ଉନ୍ନୟନ ବିଭାଗ ଦ୍ୱାରା ମୁଖ୍ୟମନ୍ତ୍ରୀ ସଡକ ଯୋଜନା ୨୦୧୫–୧୬ରୁ କାର୍ଯ୍ୟକାରୀ କରାଯାଇଅଛି । ଗତ ୨ବର୍ଷରୁ ଆରମ୍ଭ କରାଯାଇଥିବା ଏହି ଯୋଜନାରେ ଅଦ୍ୟାବଧି ୫୨୮ କୋଟି ଟଙ୍କା ବିନିଯୋଗ କରାଯାଇଅଛି ଏବଂ ଉକ୍ତ ସମୟ ମଧ୍ୟରେ ୮୫୦ କି.ମି. ରାସ୍ତାର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇଅଛି । ଆସନ୍ତା ୨ ବର୍ଷରେ ୧୦୦୦ କୋଟି ଟଙ୍କାର ୨୦୦୦କି.ମି ନୂତନ ରାସ୍ତା ପ୍ରକଳ୍ପ ଏହି ଯୋଜନା ମାଧ୍ୟମରେ ହାତକୁ ନିଆଯିବ ।

**୨. ବିଜୁ ସେତୁ ଯୋଜନା:** ସେତୁ ନିର୍ମାଣ କ୍ଷେତ୍ରରେ ଗ୍ରାମ୍ୟ ଉନ୍ନୟନ ବିଭାଗ ବିଜୁ ସେତୁ ଯୋଜନା ମାଧ୍ୟମରେ ବିଗତ ୫ବର୍ଷରେ ୮୫୦ଟି ସେତୁର ନିର୍ମାଣ କାର୍ଯ୍ୟ ହାତକୁ ନେଇଛନ୍ତି । ଅଦ୍ୟାବଧି ଉକ୍ତ ସେତୁ ମଧ୍ୟରୁ ୫୦୦ ଗୋଟି ସେତୁ ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇଅଛି ଏବଂ ଏଥିପାଇଁ ୧୩୫୦ କୋଟି ଟଙ୍କା ବିନିଯୋଗ ହୋଇଅଛି । ବିଜୁ ସେତୁ ଯୋଜନାର କଳେବର ୮୫୦ରୁ ୧୦୦୦କୁ ବୃଦ୍ଧି କରି ଆଉ ନୂତନ ୧୫୦ଟି ସେତୁ ଚଳିତ ଆର୍ଥିକ ବର୍ଷରେ ନିର୍ମାଣ ପାଇଁ ଆବଶ୍ୟକୀୟ ପଦକ୍ଷେପ ନିଆଯାଉଅଛି ।

**୩. ବେଲି ବ୍ରିଜ୍ ନିର୍ମାଣ :** ବିଗତ ୩ବର୍ଷରେ ରାଜ୍ୟର ଦୁର୍ଗମ ତଥା ମାଓ ପ୍ରଭାବିତ ଅଞ୍ଚଳରେ ସ୍ୱଳ୍ପ ସମୟ ମଧ୍ୟରେ ନିର୍ମାଣ ହୋଇପାରୁଥିବା ୧୨୪ଟି ଷ୍ଟିଲ୍ ବେଲି ବ୍ରିଜ୍ ୩୪୬ କୋଟି ଟଙ୍କା ବ୍ୟୟରେ ସମ୍ପୂର୍ଣ୍ଣ କରାଯାଇଅଛି ।

ସେହିପରି ନାବାର୍ଡ ସହାୟତାରେ ଏବଂ ବିଭିନ୍ନ ଗ୍ରାମ୍ୟ ସଂଯୋଗୀକରଣ ଯୋଜନାରେ ମଧ୍ୟ ଅନେକ ସେତୁ ଏହି ବିଭାଗ ନିର୍ମାଣ କରୁଅଛି ।

**୪.ବିଜୁ କେବିକେ ଯୋଜନା :** ଗ୍ରାମ୍ୟ ଉନ୍ନୟନ ବିଭାଗ କେବିକେ ଜିଲ୍ଲାର ରାସ୍ତା ଘାଟର ଉନ୍ନତି ପାଇଁ ସ୍ୱତନ୍ତ୍ର ଦୃଷ୍ଟି ଦେଉଛନ୍ତି । ଏହି ବିଭାଗ ଦ୍ୱାରା ବିଜୁ କେବିକେ ଯୋଜନା ଏବଂ ଅନ୍ୟ ଗ୍ରାମ୍ୟ ସଂଯୋଗୀକରଣ ଯୋଜନା ମାଧ୍ୟମରେ ବିଗତ ୩ବର୍ଷରେ କେବିକେ ଜିଲ୍ଲାରେ ୫୬୮୦ କି.ମି ଗ୍ରାମ୍ୟ ରାସ୍ତାର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇ ୨୦୪୫ କୋଟି ଟଙ୍କା ଖର୍ଚ୍ଚ କରାଯାଇଅଛି । ଆଗାମୀ ୨ ବର୍ଷରେ ଆଉ ୫୦୬୩ କି.ମି ରାସ୍ତା କେବିକେ ଅଞ୍ଚଳରେ ସମ୍ପୂର୍ଣ୍ଣ କରାଯିବ ।

**୫. ପ୍ରଧାନମନ୍ତ୍ରୀ ଗ୍ରାମ ସଡକ ଯୋଜନା:** ପ୍ରଧାନମନ୍ତ୍ରୀ ଗ୍ରାମ ସଡକ ଯୋଜନା ମାଧ୍ୟମରେ ବିଗତ ୧୭ବର୍ଷରେ ରାଜ୍ୟରେ ୧୪୭୭୮ ଗ୍ରାମ ପାଇଁ ୪୦୪୧୨ କି.ମି. ଉନ୍ନତମାନର ସବୁଦିନିଆ ରାସ୍ତା ନିର୍ମାଣ କରାଯାଇଅଛି । ରାଜ୍ୟ ସରକାର ଏହି ଯୋଜନା ପାଇଁ ଅଦ୍ୟାବଧି ମୋଟ ୨୫୫୫ କୋଟି ୬୭ ଲକ୍ଷ ଟଙ୍କା ଯୋଗାଇ ଦେଇଛନ୍ତି ।

**୬. ଗ୍ରାମାଞ୍ଚଳ କୋଠାବାଡି ନିର୍ମାଣ–** ଗ୍ରାମ୍ୟ ଉନ୍ନୟନ ବିଭାଗ ବିଗତ ୩ ବର୍ଷରେ ନିଜସ୍ୱ ବିଭାଗ ପାଇଁ ୧୬୭ ଗୋଟି ସରକାରୀ କାର୍ଯ୍ୟାଳୟ ଏବଂ ୭୨୩ ଗୋଟି ଆବାସିକ ଗୃହ ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରି ସେଗୁଡିକର ବ୍ୟବହାର କରୁଛନ୍ତି । ଏହି ବିଭାଗ ଅନ୍ୟ ବିଭାଗର ମଧ୍ୟ ଅନେକଗୁଡିଏ ଗୁରୁତ୍ୱପୂର୍ଣ୍ଣ କୋଠାବାଡି ଗତ ୩ ବର୍ଷରେ ନିର୍ମାଣ କରିଛନ୍ତି । ସେଥିମଧ୍ୟରୁ ରାଜସ୍ୱ ଓ ବିପର୍ଯ୍ୟୟ ପ୍ରଶମନ ବିଭାଗର ୯ଗୋଟି ତହସିଲ କାର୍ଯ୍ୟାଳୟ, ୩୪୮ ଗୋଟି ରାଜସ୍ୱ ନିରୀକ୍ଷକ କାର୍ଯ୍ୟାଳୟ, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ପାଇଁ ୧୨୭୯ ଗୋଟି ପି.ଏଚ୍.ସି., ସି.ଏଚ୍.ସି., ସବ୍-ସେଣ୍ଟର, ଆୟୁର୍ବେଦିକ୍ ଓ ହୋମିଓପାଥି ଡିସ୍‌ପେନ୍‌ସାରୀ, ୩ଗୋଟି ୩୦ Beded Mother and Child Hospitalର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇଅଛି । ସେହିପରି ଦକ୍ଷତା ବିକାଶ ଓ ବୈଷୟିକ ଶିକ୍ଷା ବିଭାଗ ପାଇଁ ୪ଗୋଟି ଆଇ.ଟି.ଆଇ ଓ ଗୋଟିଏ ପଲିଟେକ୍‌ନିକ୍‌ର କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇଅଛି । ସମବାୟ ବିଭାଗ ପାଇଁ ବିଗତ ୩ବର୍ଷରେ ୧୭୫ଟି ୩୦୦ ମେଟ୍ରିକ୍ ଟନ୍ କ୍ଷମତା ବିଶିଷ୍ଟ ଗୋଦାମ ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇଅଛି । ସ୍କୁଲ ଓ ଗଣଶିକ୍ଷା ବିଭାଗ ପାଇଁ ୧୩୨ଟି ଆଦର୍ଶ ବିଦ୍ୟାଳୟର କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇଅଛି । Revenue & Disaster Management ଅଧୀନରେ ଥିବା ଓଏସ୍‌ଡିଏମ୍‌ଏ ସଂସ୍ଥା ପାଇଁ ୨୫୫ଟି ବାତ୍ୟା ଆଶ୍ରୟସ୍ଥଳୀ ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇଅଛି । ମୁଖ୍ୟମନ୍ତ୍ରୀ ରିଲିଫ୍ ଫଣ୍ଡରୁ ମିଳିଥିବା ଅନୁଦାନରୁ ୭୮ ଗୋଟି ବହୁମୁଖୀ ବନ୍ୟା ଆଶ୍ରୟସ୍ଥଳୀ ନିର୍ମାଣ କାର୍ଯ୍ୟ ଏହି ବିଭାଗ ଦ୍ୱାରା କରାଯାଇଅଛି ।

**୭. ଦକ୍ଷତା ବୃଦ୍ଧି ଓ ଅନ୍ୟାନ୍ୟ କାର୍ଯ୍ୟକ୍ରମ :** ଏହା ବ୍ୟତୀତ ଗ୍ରାମ୍ୟ ଉନ୍ନୟନ ବିଭାଗ ନିଜ ବିଭାଗର ଦକ୍ଷତା ବୃଦ୍ଧି ପାଇଁ ବିଗତ ୩ବର୍ଷରେ ୧୩୪୦ ଜଣ ବିଭାଗୀୟ ଯନ୍ତ୍ରୀ, ଗୁଣବତ୍ତା ନିରୀକ୍ଷକ ଏବଂ ଠିକାଦାରମାନଙ୍କୁ ବିଭିନ୍ନ ଜାତୀୟ ବୈଷୟିକ ଅନୁଷ୍ଠାନମାନଙ୍କରେ ପ୍ରଶିକ୍ଷଣ ଦେଇଛନ୍ତି । ଗତ ୩ବର୍ଷରେ ନୂତନ ବୈଷୟିକ ପ୍ରଣାଳୀର ଉପଯୋଗ କରି ୫୨୫ କି.ମି. ରାସ୍ତା ନିର୍ମାଣ କରାଯାଇଅଛି । ଗ୍ରାମ୍ୟ ଉନ୍ନୟନ ରାସ୍ତାଗୁଡିକର ନିର୍ମାଣ, ରକ୍ଷଣାବେକ୍ଷଣ ତଥା ନୂଆ ଟେକ୍ନୋଲୋଜି ଆଦି ସମ୍ପର୍କରେ ଯନ୍ତ୍ରୀମାନଙ୍କୁ ସମୟ ସମୟରେ ତାଲିମ ଦେବା ପାଇଁ ୬ଗୋଟି Rural Road Network Management Unit ଯଥା ଅନୁଗୋଳ, ସମ୍ବଲପୁର, ବ୍ରହ୍ମପୁର, ବାଲେଶ୍ୱର, ବଲାଙ୍ଗୀର ଏବଂ କଟକଠାରେ ସ୍ଥାପନ କରିବା ପାଇଁ ପଦକ୍ଷେପ ନିଆଯାଇଛି ।

ଏହିପରି ଭାବରେ ବିଭିନ୍ନ ଯୋଜନାରେ ସମ୍ପୂର୍ଣ୍ଣ କରାଯାଇଥିବା ସମସ୍ତ ଗ୍ରାମ୍ୟ ରାସ୍ତା ଓ ସେତୁ ପ୍ରକଳ୍ପଗୁଡିକର ହିସାବକୁ ନେଲେ ବିଗତ ୩ବର୍ଷରେ ଗ୍ରାମାଞ୍ଚଳ ଗମନାଗମନ କ୍ଷେତ୍ରରେ ଏହି ବିଭାଗ ୬୫୭୦ କୋଟି ଟଙ୍କା ବିନିଯୋଗ କରି ୧୬୩୪୦ କିଲୋମିଟର ରାସ୍ତା ଏବଂ ୨୫୪୬ କୋଟି ଟଙ୍କା ବିନିଯୋଗ କରି ୬୦୭ଟି ସେତୁ କାର୍ଯ୍ୟ ସମ୍ପୂର୍ଣ୍ଣ କରି ଜନସାଧାରଣଙ୍କ ପାଇଁ ଉପଲବ୍ଧ କରାଯାଇଛି ।



# ଓଡ଼ିଶା: ବିପର୍ଯ୍ୟୟ ପରିଚାଳନାରେ ଭାରତବର୍ଷର ସର୍ବଶ୍ରେଷ୍ଠ ରାଜ୍ୟ

ଓଡ଼ିଶା ମୁଖ୍ୟତଃ ଏକ ବିପର୍ଯ୍ୟୟ ପ୍ରବଣ ରାଜ୍ୟ । ବନ୍ୟା, ବାତ୍ୟା ଓ ମରୁଡି ଭଳି ବିପର୍ଯ୍ୟୟ ଦ୍ୱାରା ଏହା ନିୟମିତଭାବେ ପ୍ରଭାବିତ ହୋଇଥାଏ । ଏମିତି ଗୋଟିଏ ବର୍ଷ ବି ନାହିଁ, ଯେଉଁ ବର୍ଷ ଆମ ରାଜ୍ୟରେ କୌଣସି ବଡ ଧରଣର ବିପର୍ଯ୍ୟୟ ଘଟିନାହିଁ ।

୧୯୯୯ ମହାବାତ୍ୟା ପରେ ପରେ ଆମ ସରକାର କ୍ଷମତାକୁ ଆସିଥିଲେ । ଏହାର ଠିକ୍ ପୂର୍ବରୁ ଆବଶ୍ୟକ ପ୍ରସ୍ତୁତି ଅଭାବରୁ ମହାବାତ୍ୟା ଦ୍ୱାରା ପ୍ରଭାବିତ ଅଞ୍ଚଳର ଜନସାଧାରଣ ଅକଥନୀୟ ଦୁଃଖ ଦୁର୍ଦ୍ଦଶା ଭୋଗିଥିଲେ । ସେହି ଦୃଷ୍ଟିରୁ ରାଜ୍ୟର ଜନସାଧାରଣଙ୍କୁ କିପରି ବିପର୍ଯ୍ୟୟଜନିତ ଦୁଃଖ ଦୁର୍ଦ୍ଦଶାରୁ ରକ୍ଷା କରାଯାଇପାରିବ, ତାହା ଆମ ସରକାରଙ୍କ ନିକଟରେ ପ୍ରାଥମିକତା ଥିଲା । ତେଣୁ ଓଡ଼ିଶାକୁ ଏକ ବିପର୍ଯ୍ୟୟ ପ୍ରତିରୋଧ ରାଜ୍ୟଭାବେ ଗଢିତୋଳିବା ପାଇଁ ସରକାର ସୁଚିନ୍ତିତ ପଦକ୍ଷେପମାନ ଗ୍ରହଣ କରିଛନ୍ତି ।

ଗତ ୧୭ବର୍ଷ ମଧ୍ୟରେ ବିଭିନ୍ନ ବିପର୍ଯ୍ୟୟକୁ ସାମନା କରିବା ନିମିତ୍ତ ଆବଶ୍ୟକ ସାମର୍ଥ୍ୟ ବୃଦ୍ଧି ପାଇଁ ପଦକ୍ଷେପମାନ ଗ୍ରହଣ କରାଯାଇଅଛି । ୨୦୦୧, ୨୦୦୩, ୨୦୦୬, ୨୦୦୮ ଓ ୨୦୧୧ ମସିହାରେ ଘଟିଥିବା ପ୍ରଳୟଙ୍କରୀ ବନ୍ୟା, ୨୦୧୦, ୨୦୧୧ ଓ ୨୦୧୫ର ମରୁଡି ଓ ୨୦୧୩ ମସିହାରେ ସଂଘଟିତ very severe cyclonic storm ଫାଇଲିନ୍ ଏବଂ ୨୦୧୪ ମସିହାର very severe cyclonic storm ହୁଡ୍‌ହୁଡ୍‌କୁ ଆମ ସରକାର ସଫଳତାର ସହ ମୁକାବିଲା କରିବାରେ ସକ୍ଷମ ହୋଇଛନ୍ତି । ୧୯୯୯ ମସିହାରେ ସଂଘଟିତ ମହାବାତ୍ୟାରେ ପାଖାପାଖି ୧୦,୦୦୦ ଜଣ ବ୍ୟକ୍ତିଙ୍କର ମୃତ୍ୟୁ ହୋଇଥିବାବେଳେ ୨୦୧୩ ମସିହାରେ ଫାଇଲିନ୍ ବାତ୍ୟା ଯୋଗୁଁ ହୋଇଥିବା ମୃତ୍ୟୁ ସଂଖ୍ୟା ୨୧ରେ ସୀମିତ କରାଯାଇପାରିଛି । ଏଥିପାଇଁ ଦେଶବିଦେଶରୁ ଆମ ସରକାରଙ୍କୁ ଭୂୟସୀ ପ୍ରଶଂସା ମିଳିଛି । ଜାତିସଂଘ ମହାସଚିବଙ୍କ ସ୍ୱତନ୍ତ୍ର ପ୍ରତିନିଧି ମାର୍ଗାରେଟ୍ ୱାଲଷ୍ଟମ୍ ଭୁବନେଶ୍ୱର ଆସି ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କୁ ଏଥିପାଇଁ ସମ୍ବର୍ଦ୍ଧିତ କରିଥିଲେ । ସେହିପରି India Today Conclaveରେ ତତ୍କାଳୀନ ରାଜସ୍ୱ ମନ୍ତ୍ରୀ ଓ ସ୍ୱତନ୍ତ୍ର ରିଲିଫ୍ କମିଶନରଙ୍କୁ ସ୍ୱତନ୍ତ୍ର ଟ୍ରଫି ପ୍ରଦାନ କରିଥିଲେ । ବିଶ୍ୱବ୍ୟାଙ୍କ ମଧ୍ୟ ଏଥିପାଇଁ ସରକାରଙ୍କ କାର୍ଯ୍ୟକୁ ଉଚ୍ଚ ପ୍ରଶଂସା କରିଛନ୍ତି । ତେବେ ଏ ପ୍ରଶଂସା ଦ୍ୱାରା ଆତ୍ମତୃପ୍ତି ପୂର୍ବକ ରାଜ୍ୟ ସରକାର ଶିଥିଳ ନହୋଇ ବିପର୍ଯ୍ୟୟ ପ୍ରଶମନ ପ୍ରକ୍ରିୟାକୁ ଅଧିକ ଗତିଶୀଳ କରିବା ପାଇଁ ପ୍ରୟାସ ଜାରି ରଖିଛନ୍ତି ।




**ଜାତୀୟ ବାତ୍ୟା ଆପଦ ପ୍ରଶମନ ପ୍ରକଳ୍ପ**

ଏହି ପ୍ରକଳ୍ପର ବ୍ୟୟ ଅଟକଳ ୭୦୨.୨୦ କୋଟି ଟଙ୍କା ଅଟେ । ବିଶ୍ୱ ବ୍ୟାଙ୍କ ସହାୟତାରେ ଏହି ପ୍ରକଳ୍ପ ଜରିଆରେ ରାଜ୍ୟରେ ବହୁମୁଖୀ ବାତ୍ୟା ଆଶ୍ରୟସ୍ଥଳୀ, ଆଶ୍ରୟସ୍ଥଳୀକୁ ସବୁଦିନିଆ ରାସ୍ତା, ଲୁଣାବନ୍ଧର ସୁଦୃଢ଼ୀକରଣ କାର୍ଯ୍ୟମାନ କରାଯାଇଅଛି । ଏହି ପ୍ରକଳ୍ପ ଅଧୀନରେ ସମସ୍ତ ୧୫୪ଟି ବାତ୍ୟା ଆଶ୍ରୟସ୍ଥଳୀର ନିର୍ମାଣ କାର୍ଯ୍ୟ ଶେଷ ହୋଇଅଛି । ୧୪୩ଟି ରାସ୍ତା (୨୧୮.୫୦୦ କି.ମି) ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇଅଛି । ସେଥିମଧ୍ୟରୁ ୧୩୮ଟି ରାସ୍ତାର (୨୦୭.୬୦୦ କି.ମି) ନିର୍ମାଣ କାର୍ଯ୍ୟ ଶେଷ ହୋଇଅଛି । ଧାର୍ଯ୍ୟ ଥିବା ୫୮.୨୨୫ କି.ମି. ଲୁଣାବନ୍ଧ ମଧ୍ୟରୁ ୫୩.୭୧୫ କି.ମି. ଲୁଣାବନ୍ଧ ସୁଦୃଢ଼ୀକରଣ କରାଯାଇଅଛି ।

ଏନ୍‌ସିଆର୍‌ଏମ୍‌ପି ଅତିରିକ୍ତ ସହାୟତା  ଅନୁସାରେ ଆଉ ଅଧିକା ୧୬୨ଟି ବହୁମୁଖୀ ବାତ୍ୟା ଆଶ୍ରୟସ୍ଥଳୀ ଓ ୧୦୦ଟି ସବୁଦିନିଆ ରାସ୍ତା ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇଅଛି । ସେଥିମଧ୍ୟରୁ ୮୯ଟି ବହୁମୁଖୀ ବାତ୍ୟା ଆଶ୍ରୟସ୍ଥଳୀ ଏବଂ ୧୩୮.୬୬ କି.ମି. ଦୀର୍ଘ ୯୦ ଗୋଟି ରାସ୍ତା ନିର୍ମାଣ କାର୍ଯ୍ୟ ଶେଷ ହୋଇଅଛି । ଏହି ଅତିରିକ୍ତ ସହାୟତାର ବ୍ୟୟ ଅଟକଳ ୪୭୮.୨୭ କୋଟି ଟଙ୍କା ଅଟେ ।

**Early Warning Dissemination System (EWDS):**

ରାଜ୍ୟର ସମୁଦ୍ର ତଟବର୍ତ୍ତୀ ଅଞ୍ଚଳର ଜନସାଧାରଣମାନଙ୍କୁ ବାତ୍ୟା ଓ ସୁନାମୀର ଆଗୁଆ ସୂଚନା ଦେବା ପାଇଁ ରାଜ୍ୟର ୬ଟି ସମୁଦ୍ର ଉପକୂଳବର୍ତ୍ତୀ ଜିଲ୍ଲାର ୨୨ଟି ବ୍ଲକ୍ ଅଧୀନସ୍ଥ ୧୨୨ଟି ସ୍ଥାନରେ Alert Siren Tower, NCRMP ପ୍ରକଳ୍ପ ଜରିଆରେ ନିର୍ମାଣ କରାଯାଉଅଛି । ଏହି Alert Siren Tower ଜରିଆରେ ଜନସାଧାରଣମାନେ ବାତ୍ୟା ଓ ସୁନାମୀର ଆଗୁଆ ସୂଚନା ଶବ୍ଦ ଓ ସ୍ୱର ମାଧ୍ୟମରେ ପାଇପାରିବେ । ଯାହାଦ୍ୱାରା ଜନସାଧାରଣଙ୍କ ଧନଜୀବନ ହାନୀକୁ ସୀମିତ କରାଯାଇପାରିବ । ଏହିଭଳି ପ୍ରକଳ୍ପ ସାରା ଦେଶରେ ପ୍ରଥମ ଅଟେ ଏବଂ ଏହି ପ୍ରକଳ୍ପ ଆସନ୍ତା ଜୁଲାଇ ମାସ ଶେଷ ସୁଦ୍ଧା କାର୍ଯ୍ୟକ୍ଷମ ହେବାର ଯୋଜନା ରହିଛି ।

**Odisha Disaster Recovery Project (ODRP):**

ବିଶ୍ୱ ବ୍ୟାଙ୍କ ସହାୟତାରେ ଏହି ପ୍ରକଳ୍ପର ବ୍ୟୟ ଅଟକଳ ୧୧୫୧ କୋଟି ଟଙ୍କା ଅଟେ । ଏହି ପ୍ରକଳ୍ପ ଜରିଆରେ ଫାଇଲିନ୍ ବାତ୍ୟାରେ ଅଧିକ କ୍ଷତିଗ୍ରସ୍ତ ଗଞ୍ଜାମ, ଖୋର୍ଦ୍ଧା ଜିଲ୍ଲାରେ ସମୁଦ୍ର ଉପକୂଳଠାରୁ ୫.କି.ମି. ଅଞ୍ଚଳ ମଧ୍ୟରେ ବିପଦସଙ୍କୁଳ ଅବସ୍ଥାରେ ବସବାସ କରୁଥିବା ପରିବାରଙ୍କ ପାଇଁ ୧୬୫୭୨ଟି ବିପର୍ଯ୍ୟୟ ପ୍ରତିରୋଧକ ବାସଗୃହ ନିର୍ମାଣ କରାଯାଉଅଛି । ତନ୍ମଧ୍ୟରୁ ୧୪୫୬୩ଟି ବାସଗୃହର ନିର୍ମାଣ କାର୍ଯ୍ୟ ଶେଷ ହେଲା ପରେ ଏଗୁଡିକୁ ପରିବାରଙ୍କୁ ହସ୍ତାନ୍ତର କରାଯାଇଛି । ଏହି ବାସଗୃହଗୁଡିକରେ ବିଦ୍ୟୁତ୍ ସଂଯୋଗ ପ୍ରଦାନ ସହ ଶୌଚାଗାର ସୁବିଧା ଯୋଗାଇ ଦିଆଯାଇଥିବା ବେଳେ ୨୪ ଘଣ୍ଟା ଜଳଯୋଗାଣ ବ୍ୟବସ୍ଥା ମଧ୍ୟ କରାଯାଇଅଛି ।

ରାଜ୍ୟ ସରକାର ପ୍ରଚଣ୍ଡ ଗ୍ରୀଷ୍ମ ପ୍ରବାହର ମୁକାବିଲା ପାଇଁ ସମସ୍ତ ପ୍ରତିକାରମୂଳକ ବ୍ୟବସ୍ଥା ଓ ସଚେତନତା ପଦକ୍ଷେପମାନ ଗ୍ରହଣ କରିଆସୁଛନ୍ତି । ୧୯୯୮ ମସିହାରେ ଅଂଶୁଘାତଜନିତ ମୃତ୍ୟୁ ସଂଖ୍ୟା ୨୦୪୨ ଥିଲାବେଳେ ପରବର୍ତ୍ତୀ ସମୟରେ ଏହି ମୃତ୍ୟୁ ସଂଖ୍ୟାକୁ ସୀମିତ କରାଯାଇପାରିଛି । ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରସ୍ତୁତ ଅଂଶୁଘାତ ପ୍ରତିଷେଧକ କାର୍ଯ୍ୟଧାରା ଜାତୀୟ ସ୍ତରରେ ଉଚ୍ଚ ପ୍ରଶଂସିତ ହୋଇଅଛି ।

୨୦୧୫ ମସିହାରେ ରାଜ୍ୟରେ ଭୟଙ୍କର ମରୁଡି ପରିସ୍ଥିତି ସୃଷ୍ଟି ହୋଇଥିଲା । ଏହାକୁ ରାଜ୍ୟ ସରକାର ସଫଳତାର ସହ ମୁକାବିଲା କରିଥିଲେ । ଏଣିକି ରାଜ୍ୟରେ ମରୁଡି ଘୋଷଣା କରିବା ପାଇଁ ବିଜ୍ଞାନସମ୍ମତ ପରିମାପକର ବ୍ୟବହାର କରାଯିବ । ଏଗୁଡିକ ହେଲା- (୧) ବୃଷ୍ଟିପାତର ପରିମାଣ (୨) ଉପଗ୍ରହ ପ୍ରାମାଣିକ ଚିତ୍ର (୩) ମୃତ୍ତିକା ଆର୍ଦ୍ରତା ସୂଚନାଙ୍କ । ଉପରୋକ୍ତ ପରିମାପକଗୁଡିକର ମୂଲ୍ୟାୟନ ପାଇଁ ରାଜ୍ୟରେ ସମସ୍ତ ଗ୍ରାମପଞ୍ଚାୟତର ମୁଖ୍ୟାଳୟରେ ସ୍ୱୟଂଚାଳିତ ବୃଷ୍ଟିମାପକ ଯନ୍ତ୍ର ୧୦୦କୋଟି ଟଙ୍କା ବ୍ୟୟରେ ସ୍ଥାପନ କରାଯିବ ।

**Drought Monitoring Cell**

ମରୁଡି ପରିସ୍ଥିତିର ପରିଚାଳନା ପାଇଁ ରାଜ୍ୟ ସରକାର OSDMA ସଂସ୍ଥାରେ ଏକ Drought Monitoring Cell ଗଠନ କରିଛନ୍ତି ।

ରାଜ୍ୟରେ ବିପର୍ଯ୍ୟୟଜନିତ ପରିସ୍ଥିତିର ସୁପରିଚାଳନା ପାଇଁ ମାନ୍ୟବର ମୁଖ୍ୟମନ୍ତ୍ରୀ ସର୍ବଦା ପ୍ରାଥମିକତା ଦେଇଆସିଛନ୍ତି । ରାଜ୍ୟ ସରକାରଙ୍କର ଏହି ସୁଚିନ୍ତିତ ପ୍ରୟାସ ଆଗାମୀ ଦିନମାନଙ୍କରେ ମଧ୍ୟ ଜାରି ରହିବ ।



# ଓଡ଼ିଶାରେ ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ବର୍ଗ ନିମନ୍ତେ ରାଜ୍ୟ ସରକାରଙ୍କର କାର୍ଯ୍ୟକାରୀ ହେଉଥିବା କଲ୍ୟାଣକାରୀ ଯୋଜନା

ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ବର୍ଗର ଛାତ୍ରଛାତ୍ରୀମାନଙ୍କର ଶୈକ୍ଷିକ ବିକାଶ ନିମନ୍ତେ ପ୍ରାୟ ୧୬୭୦ଟି ଆବାସିକ ବିଦ୍ୟାଳୟ କାର୍ଯ୍ୟ କରୁଛି । ପ୍ରାୟ ୫.୫ ଲକ୍ଷ ଛାତ୍ରଛାତ୍ରୀଙ୍କୁ ଗୁଣାତ୍ମକ ଶିକ୍ଷାଦାନ ନିମନ୍ତେ ପ୍ରାୟ ୬୦୦୦ରୁ ଊର୍ଦ୍ଧ୍ୱ ହଷ୍ଟେଲ୍‌ର ବ୍ୟବସ୍ଥା କରାଯାଇଛି । ହଷ୍ଟେଲ୍‌ରେ ରହୁଥିବା ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ବର୍ଗର ଛାତ୍ରଛାତ୍ରୀଙ୍କୁ ରାଜ୍ୟ ସରକାର ସମ୍ପୂର୍ଣ୍ଣ ସରକାରୀ ପ୍ରୋତ୍ସାହନ ଯୋଗାଇ ଦେଇଛନ୍ତି । ରାଜ୍ୟ ସରକାର ୨୦୧୬-୧୭ ଆର୍ଥିକ ବର୍ଷରେ ପ୍ରାୟ ୧୫.୬୫ ଲକ୍ଷ ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ବର୍ଗର ଛାତ୍ରଛାତ୍ରୀଙ୍କୁ ପ୍ରାକ୍ ମାଟ୍ରିକ୍ ଛାତ୍ରବୃତ୍ତି ଯୋଗାଇ ଦେଇଛନ୍ତି । ସେହିପରି ମାଟ୍ରିକ ପରବର୍ତ୍ତୀ ଶିକ୍ଷା କ୍ଷେତ୍ରରେ ପ୍ରାୟ ୩.୮୦ ଲକ୍ଷ ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ବର୍ଗର ଛାତ୍ରଛାତ୍ରୀମାନଙ୍କୁ ଛାତ୍ରବୃତ୍ତି ରାଜ୍ୟ ସରକାର ଓ କେନ୍ଦ୍ର ସରକାରଙ୍କର ସହାୟତାରେ ପ୍ରଦାନ କରାଯାଉଛି । ଛାତ୍ରମାନଙ୍କର ଛାତ୍ରବୃତ୍ତିକୁ ଛାତ୍ର ପିଛା ଟ. ୬୨୦/-ରୁ ୭୫୦ ଟଙ୍କା ଏବଂ ଛାତ୍ରୀ ପିଛା ଟ. ୬୫୦/-ରୁ ଟ. ୮୦୦/-କୁ ବୃଦ୍ଧି କରାଯାଇଅଛି ।

୨୦୧୫-୧୬ ଆର୍ଥିକ ବର୍ଷରେ ରାଜ୍ୟ ସରକାର 'ଅନ୍ୱେଷା' ନାମରେ ଏକ ଯୁଗାନ୍ତକାରୀ ଯୋଜନାର ଶୁଭାରମ୍ଭ କରିଛନ୍ତି । ଏହାଦ୍ୱାରା ପ୍ରାୟ ୧୩,୩୦୦ ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ବର୍ଗର ଛାତ୍ରଛାତ୍ରୀମାନେ ରାଜ୍ୟର ୧୭ଟି ଜିଲ୍ଲାର ଶ୍ରେଷ୍ଠ ବେସରକାରୀ ବିଦ୍ୟାଳୟଗୁଡିକରେ ଗୁଣାତ୍ମକ ଶିକ୍ଷାଲାଭ କରିପାରିବେ । ଅନୁସୂଚିତ ଜନଜାତି ଓ ଜାତି ବର୍ଗର କଲ୍ୟାଣ ନିମନ୍ତେ ରାଜ୍ୟର ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ ପରିଚାଳିତ ଓଡ଼ିଶା ଆଦର୍ଶ ବିଦ୍ୟାଳୟଗୁଡିକରେ ୩୦୩ ଗୋଟି (୧୩୦ ଗୋଟି ୫୦ ଶଯ୍ୟା ବିଶିଷ୍ଟ ଛାତ୍ରୀନିବାସ ଓ ୧୭୩ ଗୋଟି ୭୫ ଶଯ୍ୟା ବିଶିଷ୍ଟ ଛାତ୍ରାବାସ) ନିର୍ମାଣ କରିବା ପାଇଁ ନିଷ୍ପତ୍ତି ନେଇଛନ୍ତି । ଓଡ଼ିଶା ଏକମାତ୍ର ରାଜ୍ୟ ଯେ ଶିକ୍ଷାର ବିକାଶ ନିମନ୍ତେ ଏହିପରି ଏକ ଅଭିନବ ଯୋଜନାର ଶୁଭାରମ୍ଭ କରିଛନ୍ତି । ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତିର ଛାତ୍ରଛାତ୍ରୀମାନେ ସହରାଞ୍ଚଳରେ ରହି ଉଚ୍ଚ ଶିକ୍ଷା ଲାଭ ନିମନ୍ତେ ଭୁବନେଶ୍ୱରଠାରେ ୨ଗୋଟି ଛାତ୍ରାବାସ/ଛାତ୍ରୀ ନିବାସ 'ଆକାଂକ୍ଷା' ଯୋଜନାରେ ପ୍ରତିଷ୍ଠା କରାଯାଇଅଛି । ଏତଦ୍‌ବ୍ୟତୀତ ୨୦୧୬-୧୭ ଆର୍ଥିକ ବର୍ଷରେ ରାଜ୍ୟ ସରକାର ନୂତନ ଭାବେ ୬ଗୋଟି 'ଆକାଂକ୍ଷା' ହଷ୍ଟେଲ୍ ନିର୍ମାଣ କରିବା ପାଇଁ ପ୍ରଶାସନିକ ମଞ୍ଜୁରି ସହିତ ଚଳିତ ବର୍ଷ ୨୭.୦୦ କୋଟି ଟଙ୍କା ବ୍ୟୟ ବରାଦ କରିଛନ୍ତି ।

ସଂଖ୍ୟାଲଘୁ ସମ୍ପ୍ରଦାୟ ଲୋକମାନଙ୍କ ସର୍ବବିଧ ମଙ୍ଗଳ ନିମନ୍ତେ ରାଜ୍ୟ ସରକାର ବିଭିନ୍ନ ପ୍ରକାରର ବିକାଶମୂଳକ କାର୍ଯ୍ୟକ୍ରମ ଗ୍ରହଣ କରିଆସୁଛନ୍ତି । ସେମାନଙ୍କ ପାଇଁ ୧୦୦ ଗୋଟି ମଲ୍‌ଟି ପର୍ପସ୍ କମ୍ୟୁନିଟି ସେଣ୍ଟର ନିର୍ମାଣ ପାଇଁ ପଦକ୍ଷେପ ଗ୍ରହଣ କରାଯାଇଅଛି, ସେଥିମଧ୍ୟରୁ ୨୫ଗୋଟିର କାର୍ଯ୍ୟ ଆରମ୍ଭ କରାଯିବା ପାଇଁ ଆବଶ୍ୟକୀୟ ଅର୍ଥ ପ୍ରଦାନ କରାଯାଇଅଛି । ସଂଖ୍ୟାଲଘୁ

ସମ୍ପ୍ରଦାୟର ଛାତ୍ରଛାତ୍ରୀମାନେ ଉଚ୍ଚ ଶିକ୍ଷା ଲାଭ ନିମନ୍ତେ ୪୦ ଗୋଟି ଛାତ୍ରାବାସ ନିର୍ମାଣ ନିମନ୍ତେ ଅର୍ଥ ପ୍ରଦାନ କରାଯାଇଅଛି । ଭୁବନେଶ୍ୱରଠାରେ ଏକ ହଜ୍‌ଗୃହ ନିର୍ମାଣ ପାଇଁ ପୋଖରୀପୁଟ ମୌଜାରେ ୪୫୦୦ ବର୍ଗଫୁଟର ଜମି ଚିହ୍ନଟ କରାଯାଇଅଛି ।

୨୦୧୬-୧୭ ବର୍ଷରେ ସରକାର ଆଇଏଫ୍‌ଏଡି ସହାୟତାରେ ଉନ୍ନୟନମୂଳକ ଯୋଜନା ଆରମ୍ଭ କରିଛନ୍ତି । ଆଗାମୀ ୮ବର୍ଷ ମଧ୍ୟରେ ୭୯୫ କୋଟି ଟଙ୍କା ବ୍ୟୟରେ 'ଓଡ଼ିଶା ପି.ଭି.ଟି.ଜି. ସଶକ୍ତିକରଣ ଓ ଜୀବନଜୀବିକା କାର୍ଯ୍ୟକ୍ରମ' (ଓପିଇଏଲ୍‌ଆଇପି) କାର୍ଯ୍ୟକାରୀ ହେଉଅଛି । ଏହି କାର୍ଯ୍ୟକ୍ରମରେ ୩୨ ହଜାରରୁ ଅଧିକ ପି.ଭି.ଟି.ଜି. ପରିବାର ସହିତ ପ୍ରାୟ ୧୪ ହଜାର ଅନୁସୂଚିତ ଜନଜାତି ଓ ୫୦୦୦ ଅନୁସୂଚିତ ଜାତି ପରିବାର ଉପକୃତ ହେବେ ।

ଜଙ୍ଗଲ ଅଧିକାର ଆଇନ ହିତାଧିକାରୀମାନଙ୍କୁ ରାଜ୍ୟ ସରକାର ଏ ପର୍ଯ୍ୟନ୍ତ ପ୍ରାୟ ୪ଲକ୍ଷ ୪ହଜାରରୁ ଅଧିକ ଜମି ସତ୍ୱ ସହିତ ପ୍ରାୟ ୫.୯୮ ଲକ୍ଷ ଏକର ଜଙ୍ଗଲ ଜମି ଯୋଗାଇ ଦେଇଛନ୍ତି । ସେହିପରି ରାଜ୍ୟରେ ପ୍ରାୟ ୫୫୦୦ରୁ ଅଧିକ ଗୋଷ୍ଠୀ ଅଧିକାର ପ୍ରଦାନ କରାଯାଇଛି । ଦେଶରେ ଜଙ୍ଗଲ ଅଧିକାର ଆଇନ କାର୍ଯ୍ୟକାରିତାରେ ରାଜ୍ୟ ସରକାର ପ୍ରମୁଖ ଭୂମିକା ଗ୍ରହଣ କରିଛନ୍ତି ।

ରାଜ୍ୟ ସରକାର ପ୍ରାୟ ୫୦୦ଟି ସ୍କୁଲ ଏବଂ ୪୮୯ଟି ଗ୍ରାମକୁ ସୌର ଶକ୍ତି ମାଧ୍ୟମରେ ବିଦ୍ୟୁତକରଣ କରିବା ପାଇଁ ଲକ୍ଷ୍ୟଧାର୍ଯ୍ୟ କରିଛନ୍ତି । ଏଥିମଧ୍ୟରୁ ପ୍ରାୟ ୨୦୦ଟି ବିଦ୍ୟାଳୟ ଏବଂ ୨୦୦ଟି ଗ୍ରାମରେ ସୌର ଶକ୍ତି ବିଦ୍ୟୁତକରଣ କାର୍ଯ୍ୟକ୍ରମ ଆରମ୍ଭ ହୋଇଅଛି ।

ଓଡ଼ିଶା ଅନୁସୂଚିତ ଜନଜାତି ସଶକ୍ତିକରଣ ଓ ଜୀବିକା ନିର୍ବାହ କାର୍ଯ୍ୟକ୍ରମ (ଓଟିଇଏଲ୍‌ପି) କାର୍ଯ୍ୟକ୍ରମର ସଫଳ ରୂପାୟନ ପରିପ୍ରେକ୍ଷୀରେ ରାଜ୍ୟ ସରକାର ୯ ଗୋଟି ପଛୁଆ ଜିଲ୍ଲାର ୫୮୫ ଗୋଟି ଜଳବିଭାଜିକା ପ୍ରକଳ୍ପ ଅଞ୍ଚଳରେ ଓଟିଇଏଲ୍‌ପି ପ୍ଲସ୍ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ଏହି କାର୍ଯ୍ୟକ୍ରମ ମାଧ୍ୟମରେ ପ୍ରାୟ ୮୩୦୦୦ ହିତାଧିକାରୀ ଉପକୃତ ହେବେ ।



# ଶକ୍ତିପୂଜାର ବିଶେଷତ୍ୱ

**ନିବେଦିତା ଭଞ୍ଜ**

ସିଂହ ପୃଷ୍ଠରେ ବିଜେ କରିଥିବା ଦେବୀ, ଯାହାଙ୍କର ମସ୍ତକରେ ଚନ୍ଦ୍ର ବିରାଜମାନ ମରକତ ମଣି ସମ, ଯାହାଙ୍କର ଦିବ୍ୟ ଜ୍ୟୋତି ଯୁକ୍ତ ହସ୍ତରେ ଶଙ୍ଖ, ଚକ୍ର, ଧନୁ ଏବଂ ବାଣ ସୁଶୋଭିତ- ଯେ ତ୍ରିନେତ୍ରା, ଯାହାଙ୍କର ଅଙ୍ଗ ହାର କଙ୍କଣରେ ସୁଶୋଭିତ ଏବଂ କଙ୍କଣ, ନୂପୁର ଧ୍ୱନି ନିନାଦିତ, ସେହି ଭଗବତୀ ଦୁର୍ଗା ଦୁର୍ଗତିନାଶିନୀଙ୍କ ଆବିର୍ଭାବରେ ଜଗତ ମହିମା ମଣ୍ଡିତ ହୁଏ । ସେ ମାୟା ରୂପରେ ଜୀବ ଜଗତକୁ ନିୟନ୍ତ୍ରଣାଧୀନ କରୁଥିଲେ ମଧ ସୃଷ୍ଟି ସ୍ଥିତି ପ୍ରଳୟର କାରଣ ନିମନ୍ତେ ତାଙ୍କୁ ସ୍ୱୟଂ ଅବତୀର୍ଣ୍ଣା ହେବାକୁ ହୁଏ । ସେ ମହାଶକ୍ତି ମହାଭୀମା, ମହାଭୈରବୀ ରୂପରେ ବିରାଜମାନ ହୋଇ ଦୁଷ୍ଟ ଦଳନ ଓ ସନ୍ଥ ପାଳନର ପନ୍ଥା ଅବଲମ୍ବନ କରନ୍ତି । ଏହା ହିଁ ଆଦ୍ୟାଶକ୍ତିଙ୍କ ମହାନ୍ ବିଶେଷତ୍ୱ ଅଟେ । ଏହି ମହୀୟସୀ ତ୍ରିଦେବୀ ଯେଉଁ ପରମ ସତ୍ତାରୁ ସମ୍ଭୂତା, ସେହି ପରମସତ୍ତା ହିଁ ପରମେଶ୍ୱରୀ ଦୁର୍ଗା ।



ସେ ସମସ୍ତ ଦେବତାଙ୍କ ଏକୀଭୂତ ଶକ୍ତିର ପ୍ରତୀକ, ଯଥା- ସୃଷ୍ଟିକର୍ତ୍ତା ବ୍ରହ୍ମା, ପାଳନକର୍ତ୍ତା ବିଷ୍ଣୁ, ସଂହାର କର୍ତ୍ତା ମହେଶ୍ୱର ଓ ସମସ୍ତ ଦେବତାଙ୍କର ତେଜ ଶକ୍ତିରୁ ଉତ୍ପନ୍ନ, ସେ ସତ୍ୱ, ରଜ ଓ ତମୋ ଆଦି ତ୍ରିଗୁଣର ଅଧିକାରିଣୀ ।

ଯେ ସୁନ୍ଦରୀ ବିଶ୍ୱଧାତ୍ରୀ ବ୍ରହ୍ମା, ବିଷ୍ଣୁ, ଶିବ ବେଦ ବାଣୀରେ ଯାହାର ସ୍ତୁତିଗାନ କରନ୍ତି, ସେ ତ୍ରିଗୁଣରହିତା ସ୍ୱୟଂ ମା' ଦୁର୍ଗତିନାଶିନୀ ଦେବୀ ଦୁର୍ଗା । ଯେତେବେଳେ ପୃଥିବୀ ଆସୁରୀ ଶକ୍ତିରେ ଉତ୍ପୀଡ଼ିତ ହୁଏ, ସେହି ସମୟରେ ଜଗତର ମଙ୍ଗଳ ବିଧାନ ନିମନ୍ତେ ଦେବୀ ଜଗତ୍ କଲ୍ୟାଣୀ କେଉଁ ରୂପ, କେଉଁ ଉପଚାର, କେଉଁ ଇଚ୍ଛା ରଖି ଧରାପୃଷ୍ଠରେ ଅବତୀର୍ଣ୍ଣ ହୁଅନ୍ତି, ତାହା ମାନବ ସମାଜକୁ ଅଗୋଚର, ସେ ଭିନ୍ନ ଭିନ୍ନ ସ୍ଥଳରେ ଭିନ୍ନ ଭିନ୍ନ ରୂପ ଓ ଗୁଣ ନେଇ ଯୁଗେ ଯୁଗେ ଧରାପୃଷ୍ଠରେ ଭକ୍ତଙ୍କର ଦୁଃଖ ନିବାରଣ କରନ୍ତି ।

'ଏକୈବ ଶକ୍ତିଃ ପରମେଶ୍ୱରସ୍ୟ<br>ବିବିଧା ବଦନ୍ତି ବ୍ୟବହାର କାଳେ,<br>ଭୋଗେ ଭବାନୀ ପୁରୁଷେପୁ ଲକ୍ଷ୍ମୀଃ<br>କୋପେତୁ ଦୁର୍ଗା ପ୍ରଳୟେତୁ କାଳୀ ।'

ଏହି ଜଗଜ୍ଜନନୀ ତ୍ରିଗୁଣମୟୀଙ୍କ 'ରାଜସୀ-ରୂପ' ମହାଲକ୍ଷ୍ମୀ, 'ସ୍ୱାତ୍ତ୍ୱିକୀ-ରୂପ' ମହା ସରସ୍ୱତୀ ଓ 'ସଂହାର-ରୂପ' ମହାକାଳୀ, ସେ ସତ୍-ରୂପା, ଚିତ୍-ରୂପା ଓ ଆନନ୍ଦରୂପା

ଭାବେ ଦେବୀ 'ଭୁକ୍ତି-ମୁକ୍ତି' ପ୍ରଦାୟିନୀ ଅଟନ୍ତି । ତାଙ୍କୁ ପୂଜା କଲେ ଭୋଗ ଓ ମୋକ୍ଷ ଉଭୟ ପ୍ରାପ୍ତି ହୁଏ ।

ବହୁ ପ୍ରାଚୀନ ପୁରାଣମାନଙ୍କରେ ଶକ୍ତି ପୂଜାର ଅଖଣ୍ଡ ପ୍ରଭାବ ବିସ୍ତୃତ ଭାବେ ବର୍ଣ୍ଣିତ ରହିଛି । ମାର୍କଣ୍ଡେୟ ପୁରାଣର ସପ୍ତଶତୀ ଚଣ୍ଡୀ ଏହା ମଧ୍ୟରେ ଅନ୍ୟତମ । ଏହି ପୁରାଣ ଅନୁସାରେ ମାତୃଶକ୍ତି ମହାଲକ୍ଷ୍ମୀ ହେଉଛନ୍ତି ମହିଷମର୍ଦ୍ଦିନୀ ଦେବୀ, ମହିଷାସୁରର ଅତ୍ୟାଚାରରେ ଦେବତାମାନଙ୍କ ଶରୀରରୁ ଏକ ମିଳିତ ଶକ୍ତି ଉତ୍ପନ୍ନ ହୋଇ ତାହା ନାରୀ ମୂର୍ତ୍ତିର ରୂପ ନେଇଥିଲା । ସେହି ଦେବୀ ହେଉଛନ୍ତି ମହାଲକ୍ଷ୍ମୀ। ଦୁର୍ଗା ସପ୍ତଶତୀରେ ମହାଲକ୍ଷ୍ମୀଙ୍କୁ ଆଦ୍ୟାଶକ୍ତି, ତ୍ରିଗୁଣମୟୀ ପରମେଶ୍ୱରୀ କୁହାଯାଇଛି । କୂର୍ମପୁରାଣରେ ମହାଲକ୍ଷ୍ମୀଙ୍କୁ ତ୍ରିଶୂଳ ଧାରିଣୀ, ତ୍ରିନେତ୍ରା, ଚତୁର୍ମୁଖୀ, ଦଶଭୁଜା, ରୁଦ୍ରାଣୀ ଓ ଦୁର୍ଗାଙ୍କର ସମନ୍ୱିତ ଶକ୍ତି ଭାବେ ବର୍ଣ୍ଣନା କରାଯାଇଛି । କାଳିକା ପୁରାଣରେ ଲକ୍ଷ୍ମୀଙ୍କୁ ମହାମାୟା ରୂପେ ପ୍ରତିପାଦିତ କରାଯାଇଛି । ଅଥର୍ବ ବେଦରେ ମଧ୍ୟ ଶକ୍ତି ପୂଜାର ପ୍ରଭାବ ଦେଖିବାକୁ ମିଳେ । ବେଦରେ ବ୍ରହ୍ମ ଓ ଶକ୍ତି ମଧ୍ୟରେ କୌଣସି ପ୍ରଭେଦ ରଖାଯାଇ ନାହିଁ। ବ୍ରହ୍ମ ହିଁ ଶକ୍ତି ।

ମହାଭାରତରେ ମଧ୍ୟ ଶକ୍ତି ଉପାସନା ପ୍ରଚଳିତ ଥିଲା । ଭୀଷ୍ମ ପର୍ବର ତ୍ରୟୋଦଶ ଅଧ୍ୟାୟରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଯୁଦ୍ଧରେ ବିଜୟ ଲାଭ କରିବା ପାଇଁ ଦେବୀ ଦୁର୍ଗାଙ୍କୁ ପ୍ରାର୍ଥନା କରିବା ପାଇଁ ପରାମର୍ଶ ଦେଇଥିଲେ। ମହାଭାରତରେ ମା' ଦୁର୍ଗାଙ୍କର ଅନ୍ୟନାମ, କୁମାରୀ କାଳୀ, ଚଣ୍ଡୀ, ଭଦ୍ରକାଳୀ, ମହାକାଳୀ ଇତ୍ୟାଦି ଦୃଷ୍ଟିଗୋଚର ହୁଏ ।

ଏହି ଦେବୀଙ୍କର ଶକ୍ତି ଅସୀମ, ଅମାପ, ଯାହାକି ଭକ୍ତର କଳ୍ପନା ବାହାରେ । ତେଣୁ ଦୁର୍ଗା ଦେବୀଙ୍କୁ ମହାଶକ୍ତିମୟୀ ଭଗବତୀ ବୋଲି ସ୍ମରଣ କରାଯାଏ। ଦେବୀଙ୍କ ଜନ୍ମ କର୍ମ ଉଭୟେ ଦିବ୍ୟ ଓ ଅଲୌକିକ, ଦୁର୍ଗତି କାଳରେ ପ୍ରାଣୀ ଜଗତର ଦୁର୍ଦ୍ଦଶା ଦେଖି ଶକ୍ତିମୟୀ ମା' ଧାରଣ କରିଥିଲେ ଦୁର୍ଗାବତାର, ଦେବୀ ଦୁର୍ଗା ଆବିର୍ଭୂତା ହୋଇ ସର୍ବଦେବ କୂଳକୁ ଅଭୟବାଣୀ ପ୍ରଦାନ କରି ସତ୍ୟ, ଧର୍ମ, ନ୍ୟାୟ ଏବଂ ପୁଣ୍ୟ ପ୍ରତିଷ୍ଠା କରିଥିଲେ । ଦେବୀ ସୂକ୍ତରେ ଦୁର୍ଗାଙ୍କର ମହିମା ଏଭଳି ଦେଖିବାକୁ ମିଳେ -

ଅହଂରୁଦ୍ରାୟ ଧନୁରା ତନୋମି
ବ୍ରହ୍ମଦ୍ୱିଷେ ଶରର୍ବୋ ହନ୍ତବ୍ୟାଉ
ଅହଂ ଜନାୟ ସମଦଂ କୃଣୋମ୍ୟହଂ
ଦବ୍ୟା ପୃଥିବୀ ଆବିଶେଷ

ଅର୍ଥାତ୍ - ମୁଁ ଦେବ ଦ୍ରୋହୀ, ହିଂସ୍ର, ଉନ୍ମାଦ ଅସୁରମାନଙ୍କୁ ବିନାଶ କରିବା ପାଇଁ ରୁଦ୍ରଧନୁ ଧାରଣ କରେ । ମୁଁ ଶରଣାଗତଙ୍କୁ ରକ୍ଷା କରିବା ପାଇଁ ତା'ର ଶତ୍ରୁମାନଙ୍କ ସହିତ ଯୁଦ୍ଧ କରିଥାଏ। ଅନ୍ତର୍ଯ୍ୟାମୀ ରୂପରେ ମୁଁ ପୃଥିବୀ ଏବଂ ଆକାଶ ଭିତରେ ବ୍ୟାପ୍ତ ହୋଇ ରହିଥାଏ ।

ରାମାୟଣରେ ମଧ୍ୟ ଶକ୍ତିପୂଜାର ବିଶେଷତ୍ୱ ରହିଛି। ମହିଷାସୁର ବଧ ପରେ ଦେବୀଙ୍କର ପ୍ରତିଶ୍ରୁତି ଅନୁଯାୟୀ 'ଜଗତରେ ଯେତେବେଳେ ଦାନବ କୁଳର ପ୍ରାଦୁର୍ଭାବ ବୃଦ୍ଧି ପାଇବ, ତତ୍କାଳରେ ମୁଁ ଅବତୀର୍ଣ୍ଣା ହୋଇ ଅସୁର ବଂଶ ନାଶ ପୂର୍ବକ ଧରାରେ ଶାନ୍ତି ସ୍ଥାପନ କରିବି ।' ଦେବୀଙ୍କର ଏହି ବାଣୀକୁ ସ୍ମରଣ କରି ଶ୍ରୀରାମଚନ୍ଦ୍ରଙ୍କ ସହାୟତା ପାଇଁ ଦେବଗଣ ଦୁର୍ଗା ଆରାଧନା କରିଥିଲେ, ପୁରାଣରୁ ଜଣାଯାଏ ରାମଚନ୍ଦ୍ର ଓ ରାବଣ ଉଭୟେ ଦେବୀ ଭକ୍ତ ଥିଲେ । ରାମଚନ୍ଦ୍ରଙ୍କ ଜନ୍ମର ଷଷ୍ଠ ଦିବସରେ ଦୁର୍ଗାଙ୍କୁ ଷଷ୍ଠୀ ଦେବୀରୂପେ ପୂଜା କରାଯାଉଥିଲା। ପୁନଶ୍ଚ ରାମଚନ୍ଦ୍ର ରାବଣ ବଧ ପାଇଁ ଭକ୍ତ ବିଭୀଷଣଙ୍କଠାରୁ ଯୁଦ୍ଧରେ ବିଜୟ ନିମିତ୍ତ ସମର ଦେବୀ ଦୁର୍ଗାଙ୍କୁ ପୂଜା କରିବା ପରାମର୍ଶକୁ ଗ୍ରହଣ କରି ଅକାଳବୋଧନ କରିଥିଲେ । ଅନେୟଙ୍କ ଦ୍ୱାରା ଯକ୍ଷ ସରୋବରରୁ ୧୦୮ ନୀଳପଦ୍ମ ସଂଗ୍ରହ କରି ଦଶଭୁଜା ଦୁର୍ଗାଙ୍କ ପୂଜାରେ କଠୋର ପରୀକ୍ଷାର ସମ୍ମୁଖୀନ ହେବା ପରେ ମା' ଦୁର୍ଗା ଆବିର୍ଭୂତା ହୋଇ ଅଭୟ ପ୍ରଦାନ କରି କହିଲେ -

'ତୁମର ବିଜୟ ଅବଶ୍ୟମ୍ଭାବୀ' । ଧନ୍ୟ ତୁମେ ରାମଚନ୍ଦ୍ର, ତୁମଦ୍ୱାରା ଆୟୋଜିତ ଏହି ଅସମୟ ମୃଣ୍ମୟ ଦେବୀ ପ୍ରତିମା ପୂଜା ଅକାଳବୋଧନ ନାମରେ ଜନସମାଜରେ ଚିରସ୍ମରଣୀୟ ହୋଇ ରହିବ।'

ଏହି ସମସ୍ତ ତଥ୍ୟରୁ ସ୍ପଷ୍ଟ ହେଉଛି ଯେ ଦେବୀ ସର୍ବ ଶକ୍ତିମୟୀ, ସେ ଜଗତର ମୋହିନୀ ଶକ୍ତି । ଶକ୍ତି ସ୍ୱରୂପିଣୀ ଦୁର୍ଗା ପରବ୍ରହ୍ମଙ୍କଠାରୁ ଅଭିନ୍ନ । ସେ ମାୟା ସ୍ୱରୂପିଣୀ ଭଗବାନଙ୍କ





ଇଚ୍ଛାଶକ୍ତି ଅଟନ୍ତି । 'ସର୍ବ ବ୍ରହ୍ମମୟଂ ଜଗତ୍', ଏହି ଉପଲବ୍ଧି ପରେ ଦେବୀ ଦୁର୍ଗା ବ୍ରହ୍ମ ସ୍ୱରୂପିଣୀ ଭାବରେ ଆରାଧିତା ହେଲେ । (ଅହଂ ବ୍ରହ୍ମ ସ୍ୱରୂପିଣୀ) ସପ୍ତଶତୀ ଚଣ୍ଡୀରେ ବର୍ଣ୍ଣିତ-

ସର୍ବସ୍ୱରୂପେ ସର୍ବେଶେ ସର୍ବଶକ୍ତି ସମନ୍ୱିତେ
ଭୟେଭ୍ୟ ସ୍ତ୍ରାହଂନୋ ଦେବୀ ନମସ୍ତୁତେ ।

( ନାରାୟଣୀ ସ୍ତୁତି - ୨୪ ଶ୍ଳୋକ)

ଅତଏବ ହେ ଦେବୀ ଆପଣ ସର୍ବକାର୍ଯ୍ୟ କାରଣରୂପିଣୀ, ସର୍ବେଶ୍ୱରୀ ସର୍ବଶକ୍ତିମୟୀ ସମସ୍ତ ଭୟରୁ ରକ୍ଷାକର୍ତ୍ତ୍ରୀ ।

ପୁନଶ୍ଚ -

ସୃଷ୍ଟି ସ୍ଥିତି ବିନାଶାନାଂ ଶକ୍ତିଭୂତେ ସନାତନୀ
ଗୁଣାଶ୍ରୟେ ଗୁଣମୟେ ନାରାୟଣୀ ନମସ୍ତୁତେ ।

ଅର୍ଥାତ୍- ହେ ଦେବୀ ଆପଣ ସୃଷ୍ଟି, ସ୍ଥିତି ଓ ସଂହାର ଶକ୍ତି ରୂପିଣୀ, ସନାତନୀ । ତ୍ରିଗୁଣମୟୀ ହେ ନାରାୟଣୀ ଆପଣଙ୍କୁ ନମସ୍କାର ।

ଏହି ପରମଶକ୍ତି ଦେବୀ ଦୁର୍ଗାଙ୍କର ଆରାଧନା ଇତିହାସରେ ରାଜା, ମହାରାଜାଙ୍କ ନିକଟରେ ଦେଖା ଦେଇଥିଲା, ବର୍ତ୍ତମାନ ସମାଜରେ ମନୁଷ୍ୟ ତମ ଗୁଣକୁ ତ୍ୟାଗ କରି ସତ୍ୱଗୁଣକୁ ଅଭିବୃଦ୍ଧି କରିବା ଦ୍ୱାରା ଦୁର୍ଗାଙ୍କର ଆଶୀର୍ବାଦ ଗ୍ରହଣ କରୁଛି ।

ଦୁର୍ଗା ହେଉଛନ୍ତି ଅଖିଳ ବିଶ୍ୱର ମାତା, ସେ ମାତୃରୂପିଣୀ ଶକ୍ତି, ସେ ସଚରାଚର ପ୍ରଦାୟିନୀ, ଈଶ୍ୱରୀ, ଜଗତର ଆଧାର ଭୂଷଣ, ବିଶ୍ୱର ବୀଜ ସ୍ୱରୂପା ଏବଂ ଧ୍ୱଂସକାରିଣୀ ଶକ୍ତି । ସେ ମୁକ୍ତି ଦାୟିନୀ, ସେ ଏକ ସଙ୍ଗରେ ସୌମ୍ୟ ତଥା ଭୀଷଣା, ସୃଷ୍ଟି, ସ୍ଥିତି ଓ ବିନାଶରେ ଏକମାତ୍ର ଅଧିଷ୍ଠାତ୍ରୀ ଶକ୍ତି । ମାର୍କଣ୍ଡେୟ ପୁରାଣରେ ଶ୍ରୀ ଶ୍ରୀ ଚଣ୍ଡୀ ରୂପଣୀ ଶକ୍ତି ସ୍ୱରୂପା ମହାମାୟାଙ୍କ ରୂପ ନିର୍ଦ୍ଧାରଣ କରି କୁହାଯାଇଛି -

'ଯା ଦେବୀ ସର୍ବଭୁତେଷୁ ଶକ୍ତି ରୂପେଣ ସଂସ୍ଥିତା
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ।

ଏହାବ୍ୟତୀତ ସେ ଲଜ୍ଜା, ଦୟା, କାନ୍ତି, କ୍ଷମା, ଶାନ୍ତି ଇତ୍ୟାଦିର ପ୍ରତୀକ । ବାସ୍ତବରେ ଦେବୀ ନିତ୍ୟ ସ୍ୱରୂପା ଏବଂ ସଂପୂର୍ଣ୍ଣ ଜଗତ ତାଙ୍କର ରୂପ, ସେ ସମସ୍ତ ବିଶ୍ୱବ୍ରହ୍ମାଣ୍ଡଙ୍କୁ ବ୍ୟାପି ରହିଛନ୍ତି । ସେ ଯଦ୍ୟପି ନିତ୍ୟ, ଅଜନ୍ମା ତଥାପି ଜଗତର ଦୁଃଖ ନିବାରଣାର୍ଥେ ଓ ଦେବତାମାନଙ୍କର କାର୍ଯ୍ୟ ସିଦ୍ଧି ନିମିତ୍ତ ସଂସାରରେ ପ୍ରକଟ ହୁଅନ୍ତି । ସେ ଆନନ୍ଦମୟୀ, ତେଣୁ ଆଜିର ଏ ପବିତ୍ର ଅବସରରେ ସମସ୍ତେ ମିଶି ମାତୃଶକ୍ତି ମା' ଦୁର୍ଗାଙ୍କୁ ମନ ପ୍ରାଣ ଢ଼ାଳି ପ୍ରଣବ ସ୍ତୁତିରେ ପାର୍ଥନା କରିବା । ତାଙ୍କ ଆରାଧନାରେ ସମସ୍ତ ବାଞ୍ଛିତ ଫଳ ପ୍ରାପ୍ତ ହୁଏ । ସେ ସକଳ ମନୋବାଞ୍ଛା ପୂରଣକାରିଣୀ ।

୮୬, ସତ୍ୟନଗର,ଭୁବନେଶ୍ୱର



# ମା’ ଦୁର୍ଗା ଦୁର୍ଗତିନାଶିନୀ

**ଅଧ୍ୟାପକ ଉଦୟନାଥ ତ୍ରିପାଠୀ**

ଶରତ ଋତୁର ଶୁଭାଗମନ । ଅଶ୍ୱିନ ମାସର ଶୁଭ୍ର, ଧବଳିତ ଧରା ବକ୍ଷ । ଚତୁର୍ଦ୍ଦିଗରେ ଶସ୍ୟ ଶ୍ୟାମଳା, ସୁଶୋଭିତା, ପୁଷ୍ପ, ଫଳ ବିମଣ୍ଡିତା ମାଟିମଟାଳ ଶୁଭ୍ର ଜ୍ୟୋସ୍ନାପ୍ଲାବିତ, ଧବଳ ତୁଷାର ବର୍ଣ୍ଣ ମେଘମାଳା ବିମଣ୍ଡିତ ମାଟି ମଟାଳ ଶୁଭ୍ର ଜ୍ୟୋସ୍ନା ପ୍ଲାବିତ ଓ ବିମଣ୍ଡିତ ଅନନ୍ତ ନୀଳ ନଭ ମଣ୍ଡଳ । କଳ କଳ ନାଦିନୀ, ଛଳ ଛଳ ନର୍ତ୍ତିନୀ ଶୁଦ୍ଧ ନଦୀ, ପୁଷ୍କରିଣୀ ଜଳରାଶିର ମନ ହୃଦୟ ଜିଣା ଅନିନ୍ଦ୍ୟ ଶୋଭାରାଶି, ନଦୀ ପଠାରେ ସୁଶୋଭିତ କାଶତଣ୍ଡୀ ପୁଷ୍ପଗୁଡ଼ିକର ମୃଦୁ ମନ୍ଦ ହିଲ୍ଲୋଳରେ ଶୁଭ୍ର ଚାମର କ୍ରୀଡ଼ନ, ମା’ ଦୁର୍ଗାଙ୍କ ଶୁଭ ଆଗମନକୁ ପୃଥିବୀ ବକ୍ଷ ଶାକମ୍ଭରୀ ବେଶରେ ଓ ହସ ମୁଖରିତ ବଦନ କମଳରେ ସ୍ୱାଗତ ଜଣାଉଛି । ଝରା ଶେଫାଳୀର ବାସଭରା ପୁଷ୍ପ ଶଯ୍ୟା ମା’ଙ୍କ ପଦ ସ୍ପର୍ଶ ପାଇଁ ଆଗଭରା ଚତୁର୍ଦ୍ଦିଗ ସରସ ସୁନ୍ଦର ମଧୁମୟ ଓ ହର୍ଷ ମୁଖର ହୋଇ ଉଠିଛି ଏ ପବିତ୍ର ମୁହୂର୍ତ୍ତରେ ମା’ ଦୁର୍ଗାଙ୍କ ପଦସ୍ପର୍ଶରେ ଓ ତାଙ୍କର ଶୁଭ ଆଶୀର୍ବଚନ ପ୍ରତୀକ୍ଷାରେ, ସଜଳ ନୟନରେ ।



ମା’ ଦୁର୍ଗାଙ୍କ ଅଭିନନ୍ଦନ, ପୂଜାର୍ଚ୍ଚନା, ଆରାଧନା କାର୍ଯ୍ୟର ଅୟମାରମ୍ଭ ହୋଇଛି ଏ ଭାରତ ପୁଣ୍ୟଭୂମିରେ ପ୍ରାକ୍ ବୈଦିକ କାଳ ହରପ୍ପା ମହେଞ୍ଜୋଦାରୋ ସଭ୍ୟତାର ପ୍ରାରମ୍ଭ କାଳରୁ । ମା’ଦୁର୍ଗା ଫସଲର ଦେବୀ ଶାକମ୍ଭରୀ ରୂପେ ରୂପାୟିତ । ମାତ୍ର ଗାୟତ୍ରୀ ଓ ଦୁର୍ଗାଶବ୍ଦର ସର୍ବ ପ୍ରଥମ ଉଲ୍ଲେଖ ଦୃଷ୍ଟିଗୋଚର ହୁଏ ତୈତ୍ତିରୀୟ ଅରଣ୍ୟକରେ । ଏଠାରେ ଦୁର୍ଗାଙ୍କୁ ତପଃ ପ୍ରଜ୍ୱଳିତ ଦିବ୍ୟ ଶକ୍ତିର ଆଧାର ରୂପେ ବର୍ଣ୍ଣନା କରାଯାଇଛି । ମା’ ଦୁର୍ଗାଙ୍କୁ ମାତୃ, ଶକ୍ତି, ଭକ୍ତି, ସ୍ମୃତି, ତୁଷ୍ଟି, ଛାୟା, କାୟା, ମାୟା ଆଦି ରୂପରେ ବର୍ଣ୍ଣନା କରାଯାଇଛି – ଯା’ଦେବୀ ସର୍ବଭୂତେଷୁ ଶବ୍ଦର ପ୍ରାରମ୍ଭରୁ । ମାତ୍ର ସ୍କନ୍ଦପୁରାଣରେ ଉଲ୍ଲେଖ ଅଛି, ମା’ ଦୁର୍ଗାଙ୍କୁ ଅସୁରଙ୍କ ନିଧନ ପାଇଁ ବିଶ୍ୱ ବକ୍ଷରୁ ପାପଭାରର ଲାଘବ ପାଇଁ ସୁଖ, ଶାନ୍ତି ସଂସ୍ଥାପନ ପାଇଁ ଦେବତାମାନେ ନିଜ ନିଜର ଶକ୍ତିକୁ ଏକତ୍ରିତ କରି ସୃଷ୍ଟି କରିଛନ୍ତି ।

ମାର୍କଣ୍ଡେୟ ପୁରାଣରେ ଦେବୀ ଚଣ୍ଡିକା ଭବିଷ୍ୟତରେ ଦୁର୍ଗା ଅସୁରକୁ ବଧ କରିଥିବା ହେତୁ ମା’ ଦୁର୍ଗା ରୂପରେ ପୂଜିତ ହେବାକୁ ପ୍ରତିଶ୍ରୁତି ପ୍ରଦାନ କରିଥିବା କଥା ଉଲ୍ଲେଖ ଅଛି । ଋଗ୍ ବେଦରେ ସର୍ବପ୍ରଥମେ ଦେବୀ ଶକ୍ତିକୁ ଅଭିନ୍ନ ରୂପେ ଅନୁଭବ କରାଯାଇଛି । ମା’ ନିଜର ଶକ୍ତିକୁ ପ୍ରକାଶ କରିବାକୁ ଯାଇ କହିଛନ୍ତି, ମୁଁ ହେଉଛି ସଚ୍ଚିଦାନନ୍ଦଙ୍କ ଆତ୍ମା ସ୍ୱରୂପ । ରୁଦ୍ର, ବସୁ, ଆଦିତ୍ୟ ଓ ବିଶ୍ୱଦେବଙ୍କ ରୂପେ ସର୍ବତ୍ର ବିଚରଣ କରେ ଓ ମିତ୍ର, ବରୁଣ, ଇନ୍ଦ୍ର, ଅଗ୍ନି ଏବଂ ଅଶ୍ୱିନୀ କୁମାର ଦ୍ୱୟଙ୍କୁ ହୃଦୟରେ ଧାରଣ କରେ । ମୁଁ ହେଉଛି ସୃଷ୍ଟି, ସ୍ଥିତି ଓ

ପ୍ରଳୟକାରିଣୀ ଜଗଦିଶ୍ୱରୀ, ହିରଣ୍ୟଗର୍ଭା ତଥା ଜ୍ଞାନ, ବିଦ୍ୟା, ଧନଦାତ୍ରୀ, ଆତ୍ମଜ୍ଞାନ ସ୍ୱରୂପ, ବହୁଭାବରେ, ବହୁ ରୂପରେ ଅବସ୍ଥିତା। ଆସୁରିକ ପ୍ରବୃତ୍ତିର ବିନାଶ କାରିଣୀ, ଅନ୍ୟାୟ, ଅତ୍ୟାଚାରର ବିଧ୍ୱଂସକାରିଣୀ।

ଆମର ଅଠରଟି ପୁରାଣ, ଉପପୁରାଣ, ଶ୍ରୀମଦ୍ ଭାଗବତ୍, ମାର୍କଣ୍ଡେୟ ପୁରାଣ, ଦେବୀ ପୁରାଣ, ଚଣ୍ଡୀ ପୁରାଣ, ବୃହଦା ନନ୍ଦକେଶର ପୁରାଣ ଓ କାଳିକା ପୁରାଣରେ ମା' ଦୁର୍ଗାଙ୍କ ସ୍ତୁତିରେ ଶତମୁଖର।

ତନ୍ତ୍ରରେ ମା' ଦୁର୍ଗାଙ୍କୁ ଏକ ଅଖଣ୍ଡ ମହାଶକ୍ତି, ବ୍ରହ୍ମମୟୀ ବ୍ରାହ୍ମୀ, ବିଷ୍ଣୁମୟୀ, ବୈଷ୍ଣବୀ, ଶମ୍ଭୁମୟୀ - ଶାମ୍ଭମୟୀ ଭାବେ ଚିତ୍ରଣ କରାଯାଇଛି। ଦୁର୍ଗାଙ୍କର ଉପାସନା ବେଦ, ଉପନିଷଦ, ପୁରାଣ, ତନ୍ତ୍ରର ଧର୍ମ ଧାରଣାରେ ପ୍ରଭାବିତ ଓ ପରିପୁଷ୍ଟ। ଦେବୀ ଦୁର୍ଗା ରାବଣର ଦଶମସ୍ତକ ହରଣ କରିବା ସହିତ ଦେବତାମାନଙ୍କର ଦୁର୍ଦ୍ଦଶା ହରଣ କରିଥିବାରୁ ଦେବୀଙ୍କୁ 'ଦଶହରା' ବା 'ଦଶାହରା' ବୋଲି କୁହାଯାଇଛି।

ଇତିହାସ ପୃଷ୍ଠାଗୁଡ଼ିକର ଉନ୍ମୋଚନରୁ ଜାଣିବାକୁ ମିଳେ ଯେ, ଉତ୍ତର ଭାରତରେ ପ୍ରଥମେ ବୈଷ୍ଣବୀ, ବ୍ରହ୍ମାଣୀ, ରୁଦ୍ରାଣୀ, ଇନ୍ଦ୍ରାଣୀ, କୌମାରୀ, ବାରାହୀ ଓ ନାରସିଂହୀ ନାମରେ ସପ୍ତ ମାତୃକାଙ୍କ ପୂଜା ବିଧିବଦ୍ଧ ଭାବେ ଗୁପ୍ତ ଶାସନ ଅବଧିରେ ଆରମ୍ଭ ହୋଇଥିଲା। ଉତ୍କଳ ପ୍ରାନ୍ତରେ ଭୌମ ବଂଶୀୟ ରାଜାମାନଙ୍କର ଶାସନ କାଳରେ ଶକ୍ତି ସ୍ୱରୂପିଣୀ ଦୁର୍ଗା ପୂଜାର ବ୍ୟାପକ ପ୍ରସାର ହୋଇଥିଲା। ଏହି ସମୟରେ ପ୍ରାଚୀ, ଚିତ୍ରୋତ୍ପଳା ଓ ବ୍ରାହ୍ମଣୀ ନଦୀର ଅବବାହିକାରେ ଏବଂ ଓଡ଼ିଶାର ଅନ୍ୟାନ୍ୟ ପ୍ରାନ୍ତରରେ ବାରାହୀ, ଭୈରବୀ, ମନସା, କାଳୀ, ପର୍ଣ୍ଣଶବରୀ, ତାରା, ଅମ୍ବା, ଅମ୍ବାଳିକା ପ୍ରଭୃତି ଶାକ୍ତ ଦେବୀଙ୍କ ସହିତ ଦୁଇଭୁଜା, ଚତୁର୍ଭୁଜା, ଷଡ଼ଭୁଜା, ଅଷ୍ଟଭୁଜା, ଦଶଭୁଜା, ଷୋଡ଼ଶ ଭୁଜା ମହିଷାମର୍ଦ୍ଦିନୀ ଦୁର୍ଗା ଉପାସନା ଆରମ୍ଭ କରାଯାଇଥିଲା। ଭୌମରାଣୀ ତ୍ରିଭୁବନ ମହାଦେବୀ ଓ ଦଣ୍ଡୀ ମହାଦେବୀଙ୍କ ପ୍ରଶସ୍ତିରେ ବହୁ ଅଭିଲେଖାରେ ଚାମୁଣ୍ଡା ତ୍ରିଭୁବନ ମହାଦେବୀଙ୍କ ଓ ଦଣ୍ଡୀ ମହାଦେବୀଙ୍କ ପ୍ରଶସ୍ତିରେ ବହୁ ଅଭିଲେଖାରେ ଚାମୁଣ୍ଡା କାତ୍ୟାୟିନୀଙ୍କ ସ୍ତୁତି ଗାନ କରାଯାଇଛି। ସର୍ବପ୍ରଥମେ ଦ୍ୱିଭୁଜା ଦୁର୍ଗାଙ୍କ ପୂଜା ଆରମ୍ଭ କରାଯାଇଥିଲା।

ସୋମବଂଶୀ ରାଜାମାନେ ମଧ୍ୟ ଶାକ୍ତ ଉପାସକ ଥିଲେ। ପରବର୍ତ୍ତୀ ଗଙ୍ଗବଂଶୀୟ ରାଜାମାନେ ମୁଖ୍ୟତଃ ବୈଷ୍ଣବ ଧର୍ମାବଲମ୍ବୀ ଥିଲେ ହେଁ ଶାକ୍ତ ପୂଜା ବିରୋଧୀ ନ ଥିଲେ। ଚୋଡ଼ଗଙ୍ଗଦେବଙ୍କ ରାଜତ୍ୱ କାଳରେ ନିର୍ମିତ ଜଗନ୍ନାଥ ମନ୍ଦିରରେ ସୁଭଦ୍ରାଦେବୀ, ଦୁର୍ଗା, କାତ୍ୟାୟନୀ ରୂପେ ପୂଜିତା ହେଉଥିଲେ। ମନ୍ଦିର ବେଢ଼ା ମଧ୍ୟରେ ମା' ବିମଳା ହେଉଛନ୍ତି ଜଗନ୍ନାଥଙ୍କର ଭୈରବୀ ମୂର୍ତ୍ତି। ଏଠାରେ ଅନୁଷ୍ଠିତ ହେଉଥିବା ଷୋଳ ଦିବସୀୟ ପୂଜାରେ ବିମଳାଙ୍କୁ ଏଗାର ପ୍ରକାର ଭିନ୍ନ ବେଶ କରାଯାଇଥାଏ। ସେଗୁଡ଼ିକ ହେଉଛନ୍ତି- (୧) ବନଦୁର୍ଗା (୨) ଭୁବନେଶ୍ୱରୀ (୩) ନାରାୟଣୀ (୪) ଶ୍ରୀ ମଙ୍ଗଳା, (୫) ଜୟଦୁର୍ଗା (୬) ଉଗ୍ରତାରା (୭) ମାତଙ୍ଗିନୀ (୮) ଦଶଭୁଜା (୯) ରାଜ ରାଜେଶ୍ୱରୀ (୧୦) ହରଚଣ୍ଡୀ (୧୧) ସିଂହବାହିନୀ ଇତ୍ୟାଦି । ଅନ୍ୟ କେତେକ ପୁରାଣରେ ଷୋଡ଼ଶ ମାତୃକା, ଅଷ୍ଟମାତୃକା, ଏକାଦଶ ମାତୃକାଙ୍କ ବିଷୟରେ ବର୍ଣ୍ଣନା କରାଯାଇଥିବା ଦେଖିବାକୁ ମିଳେ।

ଦୁର୍ଗା ପ୍ରକୃତି ସହିତ ସମ୍ବନ୍ଧିତ। ଏଣୁ ବିଭିନ୍ନ ପୁରାଣ ଓ କାହାଣୀମାନ ତାଙ୍କୁ ହିମାଳୟ ଓ ବିନ୍ଧ୍ୟପର୍ବତ ସହିତ ସଂଯୋଗ କରିଛନ୍ତି ଏବଂ ତାଙ୍କୁ ବିନ୍ଧ୍ୟବାସିନୀ ବୋଲି ସମ୍ବୋଧନ ମଧ୍ୟ କରିଛନ୍ତି। ଦୁର୍ଗା ବିଭିନ୍ନ ଦୁର୍ଗମାନଙ୍କର ରକ୍ଷାକର୍ତ୍ତ୍ରୀ ହୋଇଥିବାରୁ ତାଙ୍କୁ ବିଶେଷ ଭାବେ ଦୁର୍ଗା ନାମରେ ପରିଚିତ କରାଯାଇଛି। ତାଙ୍କୁ ମଧ୍ୟ ବିଦ୍ୟା ଦେବୀ ରୂପେ ପୂଜା କରାଯାଇଥାଏ। ସେ ହେଉଛନ୍ତି ବିଭିନ୍ନ ଅସ୍ତ୍ର, ଶସ୍ତ୍ର ଧାରିଣୀ, ଦାନବ ସଂହାରିଣୀ ଦେବୀ। ଶିଳ୍ପୀ କାରିଗରମାନେ ଦୁର୍ଗାପୂଜା, ଦଶହରା ଉତ୍ସବ ସମୟରେ ସେମାନଙ୍କ ବ୍ୟବହୃତ ଅସ୍ତ୍ରଶସ୍ତ୍ରଗୁଡ଼ିକ ଧୋଇ, ଶୁଖେଇ ନବ ବସ୍ତ୍ର ଉପରେ ସେଗୁଡ଼ିକୁ ସଜାଇ, ଦୁର୍ଗାଙ୍କୁ ସ୍ମରଣ କରି ପୂଜା, ନୈବେଦ୍ୟ ଆଦି ସମର୍ପଣ କରି ସମଗ୍ର ବର୍ଷ ପାଇଁ ମା' ଦୁର୍ଗା ସେମାନଙ୍କୁ ସହାୟ ହୁଅନ୍ତୁ, ଶୁଭ ଦୃଷ୍ଟିରେ ଦେଖନ୍ତୁ ଓ ତାଙ୍କର ବାର୍ଷିକ ଆୟ ଶ୍ରୋତର ଅଭିବୃଦ୍ଧି କରନ୍ତୁ ବୋଲି ନିବେଦନ କରନ୍ତି ଏବଂ ମା'ଙ୍କ ଶ୍ରୀଚରଣ ତଳେ ଆଶ୍ରୟ ଭିକ୍ଷା କରିଥାନ୍ତି।

ରାଜପୁତମାନେ ନିଜ ନିଜର ଗଡ଼ଦେବୀ ଦୁର୍ଗାଙ୍କୁ ପୂଜାର୍ଚ୍ଚନା କରିଥାନ୍ତି ଓ ଯୁଦ୍ଧରେ ବିଜୟଲାଭ ପାଇଁ ମା'ଙ୍କ

ଚରଣରେ ଶରଣ ମାଗି ତାଙ୍କର ଆଶୀର୍ବାଦ ଲାଭ ପାଇଁ ପ୍ରାର୍ଥନା କରିଥାନ୍ତି । ଦୁର୍ଗା ହେଉଛନ୍ତି ରାଷ୍ଟ୍ରଶକ୍ତିର ପ୍ରତିରୂପ । ଏହି ଶକ୍ତିରେ ବିଦ୍ୟମାନ ବିତ୍ତନଳ (ଲକ୍ଷ୍ମୀ) ଜ୍ଞାନନଳ (ସରସ୍ୱତୀ) ବୁଦ୍ଧିନଳ (ଗଣେଶ), ପ୍ରତିରକ୍ଷାନଳ (କାର୍ତ୍ତିକେୟ) ହୋଇଥିବାରୁ ମୃଣ୍ମୟ ଦୁର୍ଗା ମେଢ଼ରେ ଲକ୍ଷ୍ମୀ, ସରସ୍ୱତୀ, ଗଣେଶ ଓ କାର୍ତ୍ତିକେୟ ସ୍ଥାନ ପାଇଥାନ୍ତି । ମା'ଙ୍କ ଦେବୀ ମେଢ଼ରେ ମହିଷାସୁର ସ୍ଥାନ ପାଇଥାଏ । ମହିଷାସୁର ହେଉଛି ରାଷ୍ଟ୍ର ବିରୋଧୀ ପ୍ରତୀକ । ଏହି ଶକ୍ତିକୁ ପ୍ରତିହତ କରିବା ପାଇଁ ପ୍ରତିବର୍ଷ ମା' ଦୁର୍ଗାଙ୍କର ମୃଣ୍ମୟ ମୂର୍ତ୍ତିକୁ ପୂଜା, ଆରାଧନା ଓ ପ୍ରାର୍ଥନା କରାଯାଇଥାଏ ।

ବଙ୍ଗପ୍ରଦେଶରେ ଘରେ, ବାହାରେ ପୂଜା ପେଣ୍ଡାଲମାନଙ୍କରେ ମା'ଦୁର୍ଗା ସ୍ଥାପନ କରି ଓ ପାର୍ଶ୍ୱଦେବତାମାନଙ୍କର ମୃଣ୍ମୟ ମୂର୍ତ୍ତିମାନଙ୍କୁ ସୁସଜ୍ଜିତ କରି, ମହାଆଡ଼ମ୍ବର ସହକାରେ ପୂଜାର୍ଚ୍ଚନା ଆଶ୍ୱିନ ମାସ ଶୁକ୍ଳପକ୍ଷ ଷଷ୍ଠୀଠାରୁ ନବମୀ ପର୍ଯ୍ୟନ୍ତ ପୂଜାର୍ଚ୍ଚନା କରଯାଇ, ଦଶମୀ ଦିନ ତାଙ୍କୁ ବିସର୍ଜନ କରାଯାଇଥାଏ । ଭକ୍ତମାନେ ଏଣୁ ମେଢ଼ରେ ଦୁର୍ଗା ଲକ୍ଷ୍ମୀ, ସରସ୍ୱତୀ, ଗଣେଶ, କାର୍ତ୍ତିକେୟ ଆଦି ଦେବ ଦେବୀଙ୍କୁ ପୂଜାର୍ଚ୍ଚନା କରି ସେମାନଙ୍କୁ ରାକ୍ଷସ ପ୍ରଭାବରୁ ମୁକ୍ତ କରି, ଶୁଭ, ଧନ, ଐଶ୍ୱର୍ଯ୍ୟ ବିଦ୍ୟା ଆଦି ପ୍ରଦାନ ପାଇଁ ପ୍ରାର୍ଥନା କରିଥାନ୍ତି । ରୋଗ ବ୍ୟାଧି, ଦୁରାରୋଗ ରାଗ, ଦ୍ୱେଷର କୁପ୍ରଭାବରୁ ରକ୍ଷା ପାଇଁ ନିବେଦନ କରିଥାନ୍ତି । ଭକ୍ତିପୂତ ପ୍ରାଣରେ ଆତ୍ମ ନିବେଦନ କରିଥାନ୍ତି । ଦେବୀ ଦୁର୍ଗା ଶକ୍ତି, ମାୟା ଓ ପ୍ରକୃତି ଭାବରେ ପରିକଳ୍ପିତ । ସେ ସୃଷ୍ଟି କ୍ରିୟା ସହିତ ଜୀବ, ଜନ୍ତୁମାନଙ୍କୁ ପ୍ରଦାନ କରିଥାନ୍ତି ଅଲୌକିକ ଶକ୍ତି, ଦିବ୍ୟ ଭାବଧାରା ଓ ଦିଗ୍‌ଦର୍ଶନ । ମା' ହେଉଅଛି ପାର୍ଥିବ ଜଗତର ଚେତନାର ମୂଳପିଣ୍ଡ । ସେ ହେଉଛନ୍ତି ପାର୍ଥିବ ଜଗତର ନବ ଚେତନ, ଜୀବନ ସଂଗ୍ରାମର ହିତକାରିଣୀ, ମଙ୍ଗଳଦାୟିନୀ ଓ ଅନନ୍ତ କାଳ ପାଇଁ ଅଭୟ ବର ଦାୟିନୀ । ସେ ନାନା ରୂପରେ, ନାନା ଭାବରେ ଜଗତ ପୃଷ୍ଠାରେ ବିରାଜିତା ଓ କ୍ରିୟା ଶକ୍ତିର ସଞ୍ଚାଳିକା ।

ଦଶହରାର ଅନ୍ୟ ନାମ ହେଉଛି ବିଜୟା ଦଶମୀ । ଏହି ପବିତ୍ର ଦିବସରେ ମର୍ଯ୍ୟାଦା ପୁରୁଷ ଶ୍ରୀରାମ ଲଙ୍କା ବିଜୟ ପରେ ସୀତାଙ୍କୁ ସାଥିରେ ଧରି ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ କରିଥିଲେ ଓ ତାଙ୍କ ରାଜ୍ୟର ସମସ୍ତ ପ୍ରଜା ନିଜ ନିଜ ଗୃହରେ ଦୀପ ପ୍ରଜ୍ୱଳନ କରି ଶ୍ରୀରାମଚନ୍ଦ୍ର ଓ ପତ୍ନୀ ସତୀ ସୀତାଙ୍କୁ ସ୍ୱାଗତ କରିଥିଲେ । ସେହିଦିନଠାରୁ ଏହି ଦିବସଟି ଭାରତରେ ସର୍ବତ୍ର ବିଜୟା ଦଶମୀ ନାମରେ ଅତି ହର୍ଷୋଲ୍ଲାସରେ ହିନ୍ଦୁମାନେ ପାଳନ କରିଥାନ୍ତି । ଉକ୍ତ ଦିବସରେ ମା' ଦୁର୍ଗାଙ୍କର ଆଶୀର୍ବାଦ ଭିକ୍ଷା କରିଥାନ୍ତି ଓ ରାବଣ ପୋଡ଼ି ଉତ୍ସବ ରାତ୍ରିକାଳରେ ଅନୁଷ୍ଠିତ କରି ଆନନ୍ଦ ମନାଇଥାନ୍ତି ।

ଶାରଦୀୟ ଦୁର୍ଗାପୂଜା ଅବସରରେ ଓଡ଼ିଶାର ବିଭିନ୍ନ ପୂଜାପୀଠମାନଙ୍କରେ ଆଶ୍ୱିନ ଶୁକ୍ଳପକ୍ଷ ଷଷ୍ଠୀଦିନଠାରୁ ଦଶମୀ ପର୍ଯ୍ୟନ୍ତ ମୃଣ୍ମୟୀ ଦେବୀଙ୍କଠାରେ ବିଲ୍ୱାଧିବାସ, ନବପତ୍ରିକା, ସନ୍ଧି, ଅପରାଜିତା ଓ କୁମାରୀ ପୂଜା ଆଦି ପୂଜାନୁଷ୍ଠାନମାନ ଅନୁଷ୍ଠିତ ହୋଇଥାଏ । ଷଷ୍ଠୀ ଦିନ ରାତ୍ରକାଳରେ ଦେବୀଙ୍କର ଅକାଳବୋଧନ ବା ଆମନ୍ତ୍ରଣାଧିବାସ ବିଲ୍ୱବୃକ୍ଷ ସମୀପରେ ସମ୍ପନ୍ନ କରାଯାଇଥାଏ । ନବ ପତ୍ରିକା ପୂଜାରେ ନଅ ପ୍ରକାର ଉଦ୍ଭିଦ ମଧ୍ୟରେ ବିଲ୍ୱଶାଖାକୁ ରଖାଯାଏ । ଯୁଗଳ ବିଲ୍ୱଫଳ ଯୁଗଳ ନବଫଳ ନବ ପତ୍ରିକା ମଧ୍ୟରେ ସଂଯୁକ୍ତ କରି ଓଁ ନମଃ ଶିବାୟ କହି ବିଲ୍ୱପତ୍ର ଶାଖାମାନଙ୍କୁ ପୂଜା କରାଯାଏ ।

ନବପତ୍ରିକା ପୂଜାପରି ସନ୍ଧି ପୂଜା ଦୁର୍ଗା ମଣ୍ଡପମାନଙ୍କରେ ଅନୁଷ୍ଠିତ ହୋଇଥାଏ । ଏହି ସନ୍ଧି ପୂଜା ଅଷ୍ଟମୀ ନବମୀ ତିଥିରେ ସଂଯୋଗ କାଳରେ ଅନୁଷ୍ଠିତ ହୋଇଥାଏ । ଦେବୀ ଚଣ୍ଡିକା ସନ୍ଧିପୂଜା ସମୟରେ ଆବିର୍ଭୂତା ହୋଇଥାନ୍ତି ଓ ରାବଣକୁ ବଧ କଲାପରି ଦୁଷ୍ଟ ଜନଙ୍କ ସଂହାର କରିଥାନ୍ତି । ବିଶ୍ୱକୁ ପାପଭାରାରୁ ମୁକ୍ତ କରାଇଥାନ୍ତି ।

ବୃହର୍ଦ୍ଧମ ପୁରାଣରେ ବର୍ଣ୍ଣନା ଅଛି, ଦେବତାମାନଙ୍କ ସ୍ତୁତିରେ ସନ୍ତୁଷ୍ଟ ହୋଇ ଦୁର୍ଗା ଦେବଗଣଙ୍କ ସମ୍ମୁଖରେ ଦୁର୍ଗା କନ୍ୟା ରୂପରେ ଆବିର୍ଭୂତା ହୋଇଥାନ୍ତି । ଏଣୁ ଦେବୀ ପୁରାଣ ବିଧି ଅନୁସାରେ ୯ ଜଣ କୁମାରୀଙ୍କୁ ପୂଜା କରାଯାଇ ସୁମିଷ୍ଟ ଖାଦ୍ୟାନ୍ନ ବିତରଣ କରାଯାଇଥାଏ ଓ ଦକ୍ଷିଣା ପ୍ରଦାନ କରାଯାଇଥାଏ । ଦେବୀ ଦୁର୍ଗା କେବଳ ସୃଷ୍ଟିର ପାଳନକର୍ତ୍ତ୍ରୀ ବା ଦୁଷ୍ଟ ସଂହାରିଣୀ ନୁହନ୍ତି, ସେ ସୃଷ୍ଟିର ମଙ୍ଗଳକାରିଣୀ । ଶୋଭାମୟ ସୁନ୍ଦର ସୃଷ୍ଟିର ଶାନ୍ତି ପ୍ରଦାୟିନୀ, ଅଭୟବର ଦାୟିନୀ ।

ଏବର ବସ୍ତୁବାଦୀ ନାସ୍ତିକମାନଙ୍କର ହୃଦୟରେ ପୂଜା ମାଧ୍ୟମରେ ଭକ୍ତଭାବନା ସୃଷ୍ଟି କରିବା ଉଦ୍ଦେଶ୍ୟରେ ପୂର୍ଣ୍ଣ ପବିତ୍ର

ନିର୍ଯ୍ୟାସ, ପ୍ରେମଭାବ, ସତ୍ୟ, ଧର୍ମ-ଦୟା, କ୍ଷମା ବାଣୀର ଚିନ୍ତନ, ସୁଖ ସମ୍ଭୋଗର ମହକ, ଶାନ୍ତି, ମୈତ୍ରୀ ଭ୍ରାତୃଭାବ, ପ୍ରୀତିର ନବ କଲ୍ଲୋଳ ଗଙ୍ଗା ଯମୁନା, ସରସ୍ୱତୀର ତ୍ରିବେଣୀ ସଂଗମ ହିଲ୍ଲୋଳ ସୃଷ୍ଟି କରିବା ପାଇଁ ଅଭିପ୍ରେତ।

ମା'ଦୁର୍ଗା ଜଗତ୍‌ଜନନୀ, କାଳୀ, ଭୈରବୀ, ଶିବା ଜଗଦମ୍ବା ବିଶ୍ୱ ବକ୍ଷକୁ ଅବତରଣ କରିଛନ୍ତି, ବିଶ୍ୱଜନ ପ୍ରାଣୀଙ୍କର ମଙ୍ଗଳ ପାଇଁ, କଲ୍ୟାଣ ସାଧନ ପାଇଁ। ଦୁଃଖ କଷ୍ଟ ଜରା ବ୍ୟାଧିଗ୍ରସ୍ତ ମାନବ ସମାଜର କଷ୍ଟ ଦୂର କରିବା ପାଇଁ । ସମାଜକୁ ସଦ୍‌ବୁଦ୍ଧି, ସଦ୍‌ଜ୍ଞାନ ଓ ସଦ୍‌ପ୍ରେରଣା ପ୍ରଦାନ କରିବା ପାଇଁ ଆସୁରିକ ପ୍ରବୃତ୍ତିକୁ ଦମନ କରିବାରେ ସୁଖ, ଶାନ୍ତି, ଆନନ୍ଦ ପ୍ରଦାନ କରିବା ପାଇଁ। ଏ ଶୁଭ ଅବସରରେ ମା'ଙ୍କ ଚରଣାଗତ ହୋଇ ସେ ଯେପରି ଚଣ୍ଡାସୁର, ମହିଷାସୁର ଇତ୍ୟାଦି ଅସୁରମାନଙ୍କୁ ନିଧନ ପାଇଁ ଧରା ବକ୍ଷରେ ମାନବ ସମାଜକୁ ଶାନ୍ତି, ସୁଖ ପ୍ରଦାନ ପାଇଁ ନିଜେ ନାରୀ ହୋଇ ଖଡ୍‌ଗ, ଖର୍ପର, ଶାର୍ଦ୍ଦୁଳ ଇତ୍ୟାଦି ଅସ୍ତ୍ରଧାରଣ କରିବାକୁ ବିବଶ ହୋଇଥିଲେ ଧରାପୃଷ୍ଠରୁ ଅନ୍ୟାୟ ଅତ୍ୟାଚାର ଦୂରକରିବା ପାଇଁ । ଏଥିପାଇଁ ଆମକୁ ମାନବିକତାର କଷଟିରେ ପରୀକ୍ଷା କରିନେବାକୁ ହେବ। ଶୁଦ୍ଧ ପବିତ୍ର ମାନବରେ ପରିବର୍ତ୍ତିତ ହେବାକୁ ସଂକଳ୍ପବଦ୍ଧ ହୋଇ ଦେଶାଦଶର କଲ୍ୟାଣ ସାଧନ କରିବାକୁ ହେବା ହିଁ ହେଉ ଆମର ଧର୍ମ।

ଆଦିମାତା କଲୋନୀ
ମଞ୍ଚେଶ୍ୱର ରେଳବାଇ କଲୋନୀ
ଭୁବନେଶ୍ୱର-୭୫୧୦୧୭

# ଆଶ୍ୱିନର ଅଭିନନ୍ଦନ

**ଶରତ କୁମାରୀ ମିଶ୍ର**

ଆଶ୍ୱିନ ହେ କର ଶୁଭାନୁଗମନ
ଚାହିଁଛି ମୁଁ ତୁମ ପଥ
ତୁମ ପଛେପଛେ ଦେବୀ ମା' ଆସିବେ
ପହଞ୍ଚି ଯିବେ ତ୍ୱରିତ
ସିଂହ ବାହାନରେ ଆସିବେ ଜନନୀ
ଜଗତ ଉଦ୍ଧାର ପାଇଁ
ଜନଗଣଙ୍କର ଦୁର୍ଗତି ନାଶିବେ
ଦୁର୍ଗା ନାମ ଛନ୍ତି ବହି
କାଶତଣ୍ଡୀ ଫୁଲେ ନଈ ପଠା ବିଲ
ହୋଇ ଗଲାଣି ଶୋଭିତ
ଶୀତୁଆ ସମୀର ତନୁ ଭଲୁସାଏ
ମନରେ ଆନନ୍ଦ ଭରେ
ମାଆଙ୍କର ପୂଜା ଲାଗିଯାଏ ଯେଣୁ
ଏଇ ଶୁଭ ମାସଟିରେ



ଶୁଭ୍ର ଶରତର କୋମଳ ପରଶେ
ଧରଣୀ ପୁଷ୍ପେ ମଣ୍ଡିତ
ମନଲୋଭା କେତେ ତୋରଣ ଶୋଭଇ
ପୂଜା ମଣ୍ଡପ ସମୀପେ
ସୁସଜ୍ଜିତ ମେଢ ଝଟକି ଉଠଇ
ବିଜୁଳିବତୀ ଆଲୋକେ
ଶଙ୍ଖ, ଘଣ୍ଟ ଧ୍ୱନି, ହୁଳହୁଳି ଶବ୍ଦେ
ମଣ୍ଡପଟି ମୁଖରିତ
ମନ୍ତ୍ରପାଠ ସଙ୍ଗେ ଚଣ୍ଡିପାଠ କରି
ସୁଜ୍ଞାନୀ ପଣ୍ଡିତ ଗଣ
ଷୋଡଶୋପଚାରେ ପୂଜା କରିଥାନ୍ତି
ସ୍ତବ, ସ୍ତୁତି ସେ କରିଣ ।

ଏନ୍- ୫/୧୨୮
ଆଇଆରସି ଭିଲେଜ୍, ଭୁବନେଶ୍ୱର

# ଓଡ଼ିଆ ସଂସ୍କୃତିରେ ଦୁର୍ଗାପୂଜା

**ନିରଞ୍ଜନ ପ୍ରଧାନ**

ଓଡିଶାରେ ଦୁର୍ଗାପୂଜାର ପରମ୍ପରା ବହୁ ପୁରାତନ । ଓଡିଶା ମୁଖ୍ୟତଃ ଶକ୍ତିପ୍ରଧାନ ଅଞ୍ଚଳ । ଜନବସତି ଅଞ୍ଚଳଠାରୁ ମାଳ ଅଞ୍ଚଳ ଯାଏଁ ଶକ୍ତିଙ୍କର ଆରାଧନା କରାଯାଏ । ପ୍ରଥମେ ଦେବୀ ଏଠାରେ ସ୍ଥାୟୀ ବାସିନ୍ଦା ଆଦିବାସୀଙ୍କ ମଧ୍ୟରେ ସୀମାବଦ୍ଧ ଥିଲେ । ଏହି ଆଦିବାସୀଙ୍କଠାରୁ ଆର୍ଯ୍ୟମାନେ ଦେବୀପୂଜା ଗ୍ରହଣ କରିଥିଲେ । ପ୍ରତ୍ନତାତ୍ତ୍ୱିକ ଗବେଷଣାରେ ପୂର୍ବେ ଓଡିଶା ବୌଦ୍ଧମାନଙ୍କର ଭିତ୍ତିଭୂମି ଥିଲା । ବୌଦ୍ଧମାନଙ୍କର ପର୍ଣ୍ଣ ଶବରୀ ପରବର୍ତ୍ତୀ କାଳରେ ଦୁର୍ଗାଭାବେ ଉପାସିତ ହେଲେ । ସମ୍ଭବତଃ ତତ୍‌କାଳୀନ ଓଡିଶାରେ ପର୍ଣ୍ଣଶବରୀ ବା ପତରସଉରୁଣୀ ଉପାସନା ପ୍ରଥମେ ଆରମ୍ଭ ହୋଇଥିଲା । ଖ୍ରୀଷ୍ଟିୟ ୪ର୍ଥ / ୫ମ ଶତାବ୍ଦୀରେ ପଶ୍ଚିମ ଓଡିଶାରେ ଶକ୍ତିଙ୍କର ରୂପ ହେଉଛି ସ୍ତମ୍ଭେଶ୍ୱରୀ କାଷ୍ଠ ଖମ୍ବ ଦେବୀ । ଇଏ ଓଡିଶାର ପ୍ରାଚୀନତମ ଦେବୀ ଉପାସନାର ଶୀର୍ଷସ୍ଥାନରେ ଥିଲେ । ବିଶେଷ କରି ସ୍ତମ୍ଭେଶ୍ୱରୀ ଓଡିଶାର ସମ୍ବଲପୁର, ବଲାଙ୍ଗୀର, କଳାହାଣ୍ଡି, ତଥା ତାଳଚେର ଓ ଢେଙ୍କାନାଳ ଜିଲ୍ଲାରେ ଏକ ଶକ୍ତି ଦେବୀ ଭାବେ ଖ୍ୟାତିଲାଭ କରିଥିଲେ । ଏହା ପ୍ରମାଣ କରାଯାଏ ଯେ, ଶ୍ରୀମନ୍ଦିରର ରତ୍ନ ସିଂହାସନ ଦେବୀ ସୁଭଦ୍ରା ହିଁ ଏହି ସ୍ତମ୍ଭେଶ୍ୱରୀଙ୍କ ପ୍ରତୀକ ବିଗ୍ରହ । ବନଜାତିମାନଙ୍କଠାରୁ ହିଁ ଦେବୀ ଦୁର୍ଗାଙ୍କର ଉପାସନା ଏହି ତନ୍ତ୍ରପୀଠ ଓଡିଶାରେ ପ୍ରଚଳିତ ।



ଦୁର୍ଗାପୂଜା ସମୟରେ ନବପତ୍ରିକା ବରଣ ପ୍ରଚଳନ ଦେବୀଙ୍କୁ ପର୍ଣ୍ଣ ବୋଲି ମନରେ ଭାବର ଉଦୟ ହୁଏ । ଏହି ପର୍ଣ୍ଣଦେବୀଙ୍କ ସ୍ୱରୂପ ଦୁର୍ଗାଦେବୀଙ୍କ ସ୍ୱରୂପ ଭଳି ।

ବର୍ଷରେ ଦୁଇଥର ଦେବୀ ଦୁର୍ଗାଙ୍କର ମହାପୂଜା ଅନୁଷ୍ଠିତ ହୋଇଥାଏ । ଥରେ ବସନ୍ତ କାଳରେ ବାସନ୍ତୀ ଦୁର୍ଗାପୂଜା ଓ ଶରତକାଳରେ ଶାରଦୀୟ ଦୁର୍ଗା ପୂଜା । ଶାରଦୀୟ ଦୁର୍ଗାପୂଜା ପ୍ରଭୁ ଶ୍ରୀରାମଚନ୍ଦ୍ର କରିଥିଲେ ବୋଲି ପ୍ରବାଦ ଅଛି । ରାମଚନ୍ଦ୍ର ସୂର୍ଯ୍ୟ ପୂଜା କରିଥିଲେ । ସୂର୍ଯ୍ୟପୂଜା କ୍ରମଶଃ ନବଗ୍ରହ ପୂଜାରେ ପରିଣତ ହେଲା ଓ ରାଜା ସୁରଥଙ୍କ ସମୟରେ ବାସନ୍ତୀ ଦୁର୍ଗାପୂଜା ରୂପରେ ନାମିତ ହେଲା ।

ଦୁର୍ଗାପୂଜା ଓଡିଶାର ଅନ୍ୟତମ ମୁଖ୍ୟ ପର୍ବ । ଓଡିଶାର ପ୍ରତି ପୁରପଲ୍ଲୀ ଓ ନଗରମାନଙ୍କରେ ଏହି ଦଶହରା ଦୁର୍ଗାପୂଜା ମହାସମାରୋହରେ ପାଳିତ ହୋଇଥାଏ । ଆଶ୍ୱିନ କୃଷ୍ଣାଷ୍ଟମୀଠାରୁ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ଓଡିଶାର ବିଭିନ୍ନ ଦେବୀପୀଠମାନଙ୍କରେ ଏହି ମହାପୂଜା ଅନୁଷ୍ଠିତ ହୋଇଥାଏ ।

ଶ୍ରୀକ୍ଷେତ୍ରର କ୍ଷେତ୍ରଶ୍ୱରୀ ମା' ବିମଳା ଓ ଯାଜପୁର ବିରଜାଙ୍କଠାରେ ଆଶ୍ୱିନ କୃଷ୍ଣ ଅଷ୍ଟମୀଠାରୁ ଶୁକ୍ଳ ଅଷ୍ଟମୀ ପର୍ଯ୍ୟନ୍ତ ଦଶହରା ପର୍ଯ୍ୟନ୍ତ ମହାପାର୍ବଣର ମହାପୂଜା ଅନୁଷ୍ଠିତ ହୋଇଥାଏ । ଆଉ କେତେକ ଶକ୍ତିପୀଠମାନଙ୍କରେ ଆଶ୍ୱିନ ଅମାବାସ୍ୟାଠାରୁ ଅଧିବାସ କରାଯାଇ ନବରାତ୍ର ବ୍ୟାପି ଦୁର୍ଗାପୂଜା ପାଳିତ ହୁଏ ।

ଦେବୀ ଭାଗବତରେ ନାରଦ ଶ୍ରୀରାମଙ୍କୁ କହିଛନ୍ତି- ଏକ ସମତଳ ସ୍ଥାନରେ ମା' ଜଗଦମ୍ବାଙ୍କୁ ସ୍ଥାପନକରି ବିଧି ଅନୁସାରେ ନଅଦିନ ଉପବାସ କର । ମୁଁ ଏହି କାର୍ଯ୍ୟରେ ଆଚାର୍ଯ୍ୟ ହେବି । ଦେବ ତେଜରୁ ଜାତ କାତ୍ୟାୟିନୀ ଆଶ୍ୱିନ କୃଷ୍ଣ ଚତୁର୍ଦ୍ଦଶୀରେ ଆବିର୍ଭୂତା ହୁଅନ୍ତି । ଦେବୀ ତୁଷ୍ଟ ହୋଇ କୁହନ୍ତି ମୁଁ ସପ୍ତମୀ ତିଥିରେ ଶ୍ରୀରାମଚନ୍ଦ୍ରଙ୍କ ଧନୁର୍ବାଣରେ ପ୍ରବେଶ କରିବି । ଅଷ୍ଟମୀରେ ରାମ ରାବଣ ଯୁଦ୍ଧହେବ । ଅଷ୍ଟମୀ ଓ ନବମୀ ସନ୍ଧିକ୍ଷଣରେ ରାବଣ ନିହତ ହେବ । ଦଶମୀରେ ଶ୍ରୀରାମଚନ୍ଦ୍ର ବିଜୟ ଉତ୍ସବ ପାଳନ କରିବେ ।

ମାଟିରେ ମୂର୍ତ୍ତିଗଠନ କରି ନାନା ଆଭରଣ ଯୁକ୍ତ କରି ଦୁର୍ଗାମୂର୍ତ୍ତି ଗଠନ କଲେ, ସେଠାରେ ଆଶ୍ୱିନ ଶୁକ୍ଳ ଷଷ୍ଠୀରେ ବିଲ୍ୱବୃକ୍ଷ ନିମନ୍ତ୍ରଣ ପୂର୍ବକ ପୂଜା କରାଯାଇଥାଏ । ସାୟଂକୃତ୍ୟ ସମାପ୍ତ କରି ବିଲ୍ୱବୃକ୍ଷ ସମ୍ମୁଖରେ ଉତ୍ତର ଦିଗକୁ ମୁଖ କରି ବସି ସ୍ୱସ୍ତିବାକ୍ୟ ଉଚ୍ଚାରଣ କରିବାକୁ ହୁଏ । ସ୍ୱସ୍ତିବଚନରେ କୁହାଯାଏ -ଓଁ କର୍ତ୍ତବୋଦ୍ଧସ୍ମିନ୍ ବିଲ୍ୱବୃକ୍ଷେ ବାର୍ଷିକ ଶରତକାଳୀନ ଶ୍ରୀ ଭଗବତୀ ଦୁର୍ଗା ମହାପୂଜା କର୍ମାଙ୍ଗର୍ଭୂତ ଶ୍ରୀ ଭଗବଦ୍ଦୁର୍ଗାୟାଃ । ବୋଧନ କର୍ମାଣି ପୁଣ୍ୟାହଂ ଭବନ୍ତୋଦ୍ଧିବୃବନ୍ତୁ । ଏହାପରେ ଷୋଡଶୋପଚାରେ ଓଁ ବିଲ୍ୱବୃକ୍ଷାୟ ନମଃ । ଏହି ମନ୍ତ୍ରରେ ବିଲ୍ୱବୃକ୍ଷ ପୂଜା କରାଯାଏ । ତା' ପରେ ଦେବୀଙ୍କ ଆଶୀର୍ବାଦ ନିମନ୍ତେ ମନ୍ତ୍ର ପାଠ କରାଯାଏ ଯଥା- ରାବଣସ୍ୟ ବଧାର୍ଥାୟ ରାମସ୍ୟାନୁଗ୍ରହାୟଚ । ଦେବୀ ଚଣ୍ଡାହ୍ନିକେ ଚଣ୍ଡିବିଗ୍ରହକାରିଣୀ । ବିଲ୍ୱଶାଖାଂ ସମାଶ୍ରିତ୍ୟତିଷ୍ଠ ଦେବୀ ଯଥା ସୁଖଂ । ବିଲ୍ୱବୃକ୍ଷ ସମାପନ ପରେ ବୃକ୍ଷର ଶାଖା ଛେଦନ କରାଯାଏ । ଶାଖା ଛେଦନ ପରେ ନବପତ୍ରିକା ଯଥା ସାରୁ, କଦଳୀ, ହରିଦ୍ରା, ଜୟନ୍ତୀ, ଡାଳିମ୍ବ, ଅଶୋକ, ମହଣ ଓ ଧାନଗଛ ଯୁକ୍ତ କରି ପୂଜା ମଣ୍ଡପକୁ ଯିବାକୁ ହୁଏ । ନବପତ୍ରିକା ଦେବୀ ଦୁର୍ଗାଙ୍କର ପ୍ରତିନିଧି ସ୍ୱରୂପ ।

ଏଥିରୁ ସ୍ୱଷ୍ଟ ଅନୁମେୟ ଯେ ବୃକ୍ଷପୂଜା ମୁଖ୍ୟତଃ ଶାରଦୀୟ ସଂସ୍କୃତି । ଓଡିଶାର ପୀଠ ଦେବୀମାନଙ୍କ ପାଖରେ ସାଧାରଣତଃ ଆଶ୍ୱିନ ମୂଳାଷ୍ଟମୀଠାରୁ ମହାଷ୍ଟମୀ ବା ମହାନବମୀ ଅଥବା ଦଶହରା ପର୍ଯ୍ୟନ୍ତ ମହାପୂଜା ଅନୁଷ୍ଠିତ ହୁଏ । ଓଡିଶାର ଗ୍ରାମମାନଙ୍କରେ ଦୀର୍ଘ ଷୋହଳ ଦିନଧରି ପୂଜା ପାର୍ବଣ ନକରି କେଉଠି ତିନିଦିନ, ଦୁଇଦିନ କିମ୍ବା ଗୋଟିଏ ଦିନ ଦେବୀଙ୍କୁ ଆରାଧନା କରାଯାଏ । ଆଶ୍ୱିନ ଶୁକ୍ଳ ଦଶମୀ ଶ୍ରବଣା ନକ୍ଷତ୍ରରେ ଘଟମାନ ବିସର୍ଜନ କରାଯିବାର ଶାସ୍ତ୍ର ନିୟମ ଅଛି ।

ଅନ୍ୟ ଏକ ବୈଶିଷ୍ଟ୍ୟ ହେଲା ଯେ ସମଗ୍ର ଭାରତବର୍ଷରେ ଯେଭଳି ଭାବରେ ଦୁର୍ଗାପୂଜା ଅନୁଷ୍ଠିତ ହୁଏ , ତା'ର ବ୍ୟତିକ୍ରମ ଓଡିଶାରେ ପରିଲକ୍ଷିତ ହୁଏ । ଉତ୍କଳର ଶ୍ରେଷ୍ଠତମ ତନ୍ତ୍ରପୀଠ ଶ୍ରୀ ପୁରୁଷୋତ୍ତମ ପୁରୀକୁ କେନ୍ଦ୍ର କରି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ରଥଯାତ୍ରା ପରି ଦ୍ୱିତୀୟ ମହୋତ୍ସବ ଭାବେ ଶାରଦୀୟ ଦୁର୍ଗାପୂଜା ସ୍ଥାନ ଅଳଂକୃତ କରିଛି । ସର୍ବତ୍ର ଦେବୀ ଦୁର୍ଗାଙ୍କ ସହିତ ଶିବ ଉପାସିତ ହେଉଥିବାବେଳେ ଶ୍ରୀକ୍ଷେତ୍ର ପୁରୀରେ ଦୁର୍ଗାବେଶରେ ମା' ବିମଳାଙ୍କ ସହିତ ମାଧବ (ଜଗନ୍ନାଥ)ଙ୍କୁ ଆରାଧନା କରାଯାଏ । ଏହାକୁ ଦୁର୍ଗାମାଧବ ପୂଜା କୁହାଯାଏ । ଏହା ସମଗ୍ର ଜଗତରେ ଶାକ୍ତ ଏବଂ ବୈଷ୍ଣବ ମତ ମଧ୍ୟରେ ଏକ ମଧୁର ସମନ୍ୱୟ ବାର୍ତ୍ତା ପ୍ରଚାର କରୁଛି ।

ଉତ୍କଳ ତନ୍ତ୍ରପୀଠର ପ୍ରଥମ ଭୂମି । ଏକାମ୍ର କ୍ଷେତ୍ର ଭୁବନେଶ୍ୱରର ଖଣ୍ଡଗିରିରେ ଖାରବେଳଙ୍କ ଶାସନ କାଳରୁ ଜୈନମାନଙ୍କ ଅଧିକୃତ ଖଣ୍ଡଗିରିରେ ମା' ବାରଭୁଜା ଠାକୁରାଣୀ ପୂଜାପାଇ ଆସୁଛନ୍ତି ।

ଚାରିଧାମ ମଧ୍ୟରୁ ଓଡିଶା ପ୍ରଥମ ପୀଠ ଓ ଏହା ପୂର୍ବରେ ଅବସ୍ଥିତ । ଏହି ପ୍ରଥମ ପୀଠରେ ଶକ୍ତି ମଧ୍ୟରେ ଦେବୀଦୁର୍ଗା ବା ମା' ବିମଳା ସର୍ବବରିଷ୍ଠ ଅଟନ୍ତି । ଏହି ଶକ୍ତିକୁ କେନ୍ଦ୍ରକରି ପରବର୍ତ୍ତୀ କାଳରେ ସମଗ୍ର ଓଡିଶା ଶକ୍ତିପୀଠମୟ ହୋଇଯାଇଛି । ଏଠାରେ ଉଲ୍ଲେଖନୀୟ ଯେ, ମା' ବିମଳା ଦୁର୍ଗାଭାବେ ଏଠାରେ ଉପାସିତ । ଏପରିକି ଏହାଙ୍କ ବିଜେ ପ୍ରତିମା କନକ ଦୁର୍ଗା ଅଟନ୍ତି । ଶ୍ରୀଜଗନ୍ନାଥ ଓ ବିମଳାଙ୍କୁ ନେଇ ସମଗ୍ର ଉତ୍କଳରେ ଶାକ୍ତଧର୍ମ ଧାରଣା ବା ଉପାସନା କେତେ, ତାହା ଏଥିରୁ ସହଜରେ ଅନୁମେୟ ।

ଦୁର୍ଗାପୂଜା ସମୟରେ ବ୍ରାହ୍ମଣମାନେ ମୃଣ୍ମୟ ମୂର୍ତ୍ତି କିମ୍ବା ଦେବୀ ମନ୍ଦିରରେ ପୂଜାର ଦାୟିତ୍ୱ ଗ୍ରହଣ କରିବା ବ୍ୟତୀତ ନିଜ ଗୃହରେ ଯେଉଁ ଦେବ ଦେବୀଙ୍କ ପ୍ରତିଷ୍ଠା କରିଥାଆନ୍ତି, ସେମାନଙ୍କୁ ଷୋଡଶ ଉପଚାରରେ ସ୍ୱତନ୍ତ୍ର ଭାବେ ପୂଜା କରିଥାଆନ୍ତି । କରଣମାନେ ରାଜପ୍ରଦତ୍ତ ନାନା ଉପାଧି ଧାରଣ କରି ଲେଖନୀ ଓ ତାଳପତ୍ର ପୋଥିମାନ ଦଶହରା ସମୟରେ ପୂଜା କରନ୍ତି । ସେହିପରି ଖଣ୍ଡାୟତ ବା କ୍ଷତ୍ରିୟମାନେ ଯେଉଁମାନେ ଯୁଗ ଯୁଗ ଧରି ଖଣ୍ଡା ଓ ତରବାରୀ ସାହାଯ୍ୟରେ ଓଡିଶାର ଇଷ୍ଟ ଦେବତା ମହାପ୍ରଭୁ ଶ୍ରୀଜଗନ୍ନାଥ ଓ ଶ୍ରୀମନ୍ଦିର ଲୁଣ୍ଠନ ବେଳେ ଓଡିଶାକୁ ସୁରକ୍ଷିତ ରଖିଥିଲେ । ଏହି ଦଶହରା ଦିନ ସେମାନେ ଘରେ ଘରେ ଖଣ୍ଡା, ତରବାରୀ ଓ ଫାର୍ସାମାନ ଏକାଠି କରି ପୂଜା କରନ୍ତି ।

ଅନ୍ୟ ଏକ ବୈଶିଷ୍ଟ୍ୟ ହେଲା କୁମାରୀ ପୂଜା । ଯେଉଁ କୁମାରୀ ପୂଜାପାଇଁ ଉଦ୍ଦିଷ୍ଟ, ତାହା ଆଗରୁ ନିର୍ଦ୍ଦିଷ୍ଟ ହୋଇଥାଏ । ସେହି ନିର୍ଦ୍ଦିଷ୍ଟ ଝିଅଟିକୁ ନୂତନ ବସ୍ତ୍ର ପରିଧାନ କରାଇ ତାକୁ ଦେବୀ ଜ୍ଞାନରେ ପୂଜା କରାଯାଏ । ଦେବୀ ଦୁର୍ଗା କୁମାରୀ ନାମରେ ପ୍ରସିଦ୍ଧ । ଦେବୀ ପୂଜା ପରେ ବିଭିନ୍ନ ଉପଚାରରେ କୁମାରୀମାନଙ୍କୁ ଭୋଜନ ଦେଇ ତୃପ୍ତ କରିବାକୁ ପଡିଥାଏ । ଓଡିଶାର ଗ୍ରାମାଞ୍ଚଳର କୁମାରୀମାନେ ସମ୍ପୂର୍ଣ୍ଣ ଆଶ୍ୱିନ ମାସଟି ତୁଳସୀ ଚଉରା ମୂଳରେ ଜହ୍ନିଫୁଲରେ କୋଠି ତିଆରି କରି ଭୋଗ ଦେଇ ପୂଜା କରିଥାଆନ୍ତି । ଏହାକୁ ଜହ୍ନିଓଷା ମଧ୍ୟ କୁହନ୍ତି । ରାତ୍ରରେ ଜହ୍ନି ଓଷା ଗୀତ ଗାଇ ସମୟ ବିତାଇ ଦିଅନ୍ତି ।

ଓଡିଶାରେ ଦେବୀ ଦୁର୍ଗାଙ୍କର ମୃଣ୍ମୟ ମୂର୍ତ୍ତି ପୂଜା କରିବା କଥା ବେଶୀଦିନ ନୁହେଁ । ତଥାପି ଓଡିଶାରେ ଷୋଡଶ ଶତାବ୍ଦୀରେ ଏହି ମୃଣ୍ମୟ ମୂର୍ତ୍ତିପୂଜା ଆରମ୍ଭ ହୋଇଥିବା ଗୋଦାବରୀଶ ମିଶ୍ରଙ୍କ 'ଶାରଦା ଶରଦର୍ଶନ ପଦ୍ଧତି' ପୁସ୍ତକରୁ ଜଣାପଡେ । ଏବେ ଯେଉଁ ଦଶଭୁଜା ମହିଷାମର୍ଦ୍ଦିନୀ ଦୁର୍ଗାଙ୍କୁ ଆଶ୍ୱିନ ଶୁକ୍ଳପକ୍ଷ ସପ୍ତମୀଠାରୁ ଆଶ୍ୱିନ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ପୂଜା କରାଯାଉଛି, ପୁରାକାଳରେ ସେହି ପୂଜା ଦେବୀ ପୀଠମାନଙ୍କରେ ହିଁ ସୀମିତ ଥିଲା । ମୃଣ୍ମୟୀ ମୂର୍ତ୍ତିପୂଜା ହେଉଥିବା ସ୍ଥାନରେ କଳସ ସ୍ଥାପନ କରାଯାଇ ସପ୍ତମୀଠାରୁ ବିଶେଷ ଭାବେ ଦୁର୍ଗା ପୂଜା ଅନୁଷ୍ଠିତ ହୋଇଥାଏ ।

ଶକ୍ତିମୟୀ ମା' ଦୁର୍ଗାଙ୍କୁ ପ୍ରତ୍ୟେକ ସଗୃହସ୍ଥ ପ୍ରାର୍ଥନା କରେ– ପ୍ରଭାତେ ଯଃ ସ୍ମରେ ନିତ୍ୟଂ ଦୁର୍ଗା ଦୁର୍ଗାକ୍ଷର ଦ୍ୱୟଂ । ଆପଦାସ୍ତ ନଶ୍ୟନ୍ତି ତମ ସୂର୍ଯୋଦୟେ । ଯଥା – ଓଡିଶାର ସମସ୍ତ ଓଡିଆକୁ ସ୍ମରଣ କରି ଦିଏ ଯେ ସୂର୍ଯ୍ୟ ଉଦୟରେ ଅମା ଅନ୍ଧକାର ଅପସରି ଗଲା ପରି ସର୍ବମଙ୍ଗଳା ଦେବୀ ଦୁର୍ଗା ନାମ ସ୍ମରଣରେ ସମସ୍ତ ଆପଦ ବିପଦ ଦୂର ହୋଇଯାଏ । ସମଗ୍ର ଓଡିଶାରେ ଶାରଦୀୟ ଦୁର୍ଗାପୂଜା ଦ୍ୱିତୀୟ ଶ୍ରେଷ୍ଠ ଉତ୍ସବ ରୂପେ କେଉଁ ଅତୀତ କାଳରୁ ଏଇ ଓଡିଆ ଜାତି ତା'ର ନିଜସ୍ୱ ଶୈଳୀରେ ପାଳନ କରି ଆସୁଛି ଓ ପାଳନ କରୁଥିବ ମଧ୍ୟ । ତେଣୁ ଏହି ଶାରଦୀୟ ଶୁଭ ମୁହୂର୍ତ୍ତରେ ଦେବୀ ଦୁର୍ଗାଙ୍କ ଅମୃତ କରୁଣାରେ ଜଗତର ମଙ୍ଗଳ ହେଉ । ମା' ଦୁର୍ଗା ଦଶଭୁଜା ଦଶ ହସ୍ତରେ ଏ ଜାତିର ସମସ୍ତ ବାଧାକୁ ଖଣ୍ଡନ କରନ୍ତୁ । ମିଥ୍ୟା, କ୍ରୋଧ, ଅଭିମାନ, ଅହଂଭାବ, ନାସ୍ତିକଭାବ, ଆତ୍ମଗ୍ଳାନି, ଅସୂୟା, ଈର୍ଷା, ଦ୍ୱେଷ, ପରୋକ୍ଷ ଭାବ ତ୍ୟାଗକରି କରୁଣାମୟୀ ମା' ଦୁର୍ଗାଙ୍କୁ ଲାଭ କରି ଏ ଜାତି, ତା'ର ଭାଷା, ସାହିତ୍ୟ, ସଂସ୍କୃତି ଓ ମହନୀୟ ପରମ୍ପରାର ସଂରକ୍ଷଣ ଦିଗରେ ଅଗ୍ରସର ହେଉ ।

ନିର୍ମାଲ୍ୟ,୧୧୨/୨୫୦୦
ଖଣ୍ଡଗିରି ବିହାର, ଭୁବନେଶ୍ୱର



# ଶକ୍ତିର ଅବତାର ମହିଷାମର୍ଦ୍ଦିନୀ

**ଅମିନୀଲୁ ରାୟ**

ଚଣ୍ଡୀ ପୁରାଣରେ ବର୍ଣ୍ଣିତ -

ଓଁ ନମୋଃ ଦେବୀ ମହାମାୟେ ମହିଷାସୁର ମର୍ଦ୍ଦିନୀ<br>
ଶଙ୍କର ଚାରିଣୀ ଦୁର୍ଗେ ଜଗଦ୍ଧାତ୍ରୀ ନମସ୍ତୁତେ ।<br>
ନମସ୍ତେ ଚଣ୍ଡୀକେ ମାତ ନମସ୍ତେ ସିଂହବାହିନୀ<br>
ନମସ୍ତେ ସିଦ୍ଧିଯୋଗିନୀ ଭଗବତୀ ନମୋ ନମଃ ।

ପୌରାଣିକ କିମ୍ବଦନ୍ତୀ ଅନୁଯାୟୀ - ଗିରିରାଜ ହିମାଳୟଙ୍କ କନ୍ୟା ଆଗମନ କରିବା ସମୟରେ ଠିକ୍ ସେତିକିବେଳେ ଧରାପୃଷ୍ଠରେ ଭରିଉଠେ ସବୁଜ ଶସ୍ୟସମ୍ଭାର । ଜଳ, ସ୍ଥଳ, ଆକାଶ ଚତୁର୍ଦ୍ଦିଗ ସ୍ୱଚ୍ଛତା ଓ ଶୁଭ୍ରତାର ଅପୂର୍ବ ସ୍ପର୍ଶରେ ଉଲ୍ଲସିତ ହୋଇଉଠନ୍ତି । ତୁଷାର ଧବଳ କାଶତଣ୍ଡୀ ଫୁଲର ସ୍ୱର୍ଗୀୟ ସମାରୋହରେ ଝଲସି ଉଠେ ନଦୀପଠା । କଲ୍ଲୋଳିନୀ ଓ ନିର୍ଝର ତଥା ଜଳାଶୟ ସବୁ ସ୍ୱଚ୍ଛ ନିର୍ମଳ ଜଳ ବହନ କରନ୍ତି । ମେଘମୁକ୍ତ ଆକାଶ ବକ୍ଷରେ ଶରତ ଚନ୍ଦ୍ର ସୁନିର୍ମଳ ଶୀତଳ ଜ୍ୟୋତ୍ସ୍ନା ବିକିରଣ କରନ୍ତି । ଶୁଭ୍ର ଶରତର ଜୟ ବୈଜୟନ୍ତୀ ସଦୃଶ ଉଡିବୁଲନ୍ତି ବିହଙ୍ଗକୁଳ । ଏହିପରି ଏକ ମଧୁର ମୁହୂର୍ତ୍ତରେ ଉତ୍କଳର ପୁରପଲ୍ଲୀ ସର୍ବତ୍ର ଶଙ୍ଖ ଘଂଟାର ଧ୍ୱନି ସହିତ ମାତୃ ବନ୍ଦନାର ମନ୍ଦ ନିନାଦରେ ଗଗନ ପବନ ମୁଖରିତ ହୋଇଉଠେ । ଧରାପୃଷ୍ଠକୁ ଜଗଜ୍ଜନନୀଙ୍କର ଶୁଭାଗମନରେ ଜଗତ୍‌ବାସୀ ତାଙ୍କ ପାଇଁ ମହାପୂଜାର ଆୟୋଜନ କରନ୍ତି । ଶେଷରେ ଶକ୍ତିରୂପିଣୀ ଦେବୀ ଜଗତ୍‌ବାସୀଙ୍କଠାରୁ ପୂଜା ଗ୍ରହଣ କରି ବିଜୟା ଦଶମୀରେ ପିତ୍ରାଳୟକୁ ପ୍ରତ୍ୟାଗମନ କରନ୍ତି । ତାକୁ ହିଁ ଦୁର୍ଗାପୂଜା କୁହାଯାଏ ।

ଏହି ଶକ୍ତିପୂଜାର ପରମ୍ପରା ଉତ୍କଳରେ ସୁପ୍ରାଚୀନ । କିନ୍ତୁ ଦଶଭୁଜ ବିଶିଷ୍ଟ ଦୁର୍ଗାଙ୍କର ମୂର୍ତ୍ତି ପରିକଳ୍ପନା ଓ ତାଙ୍କର ମୃଣ୍ମୟୀ ପ୍ରତିମା ନିର୍ମାଣ ଏକ ବଙ୍ଗୀୟ ପ୍ରଭାବ ବୋଲି ମନେ କରାଯାଏ । ଉତ୍କଳୀୟ ମତରେ ଦୁର୍ଗା ହେଉଛନ୍ତି ଚତୁର୍ଭୁଜା । ଏଣୁ କେତେକ ସ୍ଥାନରେ ଅଷ୍ଟଭୁଜା ବା ଷୋଡଶଭୁଜା ଦୁର୍ଗାଙ୍କର ପୂଜା କରାଯାଉଥିବାର ବିଧି ଏବେ ବି ପ୍ରଚଳିତ । ପୁରାଣ ମତରେ ବ୍ରହ୍ମାଙ୍କ ବଳରେ ବଳୀୟାନ ଏକ ବଳବାନ୍ ଦାନବ ମହିଷାସୁର ଦେବତାମାନଙ୍କ ଉପରେ ପ୍ରବଳ ଅତ୍ୟାଚାର କରିବାରୁ ଶେଷରେ ଅସହାୟ ଦେବତାମାନେ କୌଣସି ଉପାୟ ନପାଇ ବ୍ରହ୍ମାଙ୍କର ଶରଣାପନ୍ନ ହୁଅନ୍ତେ, ସେ ତୁରନ୍ତ ଦେବତାମାନଙ୍କ ସହିତ କୈଳାସପତି ଶିବଙ୍କ ପାଖକୁ ଯାଇ ଏ ବିଷୟରେ ପରାମର୍ଶ ଲୋଡିଲେ । ଏହି ସମୟରେ ସମବେତ କ୍ରୋଧାନ୍ୱିତ ଦେବତାମାନଙ୍କ ମୁଖମଣ୍ଡଳରୁ ଏକ ଅପୂର୍ବ ତେଜ ନିର୍ଗତ ହେଲା । ଯାହା ଫଳରେ ଉକ୍ତ ତେଜରୁ ଜନ୍ମ ନେଲେ ଏକ ଅପୂର୍ବ ଲାବଣ୍ୟମୟୀ ତେଜସ୍ୱିନୀ ନାରୀ ମୂର୍ତ୍ତି । ସେ ହେଲେ ଆଦ୍ୟାଶକ୍ତି, କାତ୍ୟାୟନୀ ଦେବୀ ଦୁର୍ଗା । ସେ କହିଲେ-'ହେ ଦେବତାମାନେ, ଦୟାପୂର୍ବକ ମୋତେ ଆପଣମାନଙ୍କର ଅସ୍ତ୍ର ପ୍ରଦାନ କରନ୍ତୁ । ମୁଁ ଏକାକିନୀ ମହିଷାସୁରକୁ ବଧ କରିପାରିବି ।' ଶେଷରେ ଅସ୍ତ୍ରଶସ୍ତ୍ରରେ ସଜ୍ଜିତା ହୋଇ ଦେବୀ ସିଂହ ଉପରେ ଆରୋହଣପୂର୍ବକ ମହିଷାସୁର ସହିତ ସଂଗ୍ରାମରେ ଅବତୀର୍ଣ୍ଣା ହେଲେ । ମହିଷାସୁରର ମୃତ୍ୟୁ ପରେ ସ୍ୱର୍ଗରୁ ଦେବତାମାନେ ଖୁସିରେ ଜୟଧ୍ୱନି ସହ ପୁଷ୍ପବୃଷ୍ଟି କଲେ । ଏହି ବିଜୟର ସ୍ମାରକୀ ସ୍ୱରୂପ କେଉଁ ପ୍ରାଚୀନ କାଳରୁ ଆଶ୍ୱିନ ମାସର ଶୁକ୍ଳପକ୍ଷ ଦଶମୀ ତିଥିଟିକୁ ବିଜୟା ଦଶମୀ ନାମରେ ସାରା ଓଡିଶାରେ ପାଳନ କରାଯାଉଅଛି । ପୁନଶ୍ଚ ତ୍ରେତୟା ଯୁଗରେ ମର୍ଯ୍ୟାଦା ପୁରୁଷ ଶ୍ରୀରାମ ଲଙ୍କାପତି ରାବଣକୁ ବିନାଶ କରିବା ନିମନ୍ତେ ଏହି ମାସରେ ଶକ୍ତିସ୍ୱରୂପିଣୀ ଦେବୀଙ୍କୁ ପୂଜା କରି ତାଙ୍କଠାରୁ ଆଶୀର୍ବାଦ ଭିକ୍ଷା କରିଥିଲେ । ତାଙ୍କରି କୃପାରୁ ସେ ରାବଣକୁ ବଧ କରିବା ସଙ୍ଗେ ସଙ୍ଗେ ସତୀ ସୀତାଙ୍କୁ ଉଦ୍ଧାର କରି ଲଙ୍କାରେ





ବିଜୟ ଉତ୍ସବ ପାଳନ କରିଥିଲେ । ଉକ୍ତ ସ୍ମାରକୀ ହେଉଛି ଆଶ୍ୱିନ ମାସର ଶୁକ୍ଳ ଦଶମୀ ତିଥିରେ ପାଳନ କରାଯାଉଥିବା ବିଜୟା ଦଶମୀ ।

ଦଶହରା ଓ ଦୁର୍ଗାପୂଜା ପଶ୍ଚାତରେ ବହୁ କିମ୍ବଦନ୍ତୀ ନିହିତ ଥିଲେ ମଧ ମାତୃ ଆରାଧନା ଓ ଶକ୍ତି ପୂଜା ଯେ ହେଉଛି ଉକ୍ତ ପର୍ବର ପ୍ରଧାନ ଆଭିମୁଖ୍ୟ, ଏଥିରେ ସଂଦେହ ନାହିଁ । ମାତ୍ର ଦୁର୍ଗା ହେଉଛନ୍ତି ଜଗତର ଜନନୀ । ସେ ହେଉଛନ୍ତି ଦୁର୍ଗତିନାଶିନୀ, ଅଭୟ–ବର–ଦାୟିନୀ ଓ କଲ୍ୟାଣ ବିଧାୟିନୀ ଦେବୀ । ତାଙ୍କୁ ପୂଜା କଲେ ଜଗତର ସମସ୍ତ ପ୍ରକାର ପାପତାପ ଦୂର ହୋଇଯାଏ ଓ ମନୁଷ୍ୟ ସୁଖ, ସମୃଦ୍ଧି ଓ ସୌଭାଗ୍ୟ ପ୍ରାପ୍ତ କରି ଆନନ୍ଦରେ କାଳାତିପାତ କରେ ବୋଲି ବିଶ୍ୱାସ ଅଛି । ତେଣୁ ସାର୍ବଜନୀନ ଭାବେ ଆଡମ୍ବର ସହକାରେ ପୂଜା କରି ଆମ୍ଭେମାନେ ତାଙ୍କର ଶରଣାପନ୍ନ ହେବା ସହ କଲ୍ୟାଣ ଭିକ୍ଷା କରିଥାଉ ।

ଓଡିଶାରେ ଯେତେ ପର୍ବ ପାଳନ କରାଯାଉଛି ସେଥିମଧ୍ୟରୁ ଦଶହରା ଅନ୍ୟତମ । ଏହା ବ୍ୟତୀତ ବଙ୍ଗଳା, ବିହାର ଓ ଉତ୍ତର ପ୍ରଦେଶରେ ମଧ ଏହି ପର୍ବ ବହୁ ଆଡମ୍ବର ସହକାରେ ପାଳନ କରାଯାଏ । ସୁସଜ୍ଜିତ ମଣ୍ଡପ ଉପରେ ସିଂହବାହିନୀ ଦଶଭୁଜା ଦୁର୍ଗାଙ୍କର ମୃଣ୍ମୟ ମୂର୍ତ୍ତି ବିଧି ମୁତାବକ ସ୍ଥାପନ କରାଯାଏ । ଦେବୀଙ୍କର ଦୁଇ ପାର୍ଶ୍ୱରେ ଗଣେଶ, କାର୍ତ୍ତିକେୟ, ଲକ୍ଷ୍ମୀ ଓ ସରସ୍ୱତୀଙ୍କର ମୂର୍ତ୍ତି ମଧ ସ୍ଥାପନା କରାଯାଇଥାଏ । ଦେବୀଙ୍କୁ ହିମାଳୟ କନ୍ୟା ପାର୍ବତୀ ରୂପେ ବିବେଚନା କରାଯାଉଥିବାରୁ ତାଙ୍କ ନିକଟରେ ଦୁଇ ପୁତ୍ର ସ୍ଥାନ ପାଇବାର ବିଧି ପ୍ରଚଳିତ । କେତେକ ସ୍ଥାନରେ କେବଳ ହର ପାର୍ବତୀଙ୍କର ମୂର୍ତ୍ତି ମଧ ପୂଜା କରାଯାଇଥାଏ । ଏଠାରେ ପୂଜାର୍ଚ୍ଚନାର ରୀତି ସ୍ୱତନ୍ତ୍ର ଅଟେ । ଦେବୀଙ୍କର ପାଦ ତଳେ ସଂଗ୍ରାମମୁଖୀ ମହିଷାସୁରର ମୂର୍ତ୍ତି ଯେତିକି ଭୟଙ୍କର, ବହୁ ବର୍ଣ୍ଣର ବେଶ ପୋଷାକ ଓ ବହୁ ଅଳଙ୍କାରରେ ସୁଶୋଭିତା ଦେବୀଙ୍କର ରୂପ ସେତିକି ଲାବଣ୍ୟମୟ । ଭକ୍ତିପ୍ରାଣ ହିନ୍ଦୁ ନାରୀମାନେ ମା'ଙ୍କର ପାଦ ତଳେ ନୈବେଦ୍ୟ ଅର୍ପଣ କରି ତାଙ୍କଠାରୁ ସୁଖ, ଶାନ୍ତି, ଶ୍ରୀ, ସମ୍ପଦ ଓ ସୌଭାଗ୍ୟ ମାଗି ନିଅନ୍ତି । ବର୍ଷକରେ ଥରେ ଏହି ପର୍ବଟିକୁ ପାଳନ କରିବା ନିମନ୍ତେ ଧନୀ ଦରିଦ୍ର ନିର୍ବିଶେଷରେ ସମାଜର ସବୁ ଶ୍ରେଣୀର ଲୋକେ ଏଥିରେ ମଜ୍ଜି ଯାଆନ୍ତି ।

ଦୁର୍ଗାପୂଜା ହେଉଛି ଓଡିଶାର ଏକ ପ୍ରଧାନ ସାମାଜିକ ଉତ୍ସବ । ଦୁର୍ଗତିନାଶିନୀ ମା' ଅମ୍ବିକା ଭକ୍ତମାନଙ୍କର କଳ୍ପନାରେ କେବଳ ସୁଖ ଓ ଶାନ୍ତି ପ୍ରଦାୟିନୀ ନୁହନ୍ତି, ସେ ହେଉଛନ୍ତି ଶକ୍ତି, ସାହସ, ଶୌର୍ଯ୍ୟ, ପରାକ୍ରମ ଓ ସର୍ବପରି ବିଜୟର ପ୍ରତୀକ । ସେଥିପାଇଁ ତାଙ୍କର ଅନ୍ୟନାମ ବିଜୟା । ଅତୀତରେ ଯୁଦ୍ଧପିପାସୁ ଉତ୍କଳୀୟ ପାଇକ ବୀରମାନେ ବିଜୟା ଦଶମୀରେ ନିଜ ନିଜର ଅସ୍ତ୍ର ପୂଜା କରି ଆଗାମୀ ଯୁଦ୍ଧ ନିମନ୍ତେ ପ୍ରସ୍ତୁତି ଆରମ୍ଭ କରୁଥିଲେ । ସେହି ପରମ୍ପରା ଅନୁଯାୟୀ ଏବେ ମଧ ବିଜୟା ଦଶମୀ ତିଥିରେ ଅତୀତର ସ୍ମାରକୀ ସ୍ୱରୂପ ଖଣ୍ଡାୟତ ପରିବାରମାନଙ୍କରେ ଖଣ୍ଡା ପୂଜାର ବିଧି ପ୍ରଚଳିତ ଅଛି । ଏହା ବ୍ୟତୀତ ଗ୍ରାମାଞ୍ଚଳରେ ଭିନ୍ନ ଭିନ୍ନ ବୃତ୍ତିଜୀବୀମାନେ ନିଜ ନିଜର ଉପକରଣମାନ ଆସ୍ଥାନରେ ରଖି ପୂଜା କରିଥାନ୍ତି ।

ଓଡିଶାର ଦୁର୍ଗା ମଣ୍ଡପମାନଙ୍କରେ ଆଶ୍ୱିନ ଶୁକ୍ଳ ଷଷ୍ଠୀଠାରୁ ପୂଜା ଆରମ୍ଭ ହୋଇଥାଏ । ପୂଜକମାନେ ପ୍ରତ୍ୟହ ଶ୍ଳୋକ ପାଠ କରନ୍ତି ଓ ନୈବେଦ୍ୟ ଅର୍ପଣ କରନ୍ତି । ଅଷ୍ଟମୀ ତିଥିଟି ମହାଷ୍ଟମୀ ନାମରେ କଥିତ । ଦଶମୀ ପୂଜାଟି ଆଡମ୍ବର ସହକାରେ ପାଳନ କରାଯାଏ । ୫ ଦିବସବ୍ୟାପୀ ଦଶହରା ପୂଜାର ଏହା ହେଉଛି ଉଦ୍‌ଯାପନ ଦିବସ । ଶଙ୍ଖ, ଘଂଟ, ଢୋଲ ଓ ମହୁରୀ ଶବ୍ଦରେ ଗଗନ ପବନ ମୁଖରିତ ହୋଇଉଠେ । ଦେବୀ ମଣ୍ଡପ ନିକଟରେ ପ୍ରବଳ ଜନ ସମାଗମ ହୁଏ । ଶାନ୍ତି ରକ୍ଷା ନିମନ୍ତେ ସ୍ୱେଚ୍ଛାସେବୀ ଅନୁଷ୍ଠାନ ତଥା ପୋଲିସ କର୍ମଚାରୀମାନଙ୍କର ସାହାଯ୍ୟ ନେବା ଆବଶ୍ୟକ ହୁଏ । ଏହିଭଳି ଏକ ଆନନ୍ଦ ମୁଖରିତ ଅବସରକୁ ଦେଖିଲେ ମନେହୁଏ ସତେଯେପରି କରୁଣାମୟୀ ମାତା କରୁଣା ବିତରଣ କରିବା ନିମନ୍ତେ ବର୍ଷକରେ ଥରେ ମର୍ତ୍ତ୍ୟବାସୀ ମାନବମାନଙ୍କ ମେଳରେ ସଶରୀରେ ଅବତୀର୍ଣ୍ଣା ହୋଇଛନ୍ତି । ଦଶମୀ ପୂଜା ଶେଷରେ ମୂର୍ତ୍ତିଗୁଡିକ ଆଡମ୍ବରପୂର୍ଣ୍ଣ ଶୋଭାଯାତ୍ରା ମାଧ୍ୟମରେ ନିକଟସ୍ଥ ନଦୀ, ନାଳ ଓ ପୁଷ୍କରିଣୀରେ ବିସର୍ଜନ କରାଯାଇଥାଏ ।

ଦୁର୍ଗାପୂଜା ଆମର ଏକ ଜାତୀୟ ପର୍ବ । ସମସ୍ତ ଜନସାଧାରଣ ଏଥିରୁ ପ୍ରଚୁର ଆମୋଦ ଓ ଉତ୍ସାହ ଲାଭ କରିଥାନ୍ତି, ଏଥିରେ ସନ୍ଦେହ ନାହିଁ ।

ଘାଗଡା, ରାହାମା, ଜଗତ୍‌ସିଂହପୁର

# ମା' ବିରଜା ଓ ମା' ଦୁର୍ଗା : ସମନ୍ୱୟର ଏକ ଅନୁଶୀଳନ

ମାନସ କୁମାର ରାଉତ

ଭାରତରେ ପ୍ରସିଦ୍ଧ ଲଭିଥିବା ଶକ୍ତପୀଠମାନଙ୍କ ମଧ୍ୟରେ ଯାଜପୁରର ଅଧିଷ୍ଠତ୍ରୀ ଦେବୀ ମା' ବିରଜା ଅନ୍ୟତମ । ମା' ବିରଜା ଆଦିଶକ୍ତି, ପୃଥିବୀମାତା, ମାତୃଦେବୀ, ଶକ୍ତି ସ୍ୱରୂପିଣୀ, ଆଦିମାତା, ସୃଷ୍ଟି ଦେବୀ ଆଦି ବିଭିନ୍ନ ନାମରେ ନାମିତ ହୋଇ ପୂଜା ହୋଇ ଆସୁଛନ୍ତି ଆବହମାନ କାଳରୁ । ମା' ବିରଜାଙ୍କଠାରେ ଘଟିଛି ମାତୃଶକ୍ତି, ତନ୍ତ୍ରଶକ୍ତି, ବୈଷ୍ଣବ ଶକ୍ତି ସହିତ ଶୈବଶକ୍ତି ଏବଂ ସମସ୍ତ ଧର୍ମଶକ୍ତିର ସମନ୍ୱୟ । ମା' ବିରଜା ନାମରେ ସାରା ବିଶ୍ୱରେ ପରିଚିତ ହୋଇଥିବା ମା' ହେଉଛନ୍ତି ବାସ୍ତବରେ ଶକ୍ତି ସ୍ୱରୂପିଣୀ ମା'ଦୁର୍ଗା । ମା'ଦୁର୍ଗାଙ୍କର ଏହି କମନୀୟ ମୂର୍ତ୍ତି ପୂର୍ବକାଳରୁ ବିକଶିତ ହୋଇ ମା' ବିରଜା ନାମରେ ବିଖ୍ୟାତ ଲଭିଛି । ଏକଦା ଶକ୍ତିକ୍ଷେତ୍ରରୁ ତନ୍ତ୍ରକ୍ଷେତ୍ରକୁ ରୂପାନ୍ତରିତ ହୋଇ ନିଜର ଧର୍ମଧାରା ଅବ୍ୟାହତ ରହିଛି ଏହି କ୍ଷେତ୍ରରେ । ଏହି କ୍ଷେତ୍ର ଏବଂ ମା' ବିରଜାଙ୍କୁ ନେଇ ବିଭିନ୍ନ ଗ୍ରନ୍ଥମାନଙ୍କରେ ରହିଛି ଅନେକ ଗୂଢ ତତ୍ତ୍ୱମୂଳକ ରଚନା । ଯାଜପୁର କ୍ଷେତ୍ରାଧିକାର ଭାବେ ଯୁଗଯୁଗରୁ ଜଗି ବସିଛନ୍ତି ମା' ବିରଜା । ଏପରକି ବୈଦିକ ସାହିତ୍ୟଠାରୁ ଆରମ୍ଭ କରି ଏକାଦଶ ଶତାବ୍ଦୀରେ ପ୍ରଚଳିତ ବିଭିନ୍ନ ତ୍ରାମଫଳକରେ ବ୍ୟାଖ୍ୟା ହୋଇଛି ମା'ଙ୍କ ସମ୍ପର୍କରେ ।

ବୈଦିକ ସାହିତ୍ୟରେ ''ମାତଃ ଅସ୍ୟାଃ ପୃଥିବ୍ୟାଃ'' ବୋଲି ବର୍ଣ୍ଣନା କରାଯାଇଥିବା ବେଳେ ରାମାୟଣରେ ''ଜନନୀ ଜନ୍ମ ଭୂମିଶ୍ଚ ସ୍ୱର୍ଗାଦପି ଗରୀୟସି'' ବୋଲି ସୂଚିତ ରହିଛି ।

ମହାଭରତ ପ୍ରସଙ୍ଗରେ ଧର୍ମଦେବ ସମସ୍ତ ଦେବତାଙ୍କୁ ସନ୍ତୁଷ୍ଟ କରିବା ପାଇଁ ଆହୁତ କରିଥିବା ଯଜ୍ଞର ମୁଖ୍ୟ ଆଚାର୍ଯ୍ୟ କଶ୍ୟପ ମୁନିଙ୍କୁ ପୃଥିବୀଦେବୀଙ୍କୁ ଦାନ ଦେବାକୁ ଇଚ୍ଛା କରିବାରୁ ଦେବୀ କ୍ରୋଧାନ୍ୱିତ ହେବା ପରେ ଧର୍ମଦତ୍ତ ଏବଂ କାଶ୍ୟପ ମୁନି ମା'ଙ୍କୁ ପ୍ରାର୍ଥନା କରି ସନ୍ତୁଷ୍ଟ କରିଥିଲେ । ପରେ ମା' ଏକ ବେଦିକା ରୂପରେ ପ୍ରକଟିତ ହୋଇଥିଲେ । ଯାହାକୁ ମହାବେଦୀ କୁହାଯାଏ । ଏହାଭିତରୁ ମା' ବିରଜା ସ୍ୱଂୟ ପ୍ରକଟିତ ହୋଇ ଧର୍ମଦତ୍ତ ଏବଂ ଆଚାର୍ଯ୍ୟଙ୍କୁ ଆଶୀର୍ବାଦ ପ୍ରଦାନ କରିଥିବା ମହାଭାରତ ଉଲ୍ଲେଖ କରିଛି ।

ମହାଭରତର ଏହି ବର୍ଣ୍ଣନା ଅନୁସାରେ ପବିତ୍ର ନଦୀ ବୈତରଣୀ ଓ ବିରଜାରୂପେ ବିଦିତା ହେଲେ । ଯାହାକୁ ବିରଜା ତୀର୍ଥ ବୋଲି ବର୍ଣ୍ଣନା କରିଛି । ବିରଜାଙ୍କ ଆବିର୍ଭାବ ହେତୁ ତାହା ପବିତ୍ର ପିତୃତୀର୍ଥ ଭାବରେ ମଧ୍ୟ ପରିଚିତ ହୋଇପାରିଛି । ଲୋମଶ ଋଷି ପାଣ୍ଡବମାନଙ୍କୁ ସ୍ଥାନ ଚିହ୍ନଟ କଲାବେଳେ ଏହି ସ୍ଥାନର ମହତ୍ତ୍ୱ ସମ୍ପର୍କରେ ବର୍ଣ୍ଣନା କରିଥିଲେ ।

ପ୍ରାଗ୍‌ବୈଦିକ ଯୁଗରେ ଅର୍ଥାତ ଭାରତରେ ପ୍ରଥମ ସଭ୍ୟତା ସିନ୍ଧୁ ନଦୀର ଉପତ୍ୟାକାରେ ଅବସ୍ଥିତ ହରପ୍ପା, ମହେଞ୍ଜୋଦାରୋ ସ୍ଥାନର ଉତ୍‌ଖନନରୁ ଉଜ୍ଜୀବିତ ହୋଇଥିବା ମୃଣ୍ମୟୀ ମୂର୍ତ୍ତି ସେସମୟରେ ଶକ୍ତିଚେତନାର ପ୍ରଚଳିତ ଥିବାର ପ୍ରମାଣ କରୁଛି । ସେଠାରୁ ଉଦ୍ଧୃତ କେତେକ ସିଲ୍‌ରେ ନାରୀମୂର୍ତ୍ତି ସହିତ ଯୋନି ରହିଥିବାରୁ ତାକୁ ଗବେଷକମାନେ ପୃଥିବୀମାତା ବୋଲି ଦାବି କରୁଛନ୍ତି । ବିରଜାଙ୍କ ମସ୍ତିଷ୍କରେ ଯୋନି ରହିଥିବାରୁ ତାଙ୍କୁ ସୃଷ୍ଟିଦେବୀ ବା ପୃଥିବୀମାତା ସର୍ବପ୍ରାଚୀନ ମୂର୍ତ୍ତି ବୋଲି ଐତିହାସିକମାନେ ମତ ଦେଇଛନ୍ତି । ବୈଦିକ ଯୁଗରେ ପୃଥିବୀମାତା ସର୍ବଶକ୍ତିଦାୟିନୀ ମାତୃଶକ୍ତିକୁ ରୂପାନ୍ତରିତ ହୋଇଥିଲେ । ରଗବେଦରେ ବର୍ଣ୍ଣନା ଅନୁସାରେ (ଦଶମ ମଣ୍ଡଳ ୧୨୫ ତମ ସୂକ୍ତରେ) ଅମୃତାରଷିଙ୍କ କନ୍ୟା ବା ନିଜକୁ ''ଆହଂ ରୁଦ୍ରେବିଃ ବସୁଭିଶ୍ଚରାମି'' କରି ବିଶ୍ୱବ୍ରହ୍ମାଣ୍ଡର ନିୟନ୍ତ୍ରିକା ଶକ୍ତି ରୂପରେ ସୂଚିତ କରିଅଛି । ଏହି ତତ୍ତ୍ୱଗୁଡିକୁ ଅନୁଧ୍ୟାନ କଲେ ତାହା ବିରଜା ପରିକଳ୍ପିତ ବୋଲି ମନେହୁଏ । ଯଜୁଃର୍ବେଦ ମଧ୍ୟ




''ଉପହୃତା ପୃଥିବୀ ମାତୋପଂମା ପୃଥିବୀମାତା ହରତାମ'' ବୋଲି ବର୍ଣ୍ଣନା କରିଛି । ଏପରକି ମୀମାଂସା ଦର୍ଶନର ଜୈମିନୀଙ୍କ ମତରେ ଦେବତା ହିଁ ମନ୍ତ୍ରମୟୀ । ଗ୍ରୀକ୍‌ମାନେ ମଧ୍ୟ ସର୍ବପ୍ରଥମେ ବହୁଠାରେ ମୂର୍ତ୍ତିପୂଜାର ପ୍ରଚଳନ କରିଥିଲେ । ଆଦିମାନବୀୟ ସଭ୍ୟତାରେ ମା' ବିରଜାଙ୍କୁ ତାଙ୍କର ଆରାଧ୍ୟାଦେବୀ ସ୍ତମ୍ଭେଶ୍ୱରୀଙ୍କ ସହିତ ତୁଳନା କରାଯାଇଛି । ସ୍ତମ୍ଭେଶ୍ୱରୀ ଉପସାନା ଓଡିଶାର ଶକ୍ତି ଉପାସନାର ମୌଳିକ ଉତ୍ସ । ପୁରାଭିଲେଖୀ ପ୍ରମାଣରୁ ଜ୍ଞାତ ହୁଏ ଯେ ପୂର୍ବେ ଶୁଲ୍କୀ, ଭଞ୍ଜ ଓ ରାଷ୍ଟ୍ରକୂଟ ଆଦି ରାଜାମାନେ ସ୍ତମ୍ଭେଶ୍ୱରୀଙ୍କ ଉପାସକ ଥିଲେ । କଳାହାଣ୍ଡିର ରାଜା ତୃଷ୍ଟିକର ନିଜକୁ ସ୍ତମ୍ଭେଶ୍ୱରୀଙ୍କ ପାଦଭକ୍ତ ବୋଲି ପରିଚିତ କରାଇଥିବାର ତାଙ୍କଦ୍ୱାରା ପ୍ରଦତ୍ତ ଜାରି କରାଯାଇଥିବା ତାମ୍ରଶାସନରୁ ଜଣାଯାଏ । ବଲାଙ୍ଗୀର, ସୋନପୁର ସହିତ ପଶ୍ଚିମ ଓଡିଶା ସ୍ତମ୍ଭେଶ୍ୱରୀ ପୂଜାର ପ୍ରବଳିକା ପ୍ରାକ୍ କାଳରେ ଏହି ସ୍ତମ୍ଭେଶ୍ୱରୀ ଉପାସନାରୁ ବିରଜାଙ୍କ ମାନୁଷୀ ମୂର୍ତ୍ତିର ପରିକଳ୍ପନା କରାଯାଇଛି ବୋଲି ପୁରାତତ୍ତ୍ୱବିତ୍ ଗବେଷକମାନେ ମତ ଦେଇଛନ୍ତି । ସ୍ତମ୍ଭେଶ୍ୱରୀ ପୂଜାର ସ୍ମାରକୀଭାବେ ବିରଜାଙ୍କ ରୌପଦଣ୍ଡ ଏହି ସମ୍ଭାବନାକୁ ଦୃଢୀଭୂତ କରେ । ଶାରଦୀୟ ଦୁର୍ଗୋତ୍ସବ ସମୟରେ ଏହି ରୌପଦଣ୍ଡ ସ୍ୱତନ୍ତ୍ର ମନ୍ତ୍ରରେ ପୂଜା ହୋଇଥାଏ । ପୂର୍ବରୁ ଦୁଲାଲ ସମ୍ପ୍ରଦାୟ ଦ୍ୱାରା ସ୍ତମ୍ଭେଶ୍ୱର ଖମ୍ୱକୁ ଆଶ୍ୱିନ ମାସରେ ବନଦୁର୍ଗା ଭାବେ ପୂଜା କରାଯାଉଥିଲା । ଏହି ବନଦୁର୍ଗା ପୂଜାପଦ୍ଧତି ବିରଜାଙ୍କ ପାଖରେ ପୂଜାର୍ଚ୍ଚନା ହେବା ସହିତ ଓଡିଶାର ଅନ୍ୟ ପୀଠଗୁଡିକକୁ ପ୍ରସାରିତ ହୋଇଅଛି । ସ୍ତମ୍ଭେଶ୍ୱରୀଙ୍କୁ ପୂଜାର୍ଚ୍ଚନା କରୁଥିବା ରାଜାମାନେ ଯାଜପୁରର ଭୌମକର ରାଜାମାନଙ୍କ ସାମନ୍ତରାଜା ରୂପେ କାର୍ଯ୍ୟ କରୁଥିଲେ । ଯାହା ଫଳରେ ବିରଜା ଏବଂ ସ୍ତମ୍ଭେଶ୍ୱରୀଙ୍କ ମଧ୍ୟରେ ସମନ୍ୱୟ ରହିଯାଇଥିବା ଅନୁମେୟ ।

ଅନ୍ୟ କେତେକଙ୍କ ମତରେ ଅଣ ଆର୍ଯ୍ୟଗୋଷ୍ଠୀ ପୁଳିନ୍ଦଙ୍କ ଆରାଧ୍ୟାଦେବୀ ବିନ୍ଧ୍ୟବାସିନୀଙ୍କ ଅନୁରୂପ ମା' ବିରଜା । ପୂର୍ବରୁ ଶବର ଜାତିର ଏହି ପୁଳିନ୍ଦମାନେ ବିନ୍ଧ୍ୟବସିନୀଙ୍କୁ ଗିରି ବନନଦୀ ତଟ ଦେଶରେ ପୂଜା କରୁଥିଲେ । ଶାରଦା ତିଳକରେ ବିନ୍ଧ୍ୟବାସିନୀଙ୍କୁ ପୁଳିନ୍ଦ କନ୍ୟାଭାବେ ବର୍ଣ୍ଣନା କରାଯାଇଛି । ବାକ୍ ପତିରାଜଙ୍କ ଗୈଡବହି ଗ୍ରନ୍ଥରେ ରାଜା ଯଶୋଧର୍ମା ବିନ୍ଧ୍ୟପର୍ବତରେ ବିନ୍ଧ୍ୟବାସିନୀଙ୍କୁ ପୂଜାର୍ଚ୍ଚନା କରିଥିବା ବର୍ଣ୍ଣନା ରହିଛି । ସେହିପରି କଥାସରିତ ସାଗରରେ ଶବର, ପୁଳିନ୍ଦ ଓ ଭୀଲ ପ୍ରଭୃତି ବନ୍ୟଜାତି ବିନ୍ଧ୍ୟବାସିନୀ ଦୁର୍ଗାଙ୍କୁ ପୂଜା କରୁଥିଲେ । ଏସବୁ ତତ୍ତ୍ୱ ଆଧାରକୁ ଅଧ୍ୟୟନ କଲେ ଦୁର୍ଗାହିଁ ଆର୍ଯ୍ୟ ଏବଂ ଅନାର୍ଯ୍ୟଙ୍କ ମୁଖ୍ୟ ଉପାସକ ଥିଲେ ବୋଲି ସ୍ପଷ୍ଟ ହେଉଛି । ଓଡିଶାର କେନ୍ଦୁଝର, ମୟୂରଭଞ୍ଜ ଆଦି ଅଂଚଳରେ ବିନ୍ଧ୍ୟାଟବୀ ନାମକ ସ୍ଥାନରେ ନାଗବଂଶୀୟ ରାଜାମାନେ ରାଜୁତି କରୁଥିଲେ । ବିନ୍ଧ୍ୟାଂଚଳ ସହ ସମ୍ପୃକ୍ତ ଯାଜପୁରର ବୈତରଣୀ ଅବବାହିକାରେ ପୂର୍ବେ ବିଂଚାଲ ଜାତୀୟ ଅନାର୍ଯ୍ୟ ସମ୍ପ୍ରଦାୟ ଲୋକେ ବିନ୍ଧ୍ୟବାସିନୀ ନାମ୍ନୀ ଦେବୀଙ୍କୁ ପୂଜାର୍ଚ୍ଚନା କରୁଥିବା ଜଣାଯାଇଛି ।

ମହର୍ଷି ଅଗସ୍ତିଙ୍କ ପତ୍ନୀ ଲୋପାମୁଦ୍ରା କାଳକ୍ରମେ ବିନ୍ଧ୍ୟମସିନୀ ନାମକୁ ରୂପାନ୍ତରିତ ହୋଇ ଆରାଧିତ ହେଉଥିବାର ଦେବୀ ଭାଗବତ ବର୍ଣ୍ଣନା କରିଅଛି । ଫଳତଃ ବୈଦିକ ଯୁଗର ପରବର୍ତ୍ତୀ କାଳରେ ବୈତରଣୀ ତଟରେ ଯେଉଁ ଶକ୍ତିଚେତନାର ଅଭ୍ୟୁଦୟ ଘଟିଥିଲା, ତାହା ବିରଜା ନାମରେ ଖ୍ୟାତି ଅର୍ଜନ କରିଥିଲା ।

ମତ୍ସ୍ୟପୁରାଣରେ କୁହାଯାଇଛି ଯେ ଆଜ୍ୟପା ପିତୃଗଣଙ୍କ ମାନସୀ କନ୍ୟା ବିରଜା ଗୋଲକଧାମହିଁ ଏକାଷ୍ଟକା ଅଟନ୍ତି । ଏକଷ୍ଟକା ହେଉଛି ବିରଜାଙ୍କ ଦ୍ୱିଭୁଜା ଦେବୀ, ଯାହାକି ବୃହତ ସଂହିତାରେ ବର୍ଣ୍ଣନା କରାଯାଇଅଛି । ଏହି ଏକଷ୍ଟକା ଦେବୀ ପାର୍ବତୀଙ୍କ ଅଂଶ ହୋଇଥିବା ବେଳେ ତାଙ୍କୁ ତାନ୍ତ୍ରିକଦେବୀ ବୋଲି ବର୍ଣ୍ଣନା କରାଯାଇଛି । ସ୍କନ୍ଦପୁରାଣରେ ଏକନଂଶାଙ୍କୁ ପାବର୍ତୀଙ୍କ ଅଂଶଭୂତ ତାନ୍ତ୍ରିକଦେବୀ ବୋଲି କୁହାଯାଇଛି । ପଦ୍ମ ପୁରାଣରେ ଏକନଂଶା ଦେବୀ ବ୍ରହ୍ମାଙ୍କ ଆଦେଶରେ ବିନ୍ଧ୍ୟପବର୍ତରେ ଅବସ୍ଥାନ କରିଥିବା ପ୍ରକାଶ କରିଅଛି ।

ସେହିପରି ବୈଷ୍ଣବ ପରମ୍ପରାରେ ବିରଜାଙ୍କୁ ସୁଭଦ୍ରାଙ୍କ ସହିତ ତୁଳନା କରାଯାଇଛି । ଧାର୍ମିକ ବିବାଦର ସମାଧାନ କରିବା ପାଇଁ ପୁରୁଷୋତ୍ତମ ଦେବ ତିନି ମୁଖ୍ୟ ଧର୍ମଧାରାର କେନ୍ଦ୍ରବିନ୍ଦୁ ଜଗନ୍ନାଥ, ଲିଙ୍ଗରାଜ ଓ ବିରଜାଙ୍କୁ ସମ୍ମିଳିତ କରି ପୁରୀରେ ତ୍ରିମୂର୍ତ୍ତି ସ୍ଥାପନା କରାଇଥିବା ପ୍ରକାଶ କରିଛନ୍ତି ।

ମ୍ୟାକସମୁଲାରଙ୍କ ମତରେ ବୈଦିକ ଯୁଗରେ ବହୁ ପରେ ମୂର୍ତ୍ତି ପୂଜା ପ୍ରଚଳିତ ହୋଇଛି । ସେହି ଶକ୍ତି ବିବର୍ତ୍ତନ ମଧ୍ୟରେ ରୂପାନ୍ତରିତ ହୋଇ ପ୍ରଥମେ ବିରଜା ନାମରେ ମାନୁଷୀମୂର୍ତ୍ତି ରୂପେ ଆରାଧିତ ହୋଇଛନ୍ତି । ଭାରତବର୍ଷରେ ମା' ଦୁର୍ଗାଙ୍କର ଯେଉଁ ମୂର୍ତ୍ତିର ବିକାଶ ଲାଭ କରିଛି ସେଥିମଧ୍ୟରୁ ଦୁଇଭୁଜା ଦୁର୍ଗା ସର୍ବ ପ୍ରାଚୀନତମା ଅଟନ୍ତି ।

ମୂର୍ତ୍ତିକଳା ତତ୍ତ୍ୱ ଦୃଷ୍ଟିରୁ ବିରଜାଙ୍କ ପ୍ରତିମା ୩ଫୁଟ ଉଚ୍ଚର ହୋଇଥିବା ବେଳେ ତାହା କଳାମୁଗୁନି ପଥରରେ ନିର୍ମିତ । ତାଙ୍କର ଦୁଇହସ୍ତ । ବାମହସ୍ତରେ ମହିଷର ଲାଙ୍ଗୁଡକୁ ଟାଣି ଧରିଥିବା ବେଳେ ଦକ୍ଷିଣ ହସ୍ତରେ ମହିଷର ବକ୍ଷଦେଶକୁ ଶୂଳବିଦ୍ଧ କରିଛନ୍ତି । ମା' ମହିଷର ଉପରେ ତ୍ରିଭଙ୍ଗୀ ଶୈଳୀରେ ଦଣ୍ଡାୟମାନ ହୋଇଛନ୍ତି । ଏହି ମୂର୍ତ୍ତିରେ ମା'ଙ୍କ ବାହାନ ଅନୁପସ୍ଥିତ ରହିଛି । ମା'ଙ୍କ ମସ୍ତକରେ କିରୀଟମୁକୁଟ, ରତ୍ନହାର, କଟିସୂତ ଓ କଙ୍କଣ ପରିଧାନ କରିଛନ୍ତି । ମସ୍ତକ ଚୂଡାରେ ଗଣପତି, ବାସୁକିନାଗ, ଯୋନି, ଲିଙ୍ଗ ଓ ଚନ୍ଦ୍ର ଶୋଭାବର୍ଦ୍ଧନ କରୁଛନ୍ତି । ଏହି ପଂଚସୂତ୍ର ଅବସ୍ଥାନର ଏକ ସ୍ୱତନ୍ତ୍ର ତତ୍ତ୍ୱ ରହିଛି । ଯାହାକୁ ନେଇ ଉପରୋକ୍ତ ବର୍ଣ୍ଣନାରେ ବିଭିନ୍ନ ପୀଠରେ ଉପାସିତ ଦେବାଦେବୀଙ୍କ ସହିତ ତୁଳନୀୟ କରାଯାଇଛି । ଏହି ମୂର୍ତ୍ତିଟି ଗୁପ୍ତ ସମୟରେ ପରିସ୍ଫୁଟ ହୋଇଥିବା ମୂର୍ତ୍ତିକଳା ସୂଚିତ କରୁଛି ।

ମା' ବିରଜାଙ୍କ ବିଷୟରେ ବହୁ ଗ୍ରନ୍ଥ, ପୁରାଣ ବର୍ଣ୍ଣିତ କରାଇଥିବାରୁ ମା'ଙ୍କୁ ନାନାଦି ରୂପରେ ପୂଜିତ କରାଯାଇଥାଏ । ଦୁର୍ଗୋତ୍ସବ ସମୟରେ ମା'ଙ୍କୁ ମାହେଶ୍ୱରୀ ଦୁର୍ଗାରୂପେ ବନଦୁର୍ଗା ମନ୍ତ୍ରରେ ପୂଜା କରାଯାଇଥାଏ । ମାଘ ମାସରେ ବ୍ରାହ୍ମଣ ବା ସାବିତ୍ରୀ, ବ୍ରହ୍ମପୁରାଣରେ ବ୍ରହ୍ମାଣୀ, ଅଜ୍ୟପା ପିତୃଗଣଙ୍କ ମାନସକନ୍ୟା ତଥା ଯଯାତିଙ୍କ ଜନନୀ, ବ୍ରହ୍ମବୈବର୍ତ୍ତ ପୁରାଣରେ ଶ୍ରୀକୃଷ୍ଣଙ୍କ ସଖୀ, କର୍ମ ପୁରାଣରେ ବିରଜାନଦୀ, ମତ୍ସ୍ୟପୁରାଣରେ ବ୍ରହ୍ମଲୋକର ଏକଷ୍ଟକା ଦେବୀ ବିନ୍ଧ୍ୟବାସିନୀ ଆଦି ରୂପରେ ପୂଜା କରାଯାଇଥାଏ ।

ମୂର୍ତ୍ତି ତତ୍ତ୍ୱରେ ମା' ବିରଜା ଦୁର୍ଗାଙ୍କର ଦୁଇଭୁଜା ବିଶିଷ୍ଟ ମୂର୍ତ୍ତି ହୋଇଥିବା ବେଳେ ତାହା ଗପ୍ତ କାଳରୁ ନିର୍ମିତ ହୋଇଅଛି । ଏହି ବିଷୟରେ ଉପରେ ଆଲୋକପାତ କରାଯାଇଛି । ମୂର୍ତ୍ତିଟି ମହିଷାମର୍ଦ୍ଦିନୀଙ୍କର ଏଠାରେ ତାଙ୍କ ବାହାନ ସିଂହ ଅନୁପସ୍ଥିତ ରହିଛି । କିନ୍ତୁ ବିରଜାକ୍ଷେତ୍ର ମହିମା ବିରଜାଙ୍କ ମୂର୍ତ୍ତିରେ ସିଂହର ଉପସ୍ଥିତି ରହିଥବା ଉଲ୍ଲେଖ କରାଯାଇଛି । ଏହି ବିରଜାକ୍ଷେତ୍ର ମହିମା ପ୍ରାୟ ଷୋଡଶ ଶତାବ୍ଦୀରେ ରଚନା କରାଯାଇଛି । ଯେଉଁ ସମୟରେ ଏହି ମହାତ୍ମ୍ୟ ରଚିତ ହୋଇଅଛି, ସେହି ସମୟରେ ମୁସଲମାନ ଶାସକଙ୍କ ଦ୍ୱାରା ବିରଜାଙ୍କ ମନ୍ଦିର ଏବଂ ମା'ଙ୍କ ମୂର୍ତ୍ତି ଧ୍ୱଂସ ପ୍ରାପ୍ତ ହୋଇଥିଲା । ସମ୍ଭବତ ମୂର୍ତ୍ତି ନଥିବାରୁ ଏହି ମହାତ୍ମ୍ୟରେ ବାହାନ ସିଂହ ରହିଥିବା କଥାକୁ ଉଲ୍ଲେଖ କରାଯାଇଛି । ଏହି ଦୁଇଭୁଜା ବିଶିଷ୍ଟ ମୂର୍ତ୍ତିଟିକୁ ଖୀଷ୍ଟାବ୍ଦ ୮ମ ଶତାବ୍ଦୀ ପ୍ରର୍ଯ୍ୟନ୍ତ ପୂଜାର୍ଚ୍ଚନା କରାଯାଇଥିଲା । ଷୋଡଶ ଶତାବ୍ଦୀର ଶେଷ ପର୍ଯ୍ୟାୟରେ ଓଡିଶାରେ ସ୍ୱାଧୀନ ରାଜାଙ୍କ ଶାସନ ଲୋପପାଇବା ପରେ ଆଫଗାନ ଶାସକମାନଙ୍କ କବଳିତ ହୋଇଥିଲା । ଆଫଗାନ ଶାସକମାନେ ମନ୍ଦିର ଭାଙ୍ଗି ଚୂର୍ମାର କରିବା ସହିତ ମୂର୍ତ୍ତିଟିକୁ ଭାଙ୍ଗିଦେବା ସହିତ ଏକ କୂପ ମଧ୍ୟରେ ନିକ୍ଷେପିତ କରିଥିଲେ । ପରେ ଇଂରେଜ ଶାସନ କାଳରେ ଯାଜପୁରର ଜମିଦାର ଚୌଧୁରୀ ସୁଦର୍ଶନ ମହାପାତ୍ର ସ୍ୱପ୍ନାଦେଶ ପାଇ ବିରଜାଙ୍କ ଭଗ୍ନ ମୂର୍ତ୍ତିକୁ କୂପ ମଧ୍ୟରୁ ଉଦ୍ଧାର କରି ୮ଗୋଟି ତମ୍ବା କ୍ଲାମ୍ପ ଦ୍ୱାରା ଯୋଡାଇ ଥିଲେ । ଅଧିକନ୍ତୁ ପୁରୁଣା ମୂର୍ତ୍ତି ପ୍ରାପ୍ତ ହେବା ବେଳେକୁ ଏକ ନୂତନ ମୂର୍ତ୍ତି ନିର୍ମାଣ କାର୍ଯ୍ୟ ସମାପ୍ତ ହୋଇସାରିଥିଲା । ଯାହା ଫଳରେ ପୁରୁଣା ମୂର୍ତ୍ତିକୁ ଦକ୍ଷିଣ ପାର୍ଶ୍ୱରେ ଏବଂ ନୂତନ ମୂର୍ତ୍ତିଟିକୁ ପଶ୍ଚାତ ଭାଗରେ ରଖି ପୂଜାର୍ଚ୍ଚନା କରାଯିବାର ସୁବ୍ୟବସ୍ଥା କରାଗଲା ।

ମା' ବିରଜା ଏବଂ ଶକ୍ତି ସ୍ୱରୂପିଣୀ ମା' ଦୁର୍ଗା ଏକ ଏବଂ ଅଦ୍ୱିତୀୟ । ଶକ୍ତି ଉପାସନାର ଆୟମାରମ୍ଭ ସହିତ ଶକ୍ତିଚେତନା ଏବଂ ଧର୍ମର ସୁରକ୍ଷା ପାଇଁ ପୁରାଣରେ ମା' ବିରଜାଙ୍କୁ ବିଭିନ୍ନ ନାମରେ ଆଲୋଚନା କରାଯାଇଛି । ଏପରକି ରାଜାରାଜୁଡା ସମୟରେ ସାମାଜିକ ନ୍ୟାୟ, ରାଜନୈତିକ ସମାନତା ରକ୍ଷା କରିବାକୁ ରାଜାମହାରଜାମାନେ ମଧ ବିରଜାଙ୍କୁ ଅନ୍ୟ ଦେବାଦେବୀଙ୍କ ଉପସନା ସହିତ ଜଡିତ କରିଛନ୍ତି । ଅବଶ୍ୟ ପରବର୍ତ୍ତୀ ସମୟରେ ମା' ଦୁର୍ଗାଙ୍କର ବହୁଭୁଜା ମୂର୍ତ୍ତିମାନ ନିର୍ମାଣ କରାଯାଇଛି । ମାତ୍ର ପୂର୍ବରୁ ପୂଜିତ ଏହି ଦୁଇଭୁଜା ବିଶିଷ୍ଟ କମନୀୟ ମୂର୍ତ୍ତି ଶକ୍ତଶକ୍ତିର ବାର୍ତ୍ତାବହ ଭାବରେ ଓଡିଶା ସମେତ ଭାରତବର୍ଷରେ ଜନସାଧରଣଙ୍କ ମଧ୍ୟରେ ଆଦୃତ ଲଭିଛି, ଯେଉଁ କାରଣରୁ ଯାଜପୁରକୁ ଏକ ସ୍ୱତନ୍ତ୍ର ଶକ୍ତିକ୍ଷେତ୍ରରେ ସାରା ବିଶ୍ୱରେ ପରିଚିତ କରି ରଖିଛି । ନିଜର ସ୍ୱତନ୍ତ୍ରତା ଶକ୍ତିଧର୍ମଧାର ପାଇଁ ଏକ ଧର୍ମୀୟ ବିଶ୍ୱାସ ଚିରଦିନ ପାଇଁ ଉଜ୍ଜୀବିତ କରି ରଖିପାରିଛି ।

କଦଳା, ହରିଦାସପୁର
ଧର୍ମଶାଳା, ଯାଜପୁର



# ଯାତ୍ରା : କୋଣାର୍କର ଶ୍ରେଷ୍ଠ ବିନ୍ଧାଣି ବୈଷ୍ଣବ ପାଣି

**ବିଶ୍ୱେଶ୍ୱର ମହାନ୍ତି**

ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ଓଡ଼ିଆ ଲୋକନାଟ୍ୟ ପରମ୍ପରାକୁ ସମୃଦ୍ଧ କରି ପୁନଶ୍ଚ ତାକୁ ଅଭିଜାତ ବର୍ଗରେ ପ୍ରଚାର କରିବା ସହିତ ଲୋକପ୍ରିୟ କରିପାରିଥିବା ସେହି ମହାନ୍ ପ୍ରତିଭାର ସାରସ୍ୱତ ସ୍ରଷ୍ଟା ଶତ୍ରୁଘ୍ନ ଓରଫ୍ ବୈଷ୍ଣବ ପାଣି ଏବେ କେବଳ ଓଡ଼ିଶାବାସୀଙ୍କ ନିକଟରେ ଗୋଟିଏ ନାମରେ ପରିଚିତ, ତାହା ହେଲା - 'ଗଣକବି ବୈଷ୍ଣବ ପାଣି' । ମହାଭାରତର କବି ସାରଳା ଦାସ ଓ ଭାଗବତକାର ଅତିବଡୀ ଜଗନ୍ନାଥ ଦାସଙ୍କ ଲୋକପ୍ରିୟତା ପଛକୁ ଗଣକବି ବୈଷ୍ଣବ ପାଣିଙ୍କ ପରି ଗଣମାନସକୁ ଅଭିଭୂତ କରି ରଖିପାରିଥିବା କବି ଓଡ଼ିଆ ସାହିତ୍ୟରେ ବିରଳ । ଏହି ଅବିସ୍ମରଣୀୟ ପ୍ରତିଭାର ଅଧିକାରୀ ଗଣକବି ବୈଷ୍ଣବ ପାଣି ୧୮୮୨ ମସିହାରେ ପବିତ୍ର କୁମାର ପୂର୍ଣ୍ଣିମା ତିଥିରେ ମାତା ଚାନ୍ଦ ଦେବୀ ଓ ପିତା ସୁଦର୍ଶନ ପାଣିଙ୍କ କ୍ରୋଡ ପୂର୍ଣ୍ଣ କରି ଭୂମିଷ୍ଠ ହୋଇଥିଲେ ସଂସ୍କୃତି ସମୃଦ୍ଧ ମାହାଙ୍ଗା ଥାନା ଅନ୍ତର୍ଗତ ଚପଳାଙ୍ଗୀ ବିରୂପା ନଦୀର ତଟଦେଶ 'କୋଠପଦା' ଗ୍ରାମରେ । କୁମାର ପୂର୍ଣ୍ଣିମାରେ ଜନ୍ମଲାଭ କରି ଠିକ୍ ପୂର୍ଣ୍ଣଚନ୍ଦ୍ର ଭଳି ପ୍ରତିଭା ବିସ୍ତାର କରି ଇହଲୀଳା ସମ୍ବରଣ କଲେ ବୈଶାଖ ଅମାବାସ୍ୟା ୧୯୫୬ ମସିହାରେ ।

ଯେଉଁମାନେ ପ୍ରାଚୀନ ଓଡ଼ିଆ ସାହିତ୍ୟକୁ ଆଧୁନିକ କରିଗଲେ ସେମାନଙ୍କର ପିତା ସଦୃଶ କୋଠପଦା ମଠ ମହନ୍ତ ରଘୁନାଥ ପୁରୀ ଗୋସ୍ୱାମୀଙ୍କ ଯାତ୍ରା ଦଳରେ 'ଗୋଟିଏ ପୁଅ' ଭାବରେ ଓଡ଼ିଆ ନାଟ୍ୟ ଜଗତକୁ ପ୍ରବେଶ କରିଥିଲେ ମଧ୍ୟ ପରବର୍ତ୍ତୀ କାଳରେ ଆଧୁନିକ ଓଡ଼ିଆ ନାଟ୍ୟ ଶୈଳୀର ପ୍ରତିଷ୍ଠାତା ଓ ପ୍ରବର୍ତ୍ତକ ଭାବରେ ନିଜକୁ ସେ ପ୍ରତିଷ୍ଠିତ କରିପାରିଥିଲେ ।

କଳାପ୍ରିୟ ଉତ୍କଳୀୟ ସାଂସ୍କୃତିକ ଜୀବନରେ ନୃତ୍ୟ ଓ ଗୀତ ବହୁ ପ୍ରାଚୀନ କାଳରୁ ପ୍ରଚଳିତ । ଏହାର ସମୟ ନିରୂପଣ କରିବା ସମ୍ଭବପର ନୁହେଁ । ଦ୍ୱାଦଶ ଶତାବ୍ଦୀରେ କବି ଜୟଦେବଙ୍କ ଦ୍ୱାରା ରଚିତ 'ଗୀତଗୋବିନ୍ଦ'କୁ ଉତ୍କଳର ପ୍ରଥମ ଗୀତାଭିନୟ ଭାବେ ଗ୍ରହଣ କରାଯାଇଥାଏ । ଗୀତିନାଟ୍ୟ ସମ୍ରାଟ ବୈଷ୍ଣବ ପାଣି ବହୁ ଗୀତାଭିନୟ ସ୍ରଷ୍ଟା ହେଲେ ମଧ୍ୟ ଗୀତାଭିନୟକୁ ଗୀତିନାଟ୍ୟରେ ପରିବର୍ତ୍ତିତ କରିବାରେ ତାଙ୍କର ଉଦ୍ୟମ ବାସ୍ତବିକ ଅବିସ୍ମରଣୀୟ । ପାଶ୍ଚାତ୍ୟ ସଂସ୍କୃତି ଓ ସାହିତ୍ୟ ପ୍ରଭାବରେ ଯେତେବେଳେ ଓଡ଼ିଶାର ପାରମ୍ପରିକ ନାଟ୍ୟକଳା ବିଲୁପ୍ତ ପ୍ରାୟ, ବୈଷ୍ଣବ ପାଣି ସେତିକିବେଳେ ସ୍ୱୀୟ ପ୍ରତିଭା ବଳରେ ଗ୍ରାମୀଣ ଶବ୍ଦ ପ୍ରୟୋଗ କରି ବେଶ୍ ଜନପ୍ରିୟ ହୋଇଗଲେ । ସେଇଥିପାଇଁ ତାଙ୍କୁ ପ୍ରାଚୀନ ଓ ଆଧୁନିକ ନାଟ୍ୟଶୈଳୀର ସଂଯୋଜକ ସେତୁ ଭାବେ ଅଭିହିତ କରାଯାଇଛି । ରାଧାନାଥ ଯୁଗର ପ୍ରଚଣ୍ଡ ମଧ୍ୟାହ୍ନ ସମୟରେ ସେ ଓଡ଼ିଆ ଯାତ୍ରାର ଭିତ୍ତିଭୂମିକୁ ସୁଦୃଢ଼ କରିବାକୁ ଅଣ୍ଟାଭିଡି ଆଗେଇ ଆସିଥିଲେ । ପୁରାଣ ସାହିତ୍ୟର ଚୁପୁଡା ରସକୁ ଗଣବୋଧ ଭାଷା ଓ ଭାବର ପ୍ରଲେପ ଦେଇ ସେ ସୃଷ୍ଟି କଲେ ଅସଂଖ୍ୟ ସୁଆଙ୍ଗ, ଗୀତିନାଟ୍ୟ ଓ ଗୀତାଭିନୟ । ପୌରାଣିକ, ଐତିହାସିକ, କାଳ୍ପନିକ ବିଷୟବସ୍ତୁକୁ ଆଧାର କରି ସେ ଗୀତିନାଟ୍ୟମାନ ରଚନା କରିଥିଲେ । ଗୀତିନାଟ୍ୟଠାରୁ ଆରମ୍ଭ କରି ଗୀତାଭିନୟ ପର୍ଯ୍ୟନ୍ତ ସବୁଥିରେ ସେ ଉଚ୍ଚମାନର ଉଚ୍ଚନାଟ୍ୟ ପରମ୍ପରା ସୃଷ୍ଟି କରି ନିଜ ସିଦ୍ଧହସ୍ତତାର ପରିଚୟ ଦେଇଛନ୍ତି । ତାଙ୍କ ଗୀତିନାଟ୍ୟମାନଙ୍କରେ ସଂଗୀତ ଏକ ମୁଖ୍ୟ ଓ ଅପରିହାର୍ଯ୍ୟ ଅଙ୍ଗଭାବେ ବରାବର ସ୍ଥାନ ପାଇଛି । ନୃତ୍ୟ ସହିତ

ସଂଗୀତର ଅବିଚ୍ଛେଦ୍ୟ ସମ୍ପର୍କ ପରି ଗଣକବିଙ୍କ ରଚନାରେ ସାଙ୍ଗୀତିକ ଆବେଗ ଓ ରସଚେତନା ମିଶିକରି ରହିଅଛି । ସେଥିପାଇଁ ଗ୍ରାମାଞ୍ଚଳରେ ତୁଣ୍ଡେ ତୁଣ୍ଡେ ରହିଯାଇଛି ପାଣି କବିଙ୍କ ସଂଗୀତ । ଆଜିବି ହାଣ୍ଡିଶାଳରେ ଗୁଣୁଗୁଣୁ ହୋଇ ନୂଆ ବୋହୂମାନେ ଏବଂ ଫୁଲ ବଉଳବେଣୀ ଗୀତ ସହିତ କୁଆଁରୀ ଝିଅମାନେ ଗାଆନ୍ତି ବୈଷ୍ଣବ ପାଣିଙ୍କ ସଂଗୀତ '' ଦୁଃଖୀଧନ ନୀଳମଣିରେ ମାଆ ବୋଲି କିଏ ଡାକିବ ମତେ' । ସାହିତ୍ୟକୁ ପୁରପଲ୍ଲୀରେ ସର୍ବତ୍ର ପହଞ୍ଚାଇ ଦେବା ଥିଲା ତାଙ୍କର ବଡ କୃତିତ୍ୱ । ରୀତିଯୁଗ ଓ ତତ୍‌ପରବର୍ତ୍ତୀ ରାଧାନାଥ ଯୁଗ ସାହିତ୍ୟରେ ଜନସାଧାରଣଙ୍କ ପ୍ରବେଶ ପ୍ରାୟ ନଥିଲା କହିଲେ ଚଳେ । ମାତ୍ର ବୈଷ୍ଣବ ପାଣିଙ୍କ ଲେଖନୀର କୁହୁକ ସ୍ପର୍ଶରେ ସାହିତ୍ୟ ଗଣାଭିମୁଖୀ ହୋଇପାରିଲା । ଆଜି ରେଡିଓ ଏବଂ ଟେଲିଭିଜନର ପ୍ରବଳ ପ୍ରଭାବ ଓ ପ୍ରଚାର ସତ୍ତ୍ୱେ ତାଙ୍କ ଗୀତିନାଟ୍ୟର ଚାହିଦା ପୂର୍ବପରି ସତେଜ ଓ ସଜୀବ ରହିଅଛି । ଏବେବି ଗଣଜୀବନରେ ତାଙ୍କ ରଚିତ ଗୀତିନାଟ୍ୟର ଆଦୃତି ଅମଳିନ ରହିଅଛି ।

ଗଣକବି ବୈଷ୍ଣବ ପାଣି ଯଥାର୍ଥରେ ଥିଲେ ଜଣେ ସମାଜ ସଚେତନ କବି । ତାଙ୍କ ଲେଖନୀରେ ସମାଜର ବାସ୍ତବ ଜୀବନର ବର୍ଣ୍ଣନା ଏକାନ୍ତ ସଜୀବ ହୋଇଅଛି । କବିଙ୍କ ନାଟ୍ୟକର 'ଦୁଆରୀ' ଚରିତ୍ର ହାସ୍ୟରସ ପରିବେଷଣରେ ସଂସ୍କୃତ ନାଟକର ବିଦୂଷକକୁ ବଳି ଯାଇଅଛି । ଲୋକଙ୍କ ଭିତରେ ଯେଉଁ ପ୍ରକାର ଥଟ୍ଟା ତାମସା ଚାଲିଥିଲା ସେ ତାକୁ ନିଜ ଗୀତିନାଟ୍ୟରେ 'ଦୁଆରୀ' ମୁହଁରେ ସରସ ରୂପ ଦେଉଥିଲେ । ଦୁଆରୀ ବାହାରିବା ମାତ୍ରକେ ଦର୍ଶକସମାଜ ଆନନ୍ଦରେ କୁରୁଳି ଉଠୁଥିଲେ । ଦର୍ଶକ କେବଳ ହସିବା ପାଇଁ ନ ହସୁ, ଏହି ହସିବା ଭିତରେ ଏକ ସ୍ଥାୟୀ ଭାବ ସଞ୍ଚାର ହେଉ, କବି ଏଥିପାଇଁ ଥିଲେ ସଚେତନ । ପୁରାତନକୁ ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରି ତାକୁ ଆଧୁନିକତାର ରଙ୍ଗରେ ରଙ୍ଗୀନ କରିବା ଥିଲା କବିଙ୍କର ଆଭିମୁଖ୍ୟ । କାଞ୍ଜି, ମୁଢି ପ୍ରାୟ ପ୍ରତ୍ୟେକ ଓଡ଼ିଆର ପ୍ରିୟ ଖାଦ୍ୟ । ରୀତିଯୁଗ ସାହିତ୍ୟ ସଂସାରରେ ଏହି କ୍ଷୁଦ୍ର ଖାଦ୍ୟ ପଦାର୍ଥର ସ୍ଥାନ ପ୍ରାୟ ନଥିଲା କହିଲେ ଚଳେ । ବୈଷ୍ଣବ ପାଣି ପ୍ରଥମ କରି କାଞ୍ଜି, ମୁଢି, ମଞ୍ଜାରାଇ ପ୍ରଭୃତି ପଲ୍ଲୀଭିତ୍ତିକ ଖାଦ୍ୟ ସାମଗ୍ରୀକୁ ନିଜ ସାହିତ୍ୟ ସଂସାର ଭିତରକୁ ଆଦରର ସହିତ ଅଭ୍ୟର୍ଥନା କରି ଆଣି ନୂଆ ଢଙ୍ଗରେ, ନୂଆ ରସରେ, ନୂଆ ଛନ୍ଦରେ ମଣ୍ଡିତ କରି ହୋଇଛନ୍ତି ଗଣକବି । 'କାଞ୍ଜି' ଉପରେ ଗୀତ ଲେଖି ତାକୁ ଦୁଆରୀ ମୁଖରେ ଗୀତିନାଟ୍ୟ ଭିତରେ ପରିବେଷଣ କରାଇ ହାସ୍ୟରସ ସୃଷ୍ଟି କରି ନୀତିଶିକ୍ଷା ଦେବାରେ କବି କିପରି ସିଦ୍ଧହସ୍ତ ହୋଇଛନ୍ତି, ତାହା ଲକ୍ଷ୍ୟ କରନ୍ତୁ-

'ଧନ୍ୟଧନ୍ୟ ଧନ୍ୟରେ କାଞ୍ଜି
ତୋର ଋଣ କିଏ ପାରିବ ଶୁଝି
ଶୀତ ତୋର ମିତ ତୁ ତାହାକୁ ହିତ
ପିତ୍ତ ପଳାଏ ରାଇଜ ତେଜି ।

ପୁନଶ୍ଚ ଅନ୍ୟ ଏକ ଫାର୍ସରେ କବିଙ୍କ ଦୁଆରୀ ସାମଜିକ ଚେତନା ଦେବାକୁ ଯାଇ ଦର୍ଶକଙ୍କୁ ଚେତାବନୀ ଦେଇ ଗାଇଛି-

'ପାଠ ପଢିବି ମୁଁ ପାଠ ପଢିବି
ମଧୁବାବୁଙ୍କ ସଙ୍ଗେ ଲଢିବି
ଭାରିଯାକୁ ହେବି କୋଟି ଦଣ୍ଡବତ
ମାଆ ମୁଣ୍ଡେ ବିଧା କୋଡିବି'

ଆଜି ସକଳ ପାଠର ମୂଳରେ ଚାକିରି । ସତେଯେମିତି ଆଉ କିଛି ପନ୍ଥା ନାହିଁ । ଚାକିରି ପାଗଳ ଯୁବକଙ୍କୁ ଚେତାଇ ଦେଇ କବିଙ୍କ ଦୁଆରୀ ଗାଇଛି-

'ରଖିବି ପଛକେ ବକିରି, କରିବି ନାହିଁ ମୁଁ ଚାକିରି
ଆଣି ଛେଳିମେଣ୍ଢା ପାଳି ଗଣ୍ଡାଗଣ୍ଡା କରିବି ତାହାକୁ ବିକିରି ।'

ଆଜିର ସମାଜରେ ନାରୀରଙ୍କା ଓ ମଦ୍ୟପଙ୍କ ସଂଖ୍ୟା ପ୍ରବଳ ଭାବରେ ବୃଦ୍ଧି ପାଉଛି । ସ୍ୱଧର୍ମରୁ ସମସ୍ତେ ବିଚ୍ୟୁତ ହେଲେଣି । ଦିଗହରା ମଣିଷମାନଙ୍କୁ ଚେତାବନୀ ଦେଇ 'ରାବଣ ବଧ' ଗୀତିନାଟ୍ୟରେ କବି ଲେଖିଛନ୍ତି :

'ଯେ କରିବ ନାରୀ ଚୋରି ସେ ହେବ ରାବଣ ପରି
ବଇଷ୍ଣବ ବୋଲେ ଆୟୁ ଥାଉଥାଉ ନେବ ଜନ୍ତୁପତି ଧରି' ।

ପୂର୍ବେ 'ଯାତ୍ରା'ରେ ଭିନ୍ନଭିନ୍ନ ଭୂମିକା ପାଇଁ ପାତ୍ର ପାତ୍ରୀ ପୃଥକ ନହୋଇ ସାଧାରଣତଃ ରାଜା, ରାଣୀ ଓ ଦୁଆରୀ- ଏହି ତିନି ଜଣଙ୍କ ଦ୍ୱାରା ଆଖ୍ୟାୟିକାମାନ ନାନା ଛନ୍ଦରେ ଗାନ କରାଯାଉଥିଲା । ପ୍ରଥମ କରି ବୈଷ୍ଣବ ପାଣି ଭିନ୍ନ ଭିନ୍ନ ଭୂମିକା

ପାଇଁ ଭିନ୍ନ ଭିନ୍ନ ପାତ୍ରପାତ୍ରୀର ପ୍ରବର୍ତ୍ତନ କଲେ । ପ୍ରତ୍ୟେକଙ୍କ କଥିତବ୍ୟ ବିଷୟ ଭିନ୍ନଭିନ୍ନ ରାଗରାଗିଣୀ ଦେଇ ସଂଗୀତ ଆକାରରେ ରଚନା କରି ତାଙ୍କ ଗୀତିନାଟ୍ୟରେ ପ୍ରଚଳନ କଲେ ଏବଂ ଚରିତ୍ରମାନଙ୍କ ମୁଖରେ ସେ ପ୍ରଥମେ ବଚନିକା ଓ ସଂଳାପ ସଂଯୋଗ କଲେ । ଲଳିତ ସଂଗୀତ, ଭାବାନୁଯାୟୀ ଛନ୍ଦ, ଗାଉଁଲି ଭାଷାର ଶବ୍ଦ ତଥା ସଂଳାପମାନ ପ୍ରୟୋଗ କରି ମୁକ୍ତ ରଙ୍ଗମଞ୍ଚରେ ସାମାନ୍ୟ କେତୋଟି ବାଦ୍ୟଯନ୍ତ୍ରକୁ ସମ୍ବଳ କରି ବିଶାଳ ଜନମାନସକୁ ଆକୃଷ୍ଟ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ରସପିପାସୁ ମନର ରସ କଦମ୍ବରେ ଶିହରଣ ସୃଷ୍ଟି କରିବାରେ ସେ ସମର୍ଥ ହୋଇପାରିଥିଲେ । ବାସ୍ତବିକ ସେ ଗତାନୁଗତିକ ଓଡ଼ିଆ ଯାତ୍ରା ନାଟକର ମୋଡକୁ ବଦଳାଇ ଦେବା ସଙ୍ଗେ ସଙ୍ଗେ କଳିଙ୍ଗର ସୁପ୍ରାଚୀନ ମୁକ୍ତ ରଙ୍ଗ ମଞ୍ଚକୁ ସମୃଦ୍ଧ ଓ ଓଡ଼ିଆ ଯାତ୍ରା ସାହିତ୍ୟକୁ ଋଦ୍ଧିମନ୍ତ କରି ଦେଇଛନ୍ତି । କବିଙ୍କର ଭାଷା ଥିଲା ନିଛକ ଗାଉଁଲି । ତେଣୁ ତାଙ୍କର ଗୀତିନାଟ୍ୟଗୁଡ଼ିକ ବିଶେଷ ଲୋକପ୍ରିୟତା ହାସଲ କରିବା ସ୍ୱାଭାବିକ । ଫକୀର ମୋହନ ସେନାପତିଙ୍କ ପରି ତାଙ୍କ ଚରିତ୍ରମାନଙ୍କର ସଂଳାପ, ସ୍ୱଗତୋକ୍ତି ଓ କାର୍ଯ୍ୟକଳାପରେ ଚାରିତ୍ରିକ ବିଶେଷତ୍ୱ ସୁସ୍ପଷ୍ଟ । ବ୍ୟାସ କବିଙ୍କ ପରି ସେ ମଧ୍ୟ ଗ୍ରାମ୍ୟ ଚରିତ୍ରମାନଙ୍କୁ ଆହରଣ କରି ନିଜ ଧୂରୀଣତାର ପରିଚୟ ଦେଇଛନ୍ତି । ତାଙ୍କ ରଚିତ ଗୀତିନାଟ୍ୟମାନଙ୍କରେ ପୌରାଣିକ ଚରିତ୍ରମାନଙ୍କୁ ଗ୍ରାମୀଣ ଚରିତ୍ର ଭାବରେ ଚିତ୍ରଣ କରିବାରେ ସେ ଥିଲେ ସିଦ୍ଧହସ୍ତ । କେବଳ ସଂଖ୍ୟାତ୍ମକ ଦୃଷ୍ଟିରୁ ନୁହେଁ, ଗୁଣାତ୍ମକ ଦୃଷ୍ଟିରୁ ବୈଷ୍ଣବ ପାଣିଙ୍କ ଗୀତିନାଟ୍ୟଗୁଡ଼ିକ ଗରୀୟାନ, ସଜୀବ ତଥା ରସାତ୍ମକ । ନବରସରେ ତାଙ୍କ ଗୀତିନାଟ୍ୟଗୁଡ଼ିକ ରସାଣିତ ।

ଓଡ଼ିଶାର ଜନଜୀବନକୁ କବି ତାଙ୍କ ନାଟକମାନଙ୍କରେ ଜୀବନ୍ତ ରୂପ ଦେଇଛନ୍ତି । ରାଜ୍ୟର ଉପକୂଳବର୍ତ୍ତୀ ଅଞ୍ଚଳ, ଗଡଜାତ ଅଞ୍ଚଳ ତଥା ପ୍ରବାସରେ ବୁଲିବୁଲି ସେ ତାଙ୍କ ଗୀତିନାଟ୍ୟ ମାଧ୍ୟମରେ ସ୍ୱାଧୀନତାର ବାର୍ତ୍ତା ପ୍ରଚାର କରି ଆମ ଭାରତୀୟ ଜାତୀୟ ସଂଗ୍ରାମକୁ ଉଜ୍ଜୀବିତ କରିଥିଲେ । ଗଣକବି ବୈଷ୍ଣବ ପାଣି ଯେ ଜଣେ କୃତୀ ଗୀତିନାଟ୍ୟକାର ଥିଲେ ତାହା ନୁହେଁ, ଚଳିତ ଶତାବ୍ଦୀର ପ୍ରଥମ ପାଦରେ ସେ ଜଣେ ମୁଖ୍ୟ କବି ମଧ୍ୟ । ତାଙ୍କ ରଚିତ ଚଉତିଶା, ଭଜନ, ଜଣାଣ, ଭାଗବତ, ଫାର୍ସ, ଶରୀର ଭେଦ ଭଜନ ପ୍ରତି ଧ୍ୟାନ ଦେଲେ ଜଣାଯାଏ ଯେ, କବିଙ୍କ ପ୍ରତିଭା ବହୁ ରଶ୍ମିଯୁକ୍ତ ଥିଲା ।

ନିଜେ ବୈଷ୍ଣବ ପାଣି ବହୁ ଭଜନ ଜଣାଣ ଓ ଚଉତିଶାମାନ ରଚନା କରିଯାଇଛନ୍ତି । ସେ ଭଗବାନଙ୍କ ବିରୁଦ୍ଧରେ ବିଦ୍ରୋହ କରିବାକୁ ପଛେଇ ଯାଇ ନାହାଁନ୍ତି । ଏହାହିଁ ତାଙ୍କ ମୌଳିକ କବି ପ୍ରତିଭାର କ୍ରାନ୍ତି ଓ ଉତ୍କ୍ରାନ୍ତି । ସେ ନିୟତିର ଅପ୍ରତିହତ ପ୍ରଭାବ କଥା ସୂଚାଇଛନ୍ତି, ମାତ୍ର ନିୟତି ଭିତରେ ବାନ୍ଧି ହୋଇ ଯାଇ ନାହାଁନ୍ତି । ରାମ, କୃଷ୍ଣ, ଶିବ ଓ ଜଗନ୍ନାଥଙ୍କୁ ନେଇ ସେ ଯେପରି ଭକ୍ତି ସଙ୍ଗୀତ ରଚନା କରିଛନ୍ତି, ସେହିପରି ମଧ୍ୟ ନିର୍ଗୁଣ ବ୍ରହ୍ମଙ୍କୁ ନେଇ ରଚନା କରିଛନ୍ତି ରାଶିରାଶି ଭକ୍ତି ସଙ୍ଗୀତ । ଏସବୁ ଭିତରେ ନିର୍ମଳପ୍ରେମ ଭକ୍ତି ହିଁ ତାଙ୍କର ଆଦର୍ଶ । ଦୁରାରୋଗ୍ୟ ବ୍ୟାଧି କବଳରେ ପଡି ସେ ଜଗନ୍ନାଥଙ୍କୁ ଗାଳିଦେଇ ଗାଇଛନ୍ତି,

'ଛାଡ ମାଡଖିଆ ବୁଦ୍ଧି ହେ
ବଡ ଦେଉଳେ ବଡ ଗୋସାଇଁ
ଯେ ମାଇଲା ମାଡ ସେ ହୋଇଲା ବଡ
ବାଡ ହେଲୁ ତାକୁ ତୁହି' ।

ଏହି ଭଜନ ଜଗନ୍ନାଥଙ୍କ ପାଖରେ ଗାଇ କବି ଆରୋଗ୍ୟ ଲାଭ କରିଛନ୍ତି । ଜଗନ୍ନାଥଙ୍କର ଜଣେ ବିନୀତ ଭକ୍ତ ସେ । ରାଶିରାଶି ଭକ୍ତି ସଙ୍ଗୀତ ରଚନା କରି ସେ ଆପଣାର ଗଭୀର ବିଭୁବୋଧକୁ ପ୍ରକାଶ କରି ହୋଇପାରିଛନ୍ତି ଜଣେ ସାର୍ଥକ ଭକ୍ତ କବି ।

'ଚକ୍ରଧର ଚଉବାହା ଚରଣ କମଳେ ନଦେଲେ ରାହା
ଜଗବନ୍ଧୁ ହେ ମତେ ଚରମେ କେ ହେବ ସାହା ।'

ଓଡ଼ିଆ ଯାତ୍ରା ସାହିତ୍ୟର କ୍ରମବିକାଶ ଦିଗରେ ଯେଉଁମାନେ ଆଜି ସ୍ମରଣୀୟ ହୋଇ ରହିଛନ୍ତି, ସେମାନଙ୍କ ମଧ୍ୟରେ ଗୋପାଳ ଦାସ, ଜଗନ୍ନାଥ ପାଣି, ବୈଷ୍ଣବ ପାଣି, ବାଳକୃଷ୍ଣ ମହାନ୍ତି, ରାମଚନ୍ଦ୍ର ସ୍ୱାଇଁ, କୃଷ୍ଣ ପ୍ରସାଦ ବସୁ, କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ ପ୍ରମୁଖ ଅନ୍ୟତମ । କିନ୍ତୁ ଏହି ସ୍ରଷ୍ଟାଗଣଙ୍କ ମଧ୍ୟରେ ବୈଷ୍ଣବ ପାଣିଙ୍କ ଗୀତିନାଟ୍ୟ ବେଶୀ ଲୋକପ୍ରିୟତା ହାସଲ କରିବାର କାରଣ ହେଲା- ଶବ୍ଦ ପ୍ରୟୋଗରେ ମିତବ୍ୟୟିତା ତଥା ଗ୍ରାମୀଣତା । ପୌରାଣିକ କଥାବସ୍ତୁ ନିର୍ବାଚନରେ ନିଜସ୍ୱ ଅନ୍ତର୍ଦୃଷ୍ଟି ସମାଜ ଜୀବନ ପ୍ରତି ସଚେତନ ଶାଣିତ ଦୃଷ୍ଟିଭଙ୍ଗୀ, ଶ୍ରୁତି ମଧୁର ଶବ୍ଦ ସମ୍ଭାରର ଯଥୋଚିତ ପ୍ରୟୋଗ ତଥା ଆଶୁ କବିତ୍ୱର କାଉଁରୀ ସ୍ପର୍ଶ, ଏହା

ହିଁ ଗଣକବି ବୈଷ୍ଣବ ପାଣିଙ୍କୁ ଜନାଦୃତ କରିପାରିଥିଲା । ଦାରିଦ୍ର୍ୟର ବହ୍ନିବଳୟ ଭିତରେ ସତତ ଦଗ୍ଧୀଭୂତ ହୋଇ ପରିସ୍ଥିତିର ତାଡନାରେ କୋଠପଦା ମଠରେ ଫୁଲତୋଳା, ଗାଈ ଜଗୁଆଳଠାରୁ ଆରମ୍ଭ କରି ଆଠଅଣା ପଇସାରେ ରୋଷେଇଆ ଭାବେ କାମ କରି ଜୀବିକା ନିର୍ବାହ କରୁଥିବା ବୈଷ୍ଣବ ପାଣି ନିଜର ସାଧନା, ଅସାଧାରଣ ଅନୁଭୂତି ବିଶେଷ କରି ବିନୋଦ ବିହାରୀଙ୍କଠାରୁ ବରଲାଭ କରି ଆଜି ସେ ଓଡ଼ିଆ ଯାତ୍ରା ପରମ୍ପରାର ଅପ୍ରତିଦ୍ୱନ୍ଦ୍ୱୀ ମୁକୁଟ ବିହୀନ ସମ୍ରାଟ ତଥା ଆଧୁନିକ ଯାତ୍ରା ନାଟକର ଅନ୍ୟତମ ଦିଗ୍‌ଦର୍ଶକ ହୋଇପାରିଛନ୍ତି ।

ସାହାପୁର, କୁମୁଡା ଜୟପୁର (ମାହାଙ୍ଗା)
କଟକ- ୭୫୪୨୮୭

# ମା' ଦୁର୍ଗତିନାଶିନୀ ଦୁର୍ଗା

**ଇଂଜିନିୟର ରଘୁନାଥ ପାତ୍ର**

ପ୍ରତାପୀ ମହିଷାସୁର ପିତା ସିନ୍ଧୁ ଦ୍ୱୀପ
ସୁପାର୍ଶ୍ୱ ଋଷି ସନ୍ତାନ ମହା ଓଜଃଶୀଳ
ଦୈତ୍ୟରାଜ ବିପ୍ରଚିତ୍ତ କନ୍ୟା ମହିଷ୍ମତୀ
ଅପୂର୍ବ ଲାବଣ୍ୟ ଦେଖି କାମେ ହେଲା ଭୋଳ ।
ସିନ୍ଧୁ ଦ୍ୱୀପ ଔରସରୁ ମହିଷ୍ମତୀ ଗର୍ଭୁ
ମହିଷାସୁରର ଜନ୍ମ, ହେଲା ତପସ୍ୱୀଚାରୀ
ବ୍ରହ୍ମାଙ୍କୁ ଅମର ବର ମାଗିଲା ରାକ୍ଷସ
କହିଲେ ବ୍ରହ୍ମା 'ବଧିବ ତତେ ଏକ ନାରୀ' ।
ତାଚ୍ଛଲ୍ୟ କରି ବ୍ରହ୍ମାଙ୍କୁ କହିଲା ମହିଷା
ରଣାଙ୍ଗନେ ଯେଉଁ ନାରୀ ମୁକ୍ତ ଯଉବନ
ଦେଖାଇ ପାରିବ ମତେ ବଧିବ, ବିରଞ୍ଚି !
ତଥାସ୍ତୁ କହିଲେ ମନ୍ଦହାସ୍ୟେ ପଦ୍ମାସନ ।
ମହିଷା ଭାବିଲା ଏହା ଅତି ଅସମ୍ଭବ
ରଣାଙ୍ଗନେ ସେନା ଆଗେ ନାରୀ ବା କିପରି
ଦେଖାଇ ପାରିବ ତା'ର ମୁକ୍ତ ଯଉବନ ?
ଭାବିଲା, ଅମର ହୋଇ ରହିବ ଏପରି ।
ହେଲା ବଡ ପରାକ୍ରମୀ, ଅତ୍ୟାଚାରୀ ଦୈତ୍ୟ
ସ୍ୱର୍ଗ ଆକ୍ରମଣ କରି ତଡିଲା ଅମରେ
ଅମରାବତୀରେ କଲା ପ୍ରଭୁତ୍ୱ ବିସ୍ତାର
ତ୍ରାହି ତ୍ରାହି ଡାକଦେଲେ ଦେବତା ସକଳେ ।
ବ୍ରହ୍ମା ଶିବ ବିଷ୍ଣୁ ଆଗେ ଅମର ସକଳ
ସଶ୍ରୁଳ ନେତ୍ରେ ପ୍ରାର୍ଥନା କଲେ କର ଯୋଡି
ତ୍ରିଦଶ ଶରୀରୁ କ୍ରୋଧେ ସୃଷ୍ଟି କଲେ ତେଜ
ଏକୀଭୂତ ହୋଇ ତେଜ ସୃଷ୍ଟି କଲା ନାରୀ ।
ଦୁର୍ଗତିନାଶିନୀ ଦୁର୍ଗା ହେଲେ ଆବିର୍ଭୂତା
ଯୁଦ୍ଧ କରିବାକୁ ଦେବୀ ଦାନବ ସହିତ
ଦେବ ଗଣ ଅସ୍ତ୍ରଶସ୍ତ୍ର କରିଲେ ପ୍ରଦାନ
କମଣ୍ଡଳୁ ଦେଲେ ବ୍ରହ୍ମା, ତ୍ରିଶୂଳ ଶ୍ରୀକଣ୍ଠ ।
ବିଷ୍ଣୁ ଚକ୍ର, ସୂର୍ଯ୍ୟ ଜ୍ୱାଳା, ବାୟୁ ଧନୁର୍ବାଣ
ଅଗ୍ନି ଦହନ, ବରୁଣ ଶଙ୍ଖ, ବଜ୍ର ଇନ୍ଦ୍ର
ଯମ ଦେଲେ କାଳ ଦଣ୍ଡ, ଏପରି ସକଳ
ପ୍ରଦାନ କଲେ ଦେବୀଙ୍କୁ କରିବାକୁ ଯୁଦ୍ଧ ।
ଘମାଘୋଟ ଯୁଦ୍ଧ କରି ହେବାରୁ ବିଫଳ
ସ୍ମରଣ କରିଲେ ଦେବୀ ବ୍ରହ୍ମାଙ୍କର ବର
ବିବସ୍ତ୍ର ହେଲେ ସୁନ୍ଦର ନାରୀ ରୂପ ଧରି
ମୁକ୍ତ ଯୌବନ ଦର୍ଶନେ ଦୈତ୍ୟ ହୀନବଳ ।
ଉପ୍ରୋଧ ନକରି ଦେବୀ ମହିଷା ହୃଦୟେ
ତ୍ରିଶୂଳକୁ କଲେ ଭେଦ, ମଲା ଦୈତ୍ୟରାଜ
ତେଣୁ ଏ ଶରତ ଶୁକ୍ଳ ଆଶ୍ୱିନ ଦଶମୀ
'ବିଜୟା ଦଶମୀ' ନାମେ ସୁବିଦିତ ଆଜ ।
ଦେବଙ୍କ ଦୁର୍ଗତି ନାଶୀ 'ଦୁର୍ଗା' ନାମେ ଖ୍ୟାତ
ଅମରଙ୍କ ଦଶାହରି ହେଲେ ଦଶାହରା
କାଳନ୍ତରେ ଦଶାହରା 'ଦଶହରା' ରୂପେ
ଲୋକ ମୁଖେ ପରିଚିତ ହେଲା ଦେଶ ସାରା ।
କବି ରଘୁ ଭାଷେ ଦେବୀ ଦୁର୍ଗତିନାଶିନୀ
କଲ୍ୟାଣମୟୀ ଜନନୀ, ବ୍ରହ୍ମାନନ୍ଦମୟୀ
ବଦ୍ଧ ଜୀବ ! ଚାହୁଁ ଯଦି ସୁଖ ଶାନ୍ତି ମୈତ୍ରୀ
ଜୀବନ ବିତାଅ ଦେବୀ ପାଦପଦ୍ମ ଧ୍ୟାୟୀ ।

ବୃନ୍ଦାବନ ଧାମ
ଲୋକନାଥ ରୋଡ, ପାଟଣାହାଟ ସାହି ଛକ,
ପୁରୀ- ୭୫୨୦୦୧

# ଦଶ ମହାବିଦ୍ୟା

**ଶିବସୁନ୍ଦର ପଟ୍ଟନାୟକ**

ଆଦ୍ୟାଶକ୍ତି ଦୁର୍ଗତିନାଶିନୀ, ଶକ୍ତି ପ୍ରଦାୟିନୀ, ଆଦିମାତା ଭଗବତୀ ପରମେଶ୍ୱର ପରମବ୍ରହ୍ମ ଭଗବାନଙ୍କ ନିର୍ଦ୍ଦେଶ ତଥା ନିଜ ଭକ୍ତମାନଙ୍କ ପ୍ରସନ୍ନତା ନିମନ୍ତେ ବିଭିନ୍ନ ରୂପ ନେଇ ପ୍ରକଟିତ ହୋଇଥିଲେ । ଏହିସବୁ ରୂପ ଭଗବତୀ ଯୋଗାମାୟାଙ୍କ ପରାଶକ୍ତି ବଳରେ ହୋଇଥାଏ । ଭଗବତୀ ଦକ୍ଷକନ୍ୟା ସତୀ ରୂପ ନେଇ ଦେବଦେବ ଶିବଙ୍କୁ ବିବାହ କରିଥିଲେ । ସତୀଙ୍କଠାରୁ ଜାତ ଦଶ ମହାବିଦ୍ୟା ଦେବୀମାନେ ଶିବଙ୍କ ନିକଟରେ ପ୍ରଥମେ ପ୍ରକଟିତ ହୋଇଥିଲେ । ଏହି ଦେବୀମାନେ ଭକ୍ତମାନଙ୍କୁ ମୋକ୍ଷ ପଥରେ ଆଗେଇ ନେଇଥାନ୍ତି ।



ପୁରାଣବର୍ଣ୍ଣିତ ଏକ ଦେବ ସଭାରେ ସତୀଙ୍କ ସ୍ୱାମୀ ଶିବ ଦକ୍ଷ ପ୍ରଜାପତିଙ୍କୁ ଉପଯୁକ୍ତ ସମ୍ମାନ କରିନଥିବା ଅଭିଯୋଗରେ ଶ୍ୱଶୁର କ୍ଷୁବ୍ଧ ହୋଇଥିଲେ । ଏ ଘଟଣା ପରେ ଦକ୍ଷ ଏକ ଯଜ୍ଞ କଲେ । ଯେଉଁଥିରେ ସମସ୍ତ ଦେବତା ଓ ମୁନିଋଷିମାନଙ୍କୁ ଏବଂ ଅନ୍ୟ ଜ୍ୱାଇଁ ଓ କନ୍ୟାମାନଙ୍କୁ ଆମନ୍ତ୍ରଣ କରିଥିଲେ ହେଁ ନିଜର କନ୍ୟା ସତୀ ଓ ତାଙ୍କର ସ୍ୱାମୀ ଶିବଙ୍କୁ ଉକ୍ତ ଯଜ୍ଞକୁ ଆମନ୍ତ୍ରଣ କରିନଥିଲେ । ସେ ଯଜ୍ଞ ଦେଖିବା ପାଇଁ ସତୀ ଆଗ୍ରହ ପ୍ରକାଶ କଲେ ମଧ୍ୟ ଶିବ ନିମନ୍ତ୍ରିତ ନ ହୋଇଥିବାରୁ ଅପମାନିତ ମନେ କରିଥିଲେ ଏବଂ ଯଜ୍ଞରେ ଯୋଗଦେଲେ ଅଧିକ ଅପମାନିତ ହେବେ ବୋଲି ନିଜେ ନ ଯିବା ପାଇଁ ସ୍ଥିର କରିବା ସଂଗେ ସଂଗେ ପତ୍ନୀଙ୍କୁ ଯିବାକୁ ମଧ୍ୟ ବାରଣ କରିଥିଲେ । ସତୀ ଦେବୀ ନିଜେ ଓ ସ୍ୱାମୀ ଉଭୟେ ଯିବା ପାଇଁ ଜିଗର ଲଗାଇଥିଲେ ମଧ୍ୟ ଶିବ ଅନିଚ୍ଛା ପ୍ରକାଶ କରିବାରୁ ସତୀ ଦେବୀ ଅତ୍ୟଧିକ କ୍ରୋଧାନ୍ୱିତ ହୋଇ ଏକ ଭୟଙ୍କର ମୁଖ ପ୍ରକଟିତ କରି ବିକଟାଳ ରଡ଼ି ଓ ଅଟ୍ଟହାସ୍ୟ କରିଥିଲେ । ଦେବୀ ନିଜର ବସ୍ତ୍ର ଫୋପାଡ଼ି ଦେଇ ସମ୍ପୂର୍ଣ୍ଣ ଉଲଗ୍ନ ହୋଇ ଯାଇଥିଲେ । ସେ ଅତ୍ୟନ୍ତ ସୁନ୍ଦରୀ ଥିଲେ ମଧ୍ୟ କ୍ରୋଧରେ ପ୍ରକମ୍ପିତ ହୋଇ କୃଷ୍ଣ ବର୍ଣ୍ଣ ପାଲଟି ଯାଇଥିଲେ । ସେ ନିଜର ଜିଭ ଲହ ଲହ କରି ବେକରେ କଟା ନର ମୁଣ୍ଡମାଳ ପିନ୍ଧି ପ୍ରକମ୍ପିତ ହେବାକୁ ଲାଗିଲେ । ଶିବ ଭୟଭୀତ ହୋଇ ପଳାଇବାକୁ ବସିବା ବେଳେ ଦେଖିବାକୁ ପାଇଲେ ସତୀଙ୍କ ଦ୍ୱାରା ପ୍ରକଟିତ ହୋଇଥିବା ଦଶଟି ଦେବୀ ସବୁ ଦିଗରେ ଘେରି ରହିଅଛନ୍ତି । ସେହି ପ୍ରକଟିତ ଦେବୀମାନଙ୍କୁ ଦଶ ମହାବିଦ୍ୟା କହନ୍ତି । ଶିବ ସତୀଙ୍କୁ ନିଜର ବର୍ଣ୍ଣ କୃଷ୍ଣବର୍ଣ୍ଣ କରିବା ଓ ଏହି ଦଶଟି ଦେବୀ କିଏ ବୋଲି ପଚାରିଥିଲେ ଏବଂ ଶିବ ଉପଯୁକ୍ତ ଉତ୍ତର ପାଇ ସତୀଙ୍କୁ ନିଜ ସେବକ ନନ୍ଦୀଙ୍କ ସାଥିରେ ନିଜ ଶ୍ୱଶୁରାଳୟକୁ ଯଜ୍ଞ ଦେଖିବାକୁ ପଠାଇଥିଲେ । ଶେଷରେ ସତୀ ଅପମାନିତ ହୋଇ ଯଜ୍ଞକୁଣ୍ଡରେ ଝାସ ଦେବା ପରେ ଶିବଙ୍କ ନିର୍ଦ୍ଦେଶରେ ଯଜ୍ଞକୁଣ୍ଡ ଧ୍ୱଂସ ଓ ଦକ୍ଷଙ୍କ ଶିର ଛେଦନ ଏବଂ ଶିବଙ୍କ ତାଣ୍ଡବ ନୃତ୍ୟ ଏବଂ ବିଷ୍ଣୁଙ୍କ ଦ୍ୱାରା ମୃତ ସତୀଙ୍କୁ ସୁଦର୍ଶନ ଦ୍ୱାରା ଛେଦନ କରିବା ଘଟିଥିଲା ।

ଶିବ ସତୀଙ୍କୁ ନିଜ ସମ୍ମୁଖରେ ଦେଖୁଥିବା ଦଶମହାବିଦ୍ୟା ପ୍ରଶ୍ନରେ ସତୀ ଉତ୍ତର ଦେଇଥିଲେ ଯେ, ଆମ ସମ୍ମୁଖରେ ଥିବା ଦେବୀ କାଳୀ, ଊର୍ଦ୍ଧ୍ୱ ଦେଶର ଦେବୀ ତାରା, ଦକ୍ଷିଣ ଦିଗ ଦେବୀ ଛିନ୍ନମସ୍ତା, ବାମ ଦିଗ ଦେବୀ ଭୁବନେଶ୍ୱରୀ ଅଟନ୍ତି । ସେ ମଧ୍ୟ କହିଥିଲେ ଯେ, ଆମ ପଶ୍ଚାତ୍ ଭାଗରେ ଦେବୀ ବଗଳା, ଅଗ୍ନିକୋଣରେ ଦେବୀ ଧୂମାବତୀ, ନୈଋତ କୋଣରେ ଦେବୀ କମଳା, ବାୟୁ କୋଣରେ ଦେବୀ ମାତଙ୍ଗୀ ଓ ଐଶାନ୍ୟ କୋଣରେ ଦେବୀ ଷୋଡଶୀ ତ୍ରିପୁରା ସୁନ୍ଦରୀ ଏବଂ ସେ ନିଜେ ସ୍ୱୟଂ ଭୈରବୀ ରୂପରେ ସ୍ୱାମୀଙ୍କ ସହ ବିଦ୍ୟମାନ ଅଛନ୍ତି ।

ଦେବୀ ଉପାସକମାନେ ଏହି ଦଶମହାବିଦ୍ୟା ଦେବୀମାନଙ୍କୁ ଭିନ୍ନ ଭିନ୍ନ ମନ୍ତ୍ର ବିଧି ଅନୁସାରେ ପୂଜା କରିଥାନ୍ତି । କେହି କେହି ସାଧକ ନିଜର ଅଭୀଷ୍ଟ ପୂରଣ ନିମନ୍ତେ ଏହି ଦଶମହାବିଦ୍ୟା ଦେବୀମାନଙ୍କ ମଧ୍ୟରୁ କୌଣସି ନିର୍ଦ୍ଦିଷ୍ଟ ମହାବିଦ୍ୟା ଦେବୀଙ୍କ ମୂର୍ତ୍ତି ମନରେ କଳ୍ପନା କରି ବା ଆଲେଖ୍ୟ (ଫଟୋଚିତ୍ର) ବା ମୃଣ୍ମୟ ମୂର୍ତ୍ତି ବା କାଷ୍ଠ, ପଥରର ମୂର୍ତ୍ତି ବା ପ୍ରତିବଦଳରେ ଏକ ଗୁଆକୁ ସଂକଳ୍ପ କରି ଆସନରେ ବସାଇ ବିଧି ମୁତାବକ ସ୍ନାନ କରାଇ, ଧୂପ, ଦୀପ, ପୁଷ୍ପ, ସିନ୍ଦୂର ନୈବେଦ୍ୟ ସମର୍ପଣ କରି ଧ୍ୟାନ ଓ ଜପ ଇତ୍ୟାଦି କରିଥାନ୍ତି ଏବଂ ଶାସ୍ତ୍ର ମୁତାବକ ନିର୍ଦ୍ଦିଷ୍ଟ ମନ୍ତ୍ର ନିର୍ଦ୍ଧାରିତ ଥର ଉଚ୍ଚାରଣ କରିଥାନ୍ତି । ଫଳରେ ସେମାନଙ୍କ ଈପ୍‌ସିତ ଫଳପ୍ରାପ୍ତି ହୋଇଥାଏ । ଦେବୀ ଉପାସକଙ୍କୁ ଶାକ୍ତ କହନ୍ତି ।

ଦେବୀମାନେ ଦୁଇଟି ଶ୍ରେଣୀରେ ବିଭକ୍ତ ଯଥା- କାଳୀକୁଳ ଓ ଶ୍ରୀକୁଳ । କାଳୀ କୁଳର ଆରାଧ୍ୟ ଦେବୀମାନେ ହେଲେ କାଳୀ, ତାରା, ଛିନ୍ନମସ୍ତା, ମହିଷାମର୍ଦ୍ଦିନୀ ଦୁର୍ଗା । ଏହି କୁଳର ସାଧକମାନେ ବୈରାଗୀ ଓ ନିର୍ବାଣ ମୁକ୍ତି କାମନା କରିଥାନ୍ତି । ଶ୍ରୀକୁଳର ଆରାଧ୍ୟ ଦେବୀମାନେ ହେଲେ ଶ୍ରୀଦେବୀ ବା ତ୍ରିପୁରା ସୁନ୍ଦରୀ, ବଗଳା, ଭୁବନେଶ୍ୱରୀ, ଭୈରବୀ, ଧୂମାବତୀ, ମଧୁମତୀ, ମାତଙ୍ଗୀ, କମଳା ବା କମଳାତ୍ମିକା । ଏହି ଶ୍ରେଣୀର ସାଧକମାନେ ଦୟାଶୀଳ ଓ ପରୋପକାରୀ ଅଟନ୍ତି । ସେମାନେ ଭକ୍ତି ମାର୍ଗରେ ଅଗ୍ରସର ହୋଇ ସାଯୁଜ୍ୟ ମୁକ୍ତି କାମନା କରିଥାନ୍ତି । ତନ୍ତ୍ରଶାସ୍ତ୍ରାନୁସାରେ ତିନୋଟି ମହାବିଦ୍ୟା ଯଥା- ମହାକାଳୀ, ତାରା ଓ ତ୍ରିପୁରା ସୁନ୍ଦରୀ । ପ୍ରଥମ ମହାବିଦ୍ୟା ମହାକାଳୀଙ୍କ ପ୍ରଭାବରେ ଜୀବ ସଂସାର ବିମୁଖୀ ହୋଇ ଭଗବତ୍‌ମୁଖୀ ହୋଇଥାଏ । ସେ ମୁକ୍ତିଲାଭ କରିଥାଏ । ଏହା ଭଗବାନଙ୍କ ସମୀପ ଶକ୍ତି । ଦ୍ୱିତୀୟ ମହାବିଦ୍ୟା ତାରା ଭଗବତ୍ ଇଚ୍ଛା ଶକ୍ତି ବା କ୍ରିୟାଶକ୍ତି ସଞ୍ଚାଳିକା ତାରାଙ୍କୁ ସାଧନା କଲେ ଜୀବ ସମାଧିସ୍ଥ ହୋଇ ବ୍ରହ୍ମାନନ୍ଦରେ ଲିପ୍ତ ରହେ । ତୃତୀୟ ମହାବିଦ୍ୟା ତ୍ରିପୁରା ସୁନ୍ଦରୀ ଭଗବତ୍ ସମୀପ ଶକ୍ତି ହେତୁ ଜୀବ ଜ୍ଞାନମୟ ଓ ଭଗବତ୍ ଐଶ୍ୱର୍ଯ୍ୟ ଉପଲବ୍ଧ କରି ଶେଷରେ ଭଗବତ୍ ସ୍ୱରୂପରେ ଲୀନ ହୁଏ । ଅନ୍ୟ ସାତୋଟି ମହାବିଦ୍ୟା ତୃତୀୟ ମହାବିଦ୍ୟାର ଅଂଶ ତଥା କ୍ରମ ବର୍ଦ୍ଧମାନ ମୂର୍ତ୍ତି ବା ଶ୍ରୀବିଦ୍ୟା ଲଳିତା ସୁନ୍ଦରୀଙ୍କ କ୍ରିୟା ଶକ୍ତି ଅଟେ ।

ବର୍ତ୍ତମାନ ଏହି ଦଶ ମହାବିଦ୍ୟା ଦେବୀମାନଙ୍କ ରୂପ ଦେବୀଙ୍କ ବିଭିନ୍ନ ନାମ ଏବଂ ସାଧକର ଈପ୍‌ସିତ ଫଳପ୍ରାପ୍ତି ସମ୍ବନ୍ଧରେ ସମ୍ୟକ୍ ଧାରଣା ଦିଆଯାଉଅଛି ।

### (୧) ଦେବୀ କାଳୀ ବା ମହାକାଳୀ

ମହାବିଦ୍ୟା ଦେବୀ କାଳୀ ଚତୁର୍ଭୁଜା, ମୁକ୍ତକେଶୀ, ଲାସ୍ୟମୟୀ ଯେ କି ଶିବଙ୍କ ଉପରେ ଆରୂଢ଼ ହୋଇଅଛନ୍ତି । ଏହି ଦେବୀ ବାମ ଊର୍ଦ୍ଧ୍ୱ ନିମ୍ନ ବାହୁରେ ଯଥାକ୍ରମେ ଖଡ୍ଗ ଓ ସଦ୍ୟକଟା ନରମୁଣ୍ଡ ଧାରଣ କରିଅଛନ୍ତି ଏବଂ ଦକ୍ଷିଣ ଊର୍ଦ୍ଧ୍ୱ ଓ ନିମ୍ନ ବାହୁରେ ଯଥାକ୍ରମେ ଅଭୟା ଓ ବରଦାମୁଦ୍ରା ବିଦ୍ୟମାନ ଥାଏ । ଦେବୀଙ୍କ ଦୁଇ କର୍ଣ୍ଣ ଭୂଷଣ ରୂପେ ମୃତ ନରମୁଣ୍ଡ ଏବଂ ଅଣ୍ଟାରେ ମୃତ ନର ହସ୍ତମାଳ କଟିର ନିମ୍ନଭାଗ ଆଚ୍ଛାଦିତ କରିଅଛି । ତାଙ୍କ ଓଷ୍ଠରୁ ରକ୍ତ ଝରି ପଡୁଅଛି । ଦେବୀ ଘୋର ଶବ୍ଦକାରିଣୀ ଓ ଭୟଙ୍କରୀ ଅଟନ୍ତି ଏବଂ ତାଙ୍କର ଦନ୍ତ ବଡ଼ ବଡ଼ ଅଟେ । ଦେବୀ ତ୍ରିନୟନୀ ଯାହାକି କମଳପତ୍ର ପରି ଶୋଭା ବହନ କରୁଅଛି । ତାଙ୍କର ନେତ୍ର ସୁନ୍ଦର ଓ ସହାସ୍ୟ ବଦନ ଏବଂ ତାଙ୍କର ଅଭୟ ଓ ବରଦା ମୁଦ୍ରା ତାଙ୍କୁ ଶୋଭାମୟୀ କରିଦିଏ ।

ଦେବୀ କାଳୀ ସମସ୍ତ ଜଗତ ସୃଷ୍ଟି କରିପାରନ୍ତି ଏବଂ ସମସ୍ତ ସୃଷ୍ଟିକୁ ମଧ୍ୟ ଧ୍ୱଂସ କରି ନିଜ ଦେହରେ ଲୀନ କରିପାରନ୍ତି । ସେ ବହୁ ରୂପରେ ପ୍ରକାଶିତ ହୁଅନ୍ତି । ସେ କୃଷ୍ଣବର୍ଣ୍ଣା କାରଣ ସେ ତମଗୁଣ ବିସ୍ତାରକାରିଣୀ ଅଟନ୍ତି । ସେ ଶିବଙ୍କ ଉପରେ ଦଣ୍ଡାୟମାନ ହୋଇଥାନ୍ତି । କାରଣ ସେ ଚିତ୍‌ଶକ୍ତିକୁ ବିଲୀନ କରିପାରନ୍ତି । ତାଙ୍କର ଦାନ୍ତ ଭୟାନକ ହେଲେ

ହେଁ ସେ ଲାସ୍ୟମୟୀ ଏବଂ ଅଭୟ ଓ ବରଦା ହସ୍ତ ପ୍ରସାରଣ କରି ଭକ୍ତଙ୍କୁ ଅଭୟ ଦେବା ସଂଗେ ମାତୃତ୍ୱ ସ୍ନେହ ପ୍ରଦାନ ପାଇଁ ବୃହତ କୁଚ ଯୁଗଳ ପ୍ରଦର୍ଶନ କରିଥାନ୍ତି । ତାଙ୍କର ତ୍ରିନୟନ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ସଂଯୋଜନ ପ୍ରକାଶ କରିଥାଏ । ତାଙ୍କ ହସ୍ତର ଖଡ୍ଗ ଓ ମୁକ୍ତ କେଶ ପାଶ ସାଂସାରିକ ବନ୍ଧନରୁ ଜୀବକୁ ମୁକ୍ତ କରିବାକୁ ସଦା ପ୍ରସ୍ତୁତ ବୋଲି ସୂଚାଇ ଦିଏ । ଏହି ଦେବୀ ସମସ୍ତ ସାଂସାରିକ ବସ୍ତୁ ପ୍ରଦାନକାରୀ ତଥା ମୋହ ମାୟାରେ ଜୀବକୁ ବାନ୍ଧିବା ପାଇଁ ପ୍ରସ୍ତୁତ ଥିବା ସଂଗେ ସଂଗେ କୈବଲ୍ୟ ମୁକ୍ତ ପ୍ରଦାୟିକା ଅଟନ୍ତି ।

ଦେବୀ କାଳୀଙ୍କୁ ସ୍ତବ କଲେ ଆଦି ଅଷ୍ଟ ସିଦ୍ଧି ପ୍ରଦାନ କରନ୍ତି । ତାଙ୍କ ଆରାଧନା ଫଳରେ ବୃହସ୍ପତିଙ୍କ ପରି ବିଦ୍ୱାନ ତଥା କୁବେରଙ୍କ ପରି ଧନଶାଳୀ ହେବ । ସେ ମଧ୍ୟ ଶତ୍ରୁମାନଙ୍କୁ ବଶୀଭୂତ ତଥା ଜୟ କରିପାରିବ ।

କାଳୀ ନାନା ରୂପରେ ପ୍ରକଟିତ ହୋଇ ବିବିଧ କାର୍ଯ୍ୟ ସମ୍ପାଦନ କରିଥାନ୍ତି । କାଳୀଙ୍କର ଏହିସବୁ ରୂପର ବିଭିନ୍ନ ନାମ ଅଛି, ଯଥା-ଦକ୍ଷିଣା ବା ଦକ୍ଷିଣକାଳୀ, ସିଦ୍ଧ ବା ସିଦ୍ଧକାଳୀ, ଭଦ୍ରା ବା ଭଦ୍ରାକାଳୀ, ମହା ବା ମହାରୋଦ୍ରୀ, ଗୁହ୍ୟା, ଶିରୋସନ, ଚାମୁଣ୍ଡା, ଶ୍ରୀକାଳ, କାମକଳା, ଧନୀ, ଚଣ୍ଡିକା, ଡମ୍ବର, ରକ୍ଷା, ଇନ୍ଦିବର, ଧନଦା, ଜୀବ, ରମଣୀ, ପ୍ରଜ୍ଞା, ଈଶାନ, ବୀର୍ଯ୍ୟ, ସପ୍ତାର୍ଣ୍ଣ, କାତ୍ୟାୟିନୀ ଇତ୍ୟାଦି । ଜୟଦ୍ରଥ ଯାମଳା, ତୋଡ଼ଲ ତନ୍ତ୍ର ଏବଂ ମହାକାଳ ତନ୍ତ୍ରରେ ଦେବୀଙ୍କ ସଂଖ୍ୟା ଓ ନାମ ଅଲଗା ଅଲଗା ଦେଖାଯାଏ । କାଳୀ କୁଳର ସାଧକମାନେ କାଳୀ, ତାରା, ରକ୍ତକାଳୀ, ଭୁବନେଶ୍ୱରୀ, ମହିଷାମର୍ଦ୍ଦନୀ, ତ୍ରିପୁଟା, ତ୍ୱରିତା, ଦୁର୍ଗା ଓ ପ୍ରତ୍ୟଙ୍ଗିରାଙ୍କୁ ମାନ୍ୟତା ଦେଉଥିବା ବେଳେ ଶ୍ରୀକୁଳର ସାଧକମାନେ ସୁନ୍ଦରୀ , ଭୈରବୀ , ବାଳା, ବଗଳା, କମଳା, ଧୂମାବତୀ, ମାତଙ୍ଗୀ ଓ ସ୍ୱପ୍ନାବତୀଙ୍କୁ ପ୍ରାଧାନ୍ୟ ଦେଇଥାନ୍ତି । ଏମାନଙ୍କ ମଧ୍ୟରେ ଦକ୍ଷିଣ ବା ଦକ୍ଷିଣକାଳୀଙ୍କୁ ଶ୍ରେଷ୍ଠତ୍ୱ ଦିଆଯାଇଥାଏ । ସାଧାରଣତଃ ସ୍ତ୍ରୀମାନେ ବାମାଙ୍ଗୀ । କିନ୍ତୁ ଦକ୍ଷିଣକାଳୀ ଶିବଙ୍କ ବାମ ଦିଗରେ ଥାଇ ଶିବଙ୍କ ଆରପଟ ଦକ୍ଷିଣ ଦିଗକୁ ପ୍ରଭାବ ପକାଇ ଥାଆନ୍ତି । ଦକ୍ଷିଣକାଳୀଙ୍କ ପୂଜା ଆରାଧନା ସାଧାରଣତଃ ଶ୍ମଶାନରେ ରାତ୍ରୀ କାଳରେ କରାଯାଇଥାଏ । ଦକ୍ଷିଣକାଳୀ ମନ୍ଦିର ପୁରୀ ଶ୍ରୀମନ୍ଦିରର ଦକ୍ଷିଣ ଦିଗ ତଥା ସାକ୍ଷୀଗୋପାଳ ନିକଟରେ ବୀର ଗୋବିନ୍ଦପୁର ରହିଅଛି ।

## (୨) ଦେବୀ ତାରା ମହାବିଦ୍ୟା

ଦେବୀ ତାରାଙ୍କର ବଡ଼ ବଡ଼ ଦାନ୍ତ ହେତୁ ଭୟଙ୍କର ଦେଖାଯାଆନ୍ତି । ସେ କରାଳରୂପୀ, ତ୍ରିନେତ୍ରୀ, ବୃକୋଦରୀ, ଲମ୍ବୋଦରୀ, ଉନ୍ନତପୀନ ପୟୋଧରୀ ଅଟନ୍ତି । ସେ ହାସ୍ୟରୂପା, ଲଜ୍ଜାରୂପା, ଯୋନିରୂପା ଓ ଖଡ୍ଗଧାରିଣୀ ଅଟନ୍ତି । ସେ କଟୀ ଦେଶରେ ବ୍ୟାଘ୍ର ଚର୍ମ ବେଢ଼ାଇଥାନ୍ତି । ଦେବୀ ନାନା ଅସ୍ତ୍ର ଭୂଷିତା ଏବଂ ନୀଳବର୍ଣ୍ଣା ଓ ନୀଳାମ୍ବରୀ ଅଟନ୍ତି ।

ଦେବୀ ତାରାଙ୍କୁ ମଧ୍ୟ ଉଗ୍ରତାରା ବା ନୀଳ ସରସ୍ୱତୀ,ଏକଜଟା, ନୀଳତାରା ମଧ୍ୟ କହନ୍ତି । ସେ ଶିବଙ୍କ ଉପରେ ବାମପାଦ ରଖିଅଛନ୍ତି । ତାଙ୍କ ମସ୍ତକରେ ଜଟ ଅଛି । ସେ ମଧ୍ୟ ତାରିଣୀ ରୂପେ ପ୍ରସିଦ୍ଧା ଅଟନ୍ତି । ଗଞ୍ଜାମ ଜିଲ୍ଲାରେ ତାରା ତାରିଣୀ ରୂପେ ଓ କେନ୍ଦୁଝର ଜିଲ୍ଲାର ଘଟଗାଁରେ ତାରିଣୀ ଦେବୀଙ୍କ ମନ୍ଦିର ଅଛି । ଖୋରଧା ଜିଲ୍ଲାର ମଧ୍ୟ ଭୁଷଣ୍ଡପୁର ନିକଟରେ ଉଗ୍ରତାରାଙ୍କ ମନ୍ଦିର ଅଛି । ଦେବୀ ଆଲୋକ ଦାତ୍ରୀ ଓ ମୁକ୍ତିଦାତ୍ରୀ ଅଟନ୍ତି । ତାଙ୍କ ଗଳାରେ ସର୍ପ ଓ ମୁଣ୍ଡମାଳ ଲମ୍ବାଇ ହୋଇ ପଡ଼ିଥାଏ । ଦେବୀ ଚତୁର୍ଭୁଜା ଅଟନ୍ତି- ଦକ୍ଷିଣ କରରେ ଖଡ୍ଗ ଓ କଟାରୀ ଏବଂ ବାମ କରରେ କମଳ ଓ ନରମୁଣ୍ଡ ବିଦ୍ୟମାନ । ଆଭୂଷଣ ମଣ୍ଡିତା ଦେବୀ ତାରା ଅଟନ୍ତି । ତାଙ୍କର ମସ୍ତକ, ଗଳା, ଅଣ୍ଟା, କାନ ଓ ପାଦରେ ନାଗ ବିରାଜମାନ ।

ତାରା ଦେବୀଙ୍କ ସ୍ତବ କଲେ ସାଧକର ସବୁ କର୍ମରେ ସିଦ୍ଧି ହେବ ଏବଂ ସେ ତିନି ଲୋକରେ ନିର୍ଭୟରେ ଚଳାଚଳ କରିପାରିବ ।

## (୩) ଦେବୀ ଷୋଡ଼ଶୀ ତ୍ରିପୁରା ସୁନ୍ଦରୀ ମହାବିଦ୍ୟା

ଦେବୀ ତ୍ରିପୁରା ସୁନ୍ଦରୀ ଯେଉଁ ଯନ୍ତ୍ର ଉପରେ ପ୍ରତିଷ୍ଠିତ ହୋଇଥାନ୍ତି, ତାକୁ ଶ୍ରୀଯନ୍ତ୍ର କହନ୍ତି । ସାଧକ ନିଜ ମୂଳଧାରା କୁଣ୍ଡଳିନୀ ଚକ୍ରକୁ ଜାଗ୍ରତ କରାଇ ବା ଚେତନା ମାଧ୍ୟମରେ ଶକ୍ତିପ୍ରାପ୍ତ ହୋଇଥାଏ । ତ୍ରିପୁର ସୁନ୍ଦରୀ ବା ତ୍ରିପୁରା ଦେବୀ ମଧ୍ୟ ଲଲିତା, ଷୋଡଶୀ ଏବଂ ଶ୍ରୀବିଦ୍ୟା ରୂପେ ପରିଚିତ । ସନକ, ସନନ୍ଦନ, ସନତ୍ କୁମାର, ବଶିଷ୍ଠ ଏବଂ ଶୁକଦେବ ଗୋସ୍ୱାମୀଙ୍କ ପ୍ରଦର୍ଶିତ ଶୁଭାଗମ ପଞ୍ଚକରେ ବର୍ଣ୍ଣନା ଅନୁସାରେ ଶ୍ରୀବିଦ୍ୟା ବା ତ୍ରିପୁର ସୁନ୍ଦରୀଙ୍କ ଆରାଧନା ନିମନ୍ତେ ସମୟାଚାର





ଦିଗ ଗ୍ରହଣ କରିବାକୁ ହେବ । ଶ୍ରୀବିଦ୍ୟା ସାଧକ ଷଡ଼ଚକ୍ରକୁ ଜାଗରଣ କରି ଦେବୀ ଓ ଆତ୍ମା ମଧ୍ୟରେ ଏକ ସମନ୍ୱୟ ଆଣିଥାନ୍ତି । ଏଥି ସମ୍ବନ୍ଧରେ ବିସ୍ତୃତ ବିବରଣୀ ଅନ୍ତଃଯୋଗ ଓ ଭବୋପନିଷଦରେ ମିଳିପାରିବ ।

ତ୍ରିପୁର ସୁନ୍ଦରୀଙ୍କ କୁଣ୍ଡ ବଦରୀକା ଆଶ୍ରମ ନିକଟରେ ଅଛି । ଉଜ୍ଜୟିନୀରେ, ଶ୍ରୀଙ୍ଗେରୀ ମଠରେ କୁମାରୀକାର କୁମାରୀଙ୍କ ମନ୍ଦିର ଏବଂ ଭାରତର ବିଭିନ୍ନ ଜାଗାରେ ତ୍ରିପୁର ସୁନ୍ଦରୀଙ୍କ ମନ୍ଦିର ଅଛି । ଓଡ଼ିଶାରେ ସାରଳା ଦେବୀ,ଶ୍ରୀଜଗନ୍ନାଥଙ୍କ ଭଉଣୀ ସୁଭଦ୍ରା ତ୍ରିପୁର ସୁନ୍ଦରୀ ଅଟନ୍ତି । ରତ୍ନ ସିଂହାସନରେ ଅଧିଷ୍ଠିତ ମହାପ୍ରଭୁମାନେ ଶ୍ରୀଯନ୍ତ୍ର ଉପରେ ପ୍ରତିଷ୍ଠିତ । ଶ୍ରୀମନ୍ଦିର ଶ୍ରୀକ୍ଷେତ୍ର ରୂପେ ପରିଚିତ । ଲକ୍ଷ୍ମୀ ଦେବୀ ସିଂହଦ୍ୱାର ଖିଲଣରେ ବିଦ୍ୟମାନ । ସେ ଶ୍ରୀଦେବୀ ଅଟନ୍ତି ।

ଶ୍ରୀବିଦ୍ୟା ସାଧକ ରୂପେ ଦୁର୍ବାସା, ବଶିଷ୍ଟ, ମହର୍ଷି ପରାଶର, ମହର୍ଷି ବ୍ୟାସ, ଶୁକଦେବ ଗୋସ୍ୱାମୀ, କାଳିଦାସ, ଶଙ୍କରାଚାର୍ଯ୍ୟ ଏବଂ ଓଡ଼ିଶାର ସାରଳା ଦାସ ଓ ଅଚ୍ୟୁତାନନ୍ଦ ଦାସ ପ୍ରସିଦ୍ଧ ଅଟନ୍ତି ।

ଦେବୀ ଷୋଡ଼ଶୀ ବା ତ୍ରିପୁର ସୁନ୍ଦରୀ ମୁକ୍ତାଫଳହାର ଶୋଭିତା ଓ ରକ୍ତବର୍ଣ୍ଣା ଅଟନ୍ତି । ଚନ୍ଦ୍ରଙ୍କ ରଙ୍ଗର କିରୀଟଧାରୀ ଦେବୀ ଶରତକାଳୀନ ଚନ୍ଦ୍ରକାନ୍ତି ଏବଂ ସୂର୍ଯ୍ୟଙ୍କ ପରି ଉଜ୍ଜ୍ୱଳ ମୁଖାରାବିନ୍ଦ ବିଶିଷ୍ଟା ଅଟନ୍ତି । ଦେବୀ ଦୀର୍ଘ ନୟନୀ, ବିମ୍ବାଧରୀ, ମଣିକୁଣ୍ଡଳ ଧାରିଣୀ, ଲାକ୍ଷାରଞ୍ଜିତ ପଦଯୁଗଳ ଏବଂ ନୀଳ କୁନ୍ତଳ ବିଶିଷ୍ଟା ମନଲୋଭା ଜୁଡ଼ା ବିଶିଷ୍ଟା ଏବଂ ତାଙ୍କ କେଶ ପାଶରେ ଚନ୍ଦ୍ରମାଙ୍କ ଜ୍ୟୋତି ପ୍ରକଟିତ ହେଉଥିବାରୁ ତାଙ୍କର ସୌନ୍ଦର୍ଯ୍ୟ ମନୋମୁଗ୍ଧକର ଓ ଅତୁଳନୀୟ ଅଟେ । ଦେବୀଙ୍କ ଗଳାରେ ମୋତିର ହାର, କର୍ଣ୍ଣ କୁଣ୍ଡଳ, ହସ୍ତର ବଳୟ, କଙ୍କଣ ଓ କରଧନୀ ଏବଂ ପଦ ନୂପୁର ଦେବୀଙ୍କ ରୂପ ସମ୍ଭାରକୁ ଦ୍ୱିଗୁଣିତ କରି ଦେଉଅଛି । ଦେବୀଙ୍କ ଚତୁର୍ଦ୍ଧା ହସ୍ତରେ ମାଳା ଓ ପୁସ୍ତକ, ବରଦା ଏବଂ ଅଭୟା ମୁଦ୍ରା ଭକ୍ତମାନଙ୍କୁ ଆକର୍ଷିତ କରିଦିଏ । ସେ ପ୍ରସ୍ଫୁଟିତ ପଦ୍ମରେ ବିରାଜମାନ ହୋଇଥାନ୍ତି ।

ଦେବୀ ତ୍ରିପୁର ମୋହିନୀଙ୍କୁ ସ୍ତବ କଲେ ସାଧକ ବିଦ୍ୱାନ, ଚରିତ୍ରବାନ ଏବଂ ସାର୍ବଭୌମ ମହାପୁରୁଷ ହୋଇପାରିବ । ମହାକବି କାଳିଦାସ, ଭଞ୍ଜ, ସାରଳା ଦାସ, ଅଚ୍ୟୁତାନନ୍ଦ, କବିସମ୍ରାଟ ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ବଳଦେବ ରଥ ଇତ୍ୟାଦି ଏହି ଦେବୀଙ୍କର ସାଧକ ଥିଲେ । ଦେବୀଙ୍କ ଆଶୀର୍ବାଦରେ ମଧ୍ୟ ଭକ୍ତଙ୍କର ବ୍ୟାଧି ଓ ଭୟ ଦୂର ହେବ ଏବଂ ଦାରିଦ୍ର୍ୟତା ରହିବ ନାହିଁ । ତା'ର ମୃତ୍ୟୁ ଭୟ ମଧ୍ୟ ରହିବ ନାହିଁ । ଦେବୀ ଭକ୍ତି ଓ ମୁକ୍ତି ପ୍ରଦାନ କରନ୍ତି । ଅନ୍ତରାଳରେ ଭକ୍ତ ବ୍ରହ୍ମପଦ ପ୍ରାପ୍ତ ହେବ ।

## (୪) ଦେବୀ ଭୁବନେଶ୍ୱରୀ ମହାବିଦ୍ୟା

ଦେବୀ ଭୁବନେଶ୍ୱରୀ ବାଳ ସୂର୍ଯ୍ୟକାନ୍ତି ବିଶିଷ୍ଟା ତ୍ରିନୟନୀ, ମସ୍ତକରେ କିରୀଟ ଓ ଅର୍ଦ୍ଧଚନ୍ଦ୍ର, କୋମଳ କୃଷ୍ଣ କେଶରାଶି ବିଶିଷ୍ଟା ହାସ୍ୟମୁଖୀ, ମନୋରମମୁଖୀ ଅଟନ୍ତି । ଦେବୀ ସିଂହରୂଢ଼ା ଗଳାରେ ଗୁଞ୍ଜା ଫଳମାଳ ଓ ଘୁଙ୍ଗୁରଯୁକ୍ତହାର ପରିହିତା । ତାଙ୍କର ନିତମ୍ବ ଓ କ୍ଷୀଣ କଟୀ ଓ ହାତୀଶୁଣ୍ଢ ପରି ଉରୁ ହେଲେ ହେଁ କଦଳୀ ବୃକ୍ଷ ପରି କୋମଳ ଏବଂ କମ୍ବୁକଣ୍ଠୀ ଦେବୀ ଚତୁର୍ଭୁଜା– ହସ୍ତରେ ପାଶ, ଅଙ୍କୁଶ, ଅଭୟ ଓ ବରଦା ମୁଦ୍ରା ବିଦ୍ୟମାନ । ଦେବୀଙ୍କର ମୃଦୁ ହାସ୍ୟବଦନ ଅଭୟ ଓ ବରଦାମୁଦ୍ରା ଲାଗି ସେ ଭକ୍ତ କୃପା ବାରିଧି ଏବଂ ତାଙ୍କର ହସ୍ତରେ ଶୋଭିତ ପାଶ ଓ ଅଙ୍କୁଶ ଶତ୍ରୁଙ୍କୁ ଶାସନ କରିବା ବା ପରାଜୟ କରିବା ସୂଚନା ଦିଏ । ଦେବୀ ବେଳେବେଳେ ଜପମାଳା ଓ ପୁସ୍ତକ କଳସ ଓ ଜ୍ଞାନ ମୁଦ୍ରା ଧାରଣ କରିଥାନ୍ତି । ଦେବୀଙ୍କ ବାମପାଦ ଅର୍ଦ୍ଧ ପଦ୍ମାସନ ଓ ଦକ୍ଷିଣ ପାଦ ତଳକୁ ଓହଳି ଥାଏ । ବିଶାଳ ନୟନା ଦେବୀ ସହାସ୍ୟ ବଦନରେ ଭକ୍ତମାନଙ୍କୁ ଆକର୍ଷଣ କରିଥାନ୍ତି ।

ଦେବୀ ଭୁବନେଶ୍ୱରୀଙ୍କ ମନ୍ଦିର ଲିଙ୍ଗରାଜ ମନ୍ଦିରର ଉତ୍ତର ଦିଗରେ ମନ୍ଦିରକୁ ସଂଲଗ୍ନ ଅଛି । ସେ ଦ୍ୱିଭୁଜା ଅଟନ୍ତି । ଶିବ ପୁରାଣ, ସ୍କନ୍ଦ ପୁରାଣ, ଲିଙ୍ଗ ପୁରାଣ, ଏକାମ୍ର ପୁରାଣ, କପିଳ ସଂହିତା ଓ ସ୍ୱର୍ଣ୍ଣାଦି ମହୋଦୟରେ ଦେବୀ ଭୁବନେଶ୍ୱରୀଙ୍କ ବିଷୟରେ ବିସ୍ତୃତ ବ୍ୟାଖ୍ୟା ଅଛି । ଦେବୀଙ୍କୁ ସ୍ତବ କଲେ ଭକ୍ତର ବିଦ୍ୟା ଉପଲବ୍ଧ ହୋଇପାରିବ ।

## (୫) ଦେବୀ ଭୈରବୀ ମହାବିଦ୍ୟା

ଦେବୀ ଭୈରବୀ ସାଂସାରିକ ସମସ୍ତ ଦୁଃଖ ଯନ୍ତ୍ରଣା ବା ପୀଡ଼ା ଉପଶମକାରିଣୀ ତଥା ସୁଖ ପ୍ରଦାନକାରିଣୀ ଦେବୀ ଅଟନ୍ତି । କେତେକ କହନ୍ତି ଯେ, ଶିବ ଭୈରବ ଅଟନ୍ତି ଏବଂ ଦେବୀ ତାଙ୍କର ପତ୍ନୀ ହେତୁ ସେ ଭୈରବୀ ଅଟନ୍ତି । କେହି

କେହି ଶ୍ରୀଜଗନ୍ନାଥଙ୍କୁ ଭୈରବ ଓ ମା' ବିମଳାଙ୍କୁ ଭୈରବୀ କହିଥାନ୍ତି ।

ଦେବୀଙ୍କର ଅନେକ ରୂପ ଅଛି । ସାଧାରଣତଃ ଦେବୀଙ୍କ କାନ୍ତି ଉଦୟକାଳୀନ ସୂର୍ଯ୍ୟ ପରି ଏବଂ ଦେବୀ ରକ୍ତ ବର୍ଣ୍ଣର ଶାଢ଼ୀ ପିନ୍ଧିଥାନ୍ତି । ଦେବୀ ବେକରେ ମୁଣ୍ଡମାଳ ପକାଇଥାଆନ୍ତି । ଦେବୀଙ୍କର ରକ୍ତରଞ୍ଜିତ ତ୍ରିନେତ୍ର, ଚନ୍ଦ୍ରକଳା ପରି ଶୀତଳ ଲଲାଟ, ରତ୍ନଖଚିତ କିରୀଟ ପରିଧାନ କରିଥାନ୍ତି । ଶରତକାଳୀନ ଚନ୍ଦ୍ର ଶୋଭାଧାରିଣୀ ଦେବୀ ମୃଦୁହାସ୍ୟ ବଦନୀ ଅଟନ୍ତି । ତାଙ୍କର ଚତୁର୍ଭୁଜ ମଧ୍ୟରୁ ଦୁଇ ହସ୍ତରେ ଜପମାଳା ଓ ପୁସ୍ତକ ଧରି ଅଛନ୍ତି ଏବଂ ଅନ୍ୟ ଦୁଇ ହସ୍ତରେ ବରଦା ଓ ଅଭୟ ମୁଦ୍ରା ପ୍ରକଟିତ ହେଉଥାଏ । ତ୍ରିପୁରା ଭୈରବୀ ଏହି ରୂପରେ ଶୋଭା ପାଆନ୍ତି । ବିମଳା ଭୈରବୀଙ୍କର ଦୁଇ ହସ୍ତ ଏବଂ ତାଙ୍କର ଦକ୍ଷିଣହସ୍ତ ଅନନ୍ତ ନାଥ କଙ୍କଣ ପରି ଶୋଭାପାଏ । ତାଙ୍କର ବାମହସ୍ତରେ ଶିବ ବାଳକ ରୂପେ ଦଣ୍ଡାୟମାନ ହୋଇଅଛନ୍ତି ।

ଚୈତନ୍ୟ ଭୈରବୀ ଫାଶ, ଅଙ୍କୁଶ, ଯଷ୍ଟି ଓ ନରମୁଣ୍ଡ ଧାରଣ କରିଥିବା ବେଳେ ଭୁବନେଶ୍ୱର ଭୈରବୀ ନାନା ଅଳଙ୍କାର ଭୂଷିତା ଓ ରକ୍ତ ବସ୍ତ୍ର ପରିହିତା ଏବଂ ସେ କୃପାମୟୀ, ଦୟାଶୀଳା ଅଟନ୍ତି । ତାଙ୍କର ଚତୁର୍ଭୁଜରେ ଶୃଙ୍ଖ, ଯଷ୍ଟି, ଅଭୟ ଓ ବରଦା ମୁଦ୍ରା ଶୋଭା ପାଆନ୍ତି । ଅନ୍ନପୂର୍ଣ୍ଣା ଭୈରବୀ ଜଗତର ସମସ୍ତ ଜୀବଙ୍କୁ ଅନ୍ନ ଯୋଗାଇ ଥାଆନ୍ତି । ମସ୍ତକରେ ରତ୍ନଖଚିତ କିରୀଟ ଓ କଟୀ ମେଖଳା ଶୋଭାପାଏ । ତାଙ୍କ ଉଭୟ ପାର୍ଶ୍ୱରେ ଭୂଦେବୀ ଓ ଶ୍ରୀଦେବୀ ବିଦ୍ୟମାନ।

ଦେବୀ ଭୈରବୀଙ୍କୁ ସ୍ତବ କଲେ ସେ ବିଦ୍ୟା ଉପଲବ୍ଧ କରାଇଥା'ନ୍ତି । ଦେବୀ ସାଂସାରିକ ଦୁଃଖନାଶିନୀ ଅଟନ୍ତି ।

ଦେବୀଙ୍କ ମନ୍ଦିର ଗଞ୍ଜାମ ଜିଲ୍ଲା ବ୍ରହ୍ମପୁର ନିକଟରେ ଗୋଲାନ୍ଥା ପାଖରେ ଶ୍ରୀସିଦ୍ଧ ଭୈରବୀ ପୀଠ ନାମରେ ଖ୍ୟାତ ।

## (୬) ଦେବୀ ଛିନ୍ନମସ୍ତା ମହାବିଦ୍ୟା

ଦେବୀ ଛିନ୍ନମସ୍ତା ଏକ ପାଦ ଆଗକୁ ଓ ଅନ୍ୟ ପାଦ ପଛକୁ ରଖି କାମାସକ୍ତ କାମଦେବ ଓ ରତିଦେବୀଙ୍କ ଉପରେ ଦଣ୍ଡାୟମାନ ହୋଇଅଛନ୍ତି । ଦକ୍ଷିଣ ହସ୍ତରେ ଖଡ୍ଗ ଓ ବାମ ହସ୍ତରେ ନିଜର ସଦ୍ୟ ଛେଦିତ ମସ୍ତକ ଧରି ଅଛନ୍ତି । ବେକରୁ ତିନିଧାରରେ ରୁଧିର ବୋହି ଯାଉଅଛି । ଗୋଟିଏ ଧାର ରୁଧିର ନିଜେ ପାନ କରୁଅଛନ୍ତି ଏବଂ ଅନ୍ୟ ଦୁଇ ଧାର ରକ୍ତ ପାର୍ଶ୍ୱବର୍ତ୍ତୀ ଦୁଇ ଯୋଗିନୀ ପାନ କରୁଅଛନ୍ତି । ତାଙ୍କ ମସ୍ତକରେ ସର୍ପାବଦ୍ଧ ମଣି, ବକ୍ଷସ୍ଥଳରେ ପଦ୍ମମାଳା ଓ ମୁକ୍ତାବଳୀ ଦ୍ୱାରା ସେ ବିଭୂଷିତା ଅଟନ୍ତି । ସେ ଦିଗାମ୍ବରୀ ଅଟନ୍ତି । ସେ ତ୍ରିନୟନା, ଲମ୍ବୋଦରୀ ଏବଂ ତାଙ୍କ ଶରୀର ଜବାକୁସୁମ ପରି ରକ୍ତବର୍ଣ୍ଣା ଅଟେ । ସେ ରଜଗୁଣସମ୍ପନ୍ନା ଅଟନ୍ତି । ପୁରାଣ ବର୍ଣ୍ଣିତ ଦେବୀ ଛିନ୍ନମସ୍ତା ସ୍ନାନ ନିମନ୍ତେ ଯାଇଥିବାବେଳେ ନିଜେ ଶକ୍ତିସ୍ୱରୂପା ଦୁଇ ଯୋଗିନୀ ପ୍ରକଟ କରିଥିଲେ । ଯେଉଁମାନେ ଦେବୀଙ୍କୁ ଖାଇବାକୁ ମାଗିବାରୁ ଦେବୀ ନିଜ ମସ୍ତକ ଛିନ୍ନ କରି ସେମାନଙ୍କୁ ରୁଧିର ପାନ କରାଉ ଅଛନ୍ତି ଏବଂ ନିଜେ ପାନ କରୁଅଛନ୍ତି । ଦକ୍ଷିଣ ପାର୍ଶ୍ୱ ଯୋଗିନୀଙ୍କ ନାମ 'ବର୍ଣ୍ଣିନୀ' ଏବଂ ସେ ଶୁକ୍ଳବର୍ଣ୍ଣା ଓ ଶୁକ୍ଳ ମୁକୁଳିତ କେଶୀ ଅଟନ୍ତି ଏବଂ ତାଙ୍କ ହସ୍ତରେ ଖର୍ପର ବିଦ୍ୟମାନ । ଦେବୀଙ୍କ ବାମପାର୍ଶ୍ୱ ଯୋଗିନୀ ଡାକିନୀ ନାମଧେୟା ଏବଂ ସେ ମେଘବର୍ଣ୍ଣର ଓ ଖଡ୍ଗ, ଖର୍ପରଧାରିଣୀ ଅଟନ୍ତି । ଦେବୀ ପ୍ରଳୟ କାଳରେ ସମସ୍ତ ଜଗତକୁ ଭକ୍ଷଣ କରିବାକୁ ସମର୍ଥ ଅଟନ୍ତି ।

ଏହି ଦେବୀଙ୍କୁ ସ୍ତବ କଲେ ଧନ, ଧାନ୍ୟ, ପୁତ୍ର, କଳତ୍ର, ଅଶ୍ୱ, ହସ୍ତୀ, ଭୂମିପ୍ରାପ୍ତ ହୋଇଥାଏ । ସେ ମଧ୍ୟ ଅଷ୍ଟସିଦ୍ଧି ଓ ନବନିଧି ପ୍ରାପ୍ତ କରାଇ ଦେବେ ।

ଚଣ୍ଡୀଖୋଲ ପର୍ବତ ଉପରେ ଦେବୀ ଛିନ୍ନମସ୍ତାଙ୍କ ମନ୍ଦିର ଅବସ୍ଥିତ । କଳାହାଣ୍ଡି ଓ କୋରାପୁଟ ଜିଲ୍ଲାର ଜଙ୍ଗଲ ମଧ୍ୟରେ ଅନେକ ଛିନ୍ନମସ୍ତା ମନ୍ଦିର ଅଛି ।

## (୭) ଦେବୀ ଧୂମାବତୀ ମହାବିଦ୍ୟା

ଧୂମାବତୀ ଦେବୀ ରଥାରୂଢ଼ା ବିବର୍ଣ୍ଣା, ଚଞ୍ଚଳା, ତୃଷ୍ଣା, ଦୀର୍ଘାଙ୍ଗୀ ଅଟନ୍ତି । ସେ ବିଧବା ପରି ବସ୍ତ୍ର ପରିଧାନ କରିଥାନ୍ତି । ତାଙ୍କର କୁନ୍ତଳ ବିବର୍ଣ୍ଣା ଓ ରୁକ୍ଷା ଅଟେ । ତାଙ୍କର ଦାନ୍ତ ପନ୍ତି ଏପଟ ସେପଟ ହୋଇଥାଏ । ତାଙ୍କ ଚକ୍ଷୁ ରୁକ୍ଷ ଓ ନାସିକା ଲମ୍ବ ଏବଂ କୁଚ ମଧ୍ୟ ଓହଳି ପଡ଼ିଅଛି । ତାଙ୍କର ଏକ ହସ୍ତରେ କୁଲା ଓ ଅନ୍ୟ ହସ୍ତଟି ବରଦା ମୁଦ୍ରା ପ୍ରକାଶ ପାଏ ।

ଦେବୀଙ୍କୁ ସ୍ତବ କଲେ ସୁଖପ୍ରାପ୍ତି ହୋଇଥାଏ ଏବଂ ଅନ୍ତ କାଳରେ ସ୍ୱର୍ଗବାସ ହୋଇଥାଏ ବୋଲି ବିଶ୍ୱାସ ଅଛି ।





### ୮. ଦେବୀ ବଗଳାମୁଖୀ ମହାବିଦ୍ୟା

ସୁଧା ସାଗରରେ ମଣିମୟ ମଣ୍ଡପରେ ରତ୍ନ ସିଂହାସନ ଉପରେ ଦେବୀ ବଗଳାମୁଖୀ ଉପବିଷ୍ଟ ହୋଇଥାନ୍ତି । ଦେବୀ ପୀତବର୍ଣ୍ଣର ଏବଂ ସେ ପୀତବସ୍ତ୍ର, ପୀତ ଅଳଙ୍କାର ଓ ପୀତ ବର୍ଣ୍ଣର ମାଳାରେ ଭୂଷିତା ହୋଇଥାନ୍ତି । ଦେବୀ ଦ୍ୱିଭୁଜା ଅଟନ୍ତି । ସେ ବାମ ହସ୍ତରେ ଦୈତ୍ୟର ଜିହ୍ୱା ଧରି ଦକ୍ଷିଣ ହସ୍ତରେ ଦୈତ୍ୟକୁ ପ୍ରହାର କରୁଅଛନ୍ତି । ତାଙ୍କର ରୂପ ଭୟଙ୍କର ଅଟେ ।

ଦେବୀଙ୍କୁ ସ୍ତବ କଲେ ଦେବୀ ସିଦ୍ଧିବିଦ୍ୟା ପ୍ରଦାନ କରନ୍ତି । ସାଧକ ଦୁଷ୍ଟମାନଙ୍କୁ ସ୍ତମ୍ଭୀଭୂତ କରି ଆକର୍ଷଣ କରିପାରନ୍ତି । ଦେବୀ ବଗଳାମୁଖୀଙ୍କ ମନ୍ଦିର ଟାଙ୍ଗୀ (କଟକ) ବଇଁଚିଆ ନିକଟ ପୋଢ଼ା ଗ୍ରାମରେ ଅଛି ।

### ୯. ଦେବୀ ମାତଙ୍ଗୀ ମହାବିଦ୍ୟା

ମାତଙ୍ଗୀ ଦେବୀ ବୀଣାଧାରିଣୀ ଅଟନ୍ତି । ସେ ପାଦରେ ନୂପୁର ପିନ୍ଧିଥାନ୍ତି । ଦେବୀ ନୀଳୋତ୍ପଳ ବର୍ଣ୍ଣର ଏବଂ ତାଙ୍କ ନୀଳକୁନ୍ତଳରେ କଦମ୍ବ ପୁଷ୍ପ ଶୋଭାପାଏ । ବିମ୍ବାଧାରୀ, ବିଶାଳନେତ୍ରୀ ଦେବୀଙ୍କ ମୁଖକମଳ ଉଦ୍‌ଭାସିତ ହେଉଥାଏ । ଦେବୀ ମାତଙ୍ଗୀଙ୍କୁ ସ୍ତବ କଲେ ସାଧକ ଶ୍ରୀଯୁକ୍ତ ହୋଇପାରିବ ।

### (୧୦) ଦେବୀ କମଳା ବା କମଳାତ୍ମିକା ମହାବିଦ୍ୟା

ସୁବର୍ଣ୍ଣ କାନ୍ତି ଦେବୀ କମଳା ବା କମଳାତ୍ମିକା ଚତୁର୍ଭୁଜା ଅଟନ୍ତି । ତାଙ୍କର ଉପର ଦୁଇ ହସ୍ତରେ ପଦ୍ମ ଧାରଣ କରିଅଛନ୍ତି । ଦକ୍ଷିଣ ନିମ୍ନ ହସ୍ତରେ ଅଭୟ ମୁଦ୍ରା ଏବଂ ବାମ ନିମ୍ନ ହସ୍ତରେ ବରଦା ମୁଦ୍ରା ପ୍ରଦର୍ଶନ କରି ଭକ୍ତମାନଙ୍କୁ ଅଭୟ ଓ ବର ପ୍ରଦାନ କରନ୍ତି । ରତ୍ନ କିରୀଟଧାରିଣୀ ଦେବୀ ପଦ୍ମାସନୀ ଅଟନ୍ତି । ଦେବୀ ଖଞ୍ଜାନାକ୍ଷି ଓ ବିଶାଳ ନିତମ୍ବବତୀ ଏବଂ କୋଟି ଚନ୍ଦ୍ରକାନ୍ତି ରୂପବତୀ ଅଟନ୍ତି । ତାଙ୍କ ହସ୍ତରେ କଙ୍କଣ ଓ ଶଙ୍ଖା ପିନ୍ଧିଥାନ୍ତି । ଦେବୀଙ୍କର ଘନ ସୁଦୀର୍ଘ ଲମ୍ବ ସର୍ପିଳ କୃଷ୍ଣ କବରୀ ତାଙ୍କୁ ରୂପବତୀ କରିଦିଏ । ପର୍ବତ ପରି ଚାରୋଟି ହସ୍ତୀ କଳସରେ ଦେବୀଙ୍କ ଉପରେ ସୁଧାଜଳ ବୃଷ୍ଟି କରୁଅଛନ୍ତି ।

ଦେବୀ କମଳା ରତ୍ନ ସିଂହାସନ ଉପରେ ଶ୍ରୀଜଗନ୍ନାଥଙ୍କ ପାଦଦେଶରେ ବିଦ୍ୟମାନ । ତା'ଛଡ଼ା ଶ୍ରୀମନ୍ଦିର ପରିସରରେ ଦେବୀ କମଳାଙ୍କର ସ୍ୱତନ୍ତ୍ର ମନ୍ଦିର ଅଛି । ବାଣପୁରରେ ମଧ୍ୟ ଏକ ଲକ୍ଷ୍ମୀ ମନ୍ଦିର ଅଛି ।

ଦେବୀ କମଳାଙ୍କୁ ସ୍ତବ କଲେ ଅଣିମାଦି ସିଦ୍ଧି ପ୍ରାପ୍ତ ହେବ । ଦେବୀ ଭକ୍ତଙ୍କ ଦାରିଦ୍ର୍ୟତା ବିନାଶ କରି ଐଶ୍ୱର୍ଯ୍ୟ ପ୍ରଦାନ କରନ୍ତି । ସେ ଜ୍ଞାନଦାତ୍ରୀ, ଦୁର୍ଗତିନାଶିନୀ ଅଟନ୍ତି । ତାଙ୍କ ସେବାରେ ଭକ୍ତ ସକଳ କ୍ଷେତ୍ରରେ ସମ୍ମାନିତ ହୋଇଥାନ୍ତି । ଦେବୀଙ୍କ କୃପାଲାଭ କଲେ ଭକ୍ତ ଭବ ବନ୍ଧନରୁ ମୁକ୍ତ ହୋଇଥାଏ । ଦେବୀଙ୍କ ପ୍ରସାଦ ଲାଭ କଲେ ଭକ୍ତ ବ୍ରହ୍ମହତ୍ୟା ପାତକରୁ ମୁକ୍ତି ପାଇଥାଏ । ଦେବୀ ସୁରାପାନରୁ ଓ ଚୋରିରୁ ଭକ୍ତକୁ ନିବୃତ୍ତ କରାଇଥାନ୍ତି । ସେ ସତ୍‌ଚିତ୍ ଆନନ୍ଦ ସ୍ୱରୂପା ଏବଂ ଭକ୍ତମାନଙ୍କୁ ସତ୍ (କୈବଲ୍ୟମୁକ୍ତି) ଚିତ୍ (ବିଦ୍ୟା) ଓ ଆନନ୍ଦ ପ୍ରଦାନ କରିଥାନ୍ତି । ଆମ୍ଭେମାନେ ବାଞ୍ଛିତ ଭୋଗ ବା ମୋକ୍ଷ ପାଇଁ ଦଶ ମହାବିଦ୍ୟା ଦେବୀମାନଙ୍କୁ ପୂଜା, ଜପ, ତପ ଆଦି କରି ଦେବୀଙ୍କୁ ପ୍ରସନ୍ନ କରାଇ ଫଳପ୍ରାପ୍ତି ହୋଇଥାଉ । ଅନେକ ସମୟରେ ସାଧକମାନେ ନିର୍ଦ୍ଦିଷ୍ଟ ମହାବିଦ୍ୟା ଦେବୀଙ୍କୁ ଆରାଧନା କରି ଈପ୍‌ସିତ ଫଳଲାଭ କରିଥାନ୍ତି । ଦେବୀ ଆରାଧନା ଏକ କଠିନ କଥା । ଦେବୀଙ୍କ ପୂଜା ପାଠ କରିବା ପୂର୍ବରୁ ସାଧକ ଦେବୀଙ୍କ କବଚ ପାଠ କରି ନିଜ ଦେହ କିଳି ଦେଇଥାଏ । ନଚେତ୍ ତା'ର କ୍ଷତି ହେବା ସମ୍ଭାବନା ଥାଏ । ଦଶ ମହାବିଦ୍ୟା ଦେବୀମାନଙ୍କ ନିମନ୍ତେ କବଚ, ଧ୍ୟାନ, ମନ୍ତ୍ର ଇତ୍ୟାଦି ମାର୍କଣ୍ଡ ପୁରାଣ ଶ୍ରୀଦୁର୍ଗା ସପ୍ତସତୀରେ ବର୍ଣ୍ଣନା ଅଛି ।

ସୁତରାଂ ଏହି ଶକ୍ତି ଉପାସନା ବା ଦଶ ମହାବିଦ୍ୟା ଦେବୀମାନଙ୍କ ସାଧନା କଷ୍ଟସାଧ୍ୟ ହେଲେ ମଧ୍ୟ ଯଥେଷ୍ଟ ଫଳପ୍ରଦ ଅଟେ । ଏହା କରିବା ଦ୍ୱାରା ସାଧକ ଈପ୍‌ସିତ ଫଳପ୍ରାପ୍ତି ହୋଇ ସାଂସାରିକ ସୁଖ ଭୋଗ କରେ ଏବଂ ଜୀବନ ଶେଷରେ ସାଯୁଜ୍ୟ ମୋକ୍ଷ ପ୍ରାପ୍ତି ହୋଇଥାଏ । ପରିଶେଷରେ ଏତିକି ସ୍ମରଣ କରାଇ ଦିଆଯାଉଅଛି ଯେ, ଦେବୀଙ୍କୁ ଆରାଧନା କଲେ ଉଭୟ ପରାବିଦ୍ୟା ଏବଂ ଅବିଦ୍ୟା ପ୍ରାପ୍ତ ହୋଇପାରିବ । ସାଧକ ଯଦି ପରାବିଦ୍ୟା ବା ମୋକ୍ଷ, ଜ୍ଞାନ ଇତ୍ୟାଦି ଇଚ୍ଛା କରେ, ଦେବୀ ତାହା ତାକୁ ମଧ୍ୟ ଉପଲବ୍ଧ କରାଇଥାନ୍ତି । ସେଥିପାଇଁ ଶ୍ରୀଦୁର୍ଗା ସପ୍ତସତୀରେ ବର୍ଣ୍ଣନା ଅଛି-

ସା ବିଦ୍ୟା ପରମା ମୁକ୍ତେର୍ହେତୁଭୂତା ସନାତନୀ
ସଂସାର ବନ୍ଧ ହେତୁଶ୍ଚ ସୈବ ସର୍ବେଶ୍ୱରେଶ୍ୱରୀ ॥

(ଶ୍ରୀଦୁର୍ଗା ସପ୍ତସତୀ)

କନକ ମୃଗ, କାରାଗାର ପଥ, ଖୋର୍ଦ୍ଧା

# ବିଜୁ ମାମୁଁଙ୍କ ଦୁଃସାହସିକତାର ପଛରେ କିଏ ଥିଲେ

**ଅଳକା ମହାପାତ୍ର**

ମୋ ଶାଶୁଙ୍କୁ ଯେତେବେଳେ ଏଗାର ବର୍ଷ, ସେତେବେଳେ ତାଙ୍କ ସାନଭାଇ ବିଜୁ ମାମୁଁଙ୍କ ବୟସ ନଅ ବର୍ଷ । ତାଙ୍କ କଟକସ୍ଥିତ ଘର ଆନନ୍ଦ ଭବନରୁ ମହାନଦୀ ଖୁବ୍ ନିକଟ ହୋଇଥିବାରୁ ଭାଇଭଉଣୀ ଦୁଇଜଣ ବେଳେବେଳେ ମହାନଦୀକୁ ପହଁରିବାକୁ ଯାଆନ୍ତି । ତାଙ୍କ ବାପା ମଧ୍ୟ ଝିଅକୁ ପହଁରିବାକୁ ଉତ୍ସାହିତ କରୁଥିଲେ । ଦିନକର କଥା, ଦୁଇଜଣ ଭାଇଭଉଣୀ ପ୍ରାୟ ପାଞ୍ଚଶହ ଫୁଟ ପହଁରି ନଦୀର ଆରପଟ ପଠାକୁ ଚାଲିଗଲେ । କିନ୍ତୁ ଫେରିବାକୁ ଆଉ ସାହସ ପାଇଲା ନାହିଁ । ନଦୀ ପଠାରେ ଗୋଟିଏ କୁଡିଆ ଥିଲା । କୁଡିଆରୁ ବୁଢ଼ା ଲୋକଟିଏ ବାହାରି କହିଲେ ତୁମେ ଛୋଟ ପିଲା । ଏତେବାଟ ପହଁରି ଆସିବା ଉଚିତ ନୁହେଁ । ଏହା କହି ତରଭୁଜ ଆଣି ଖାଇବାକୁ ଦେଲେ । ମିଠା ତରଭୁଜ ଖାଇ ଭାଇଭଉଣୀ ଦୁଇଜଣ ନଦୀ ପାର ହୋଇ ଆସି ଘରେ ପହଞ୍ଚିଲେ । ଫେରିବାରେ ବିଳମ୍ବ ହେବାରୁ ବାପା ମାଆ ବିରକ୍ତ ହେଲେ । ବିଜୁ ମାମୁଁ ମାଆଙ୍କୁ କହିଲେ, 'ଆମେ ଯିବାରୁ ସିନା ଏତେ ମିଠା ତରଭୁଜ ଖାଇଲୁ । ତୁ ଯାଇଥିଲେ ତରଭୁଜ ଖାଇ ଖୁବ୍ ଖୁସି ହୋଇଥାଆନ୍ତୁ' ।

ଏହାର କିଛିଦିନ ପରେ ପୁଣି ଭାଇଭଉଣୀ ଦୁହେଁ ପହଁରି କରି ଯାଇ ତରଭୁଜ ଖାଇଲେ ଓ ଗୋଟିଏ ଘରକୁ ଆଣି ଆସିଲେ । ତରଭୁଜ କାଟି ସମସ୍ତେ ଖାଇଲେ । ମାଆ ପଚାରିଲେ ତୁମେ ଦୁହେଁ ପହଁରି କରି ଆସିଲ । ତରଭୁଜ ଆଣିଲ କେମିତି ? ମୋ ଶାଶୁ କହିଲେ, ବିଜୁ ଗୋଟିଏ ହାତରେ ତରଭୁଜ ଧରି ଅନ୍ୟ ହାତରେ ପହଁରି କରି ଆସିଲା । ଖୁବ୍ କଷ୍ଟରେ ଆସିଥିବାରୁ ଆମେ କୂଳରେ ଦଶ ମିନିଟ୍ ବିଶ୍ରାମ ନେଇ ଆସିଲୁ । ତାଙ୍କ ବାପା କହିଲେ, ଆଜିଠାରୁ ବୁଢ଼ୀର (ମୋ ଶାଶୁଙ୍କ ଡାକ ନାମ ବୁଢ଼ୀ) ଗେଟ୍ ବାହାରକୁ ଯିବା ବନ୍ଦ, ବିଜୁ ମଧ୍ୟ ଆଉ ପହଁରିବାକୁ ଯିବ ନାହିଁ । କିନ୍ତୁ ତାଙ୍କ ମାଆ ମୋ ଶାଶୁଙ୍କୁ କହିଲେ, ବିଜୁ ଗୋଟେ ଛୋଟ ପିଲା । ତୁ ତା' ସାଙ୍ଗରେ ପହଁରିବାକୁ ଗଲେ କିଛି ଅସୁବିଧା ହେଲେ ସେ ତୋତେ ଉଦ୍ଧାର କରି ପାରିବ ନାହିଁ । କିନ୍ତୁ ସେ ପହଁରିବାକୁ ଯିବ । ତୋ ବାପାଙ୍କୁ ନ କହି ପାରିଲେ ବି ମୁଁ ତା'ର ସାହସ ଦେଖି ଖୁବ୍ ଖୁସି । ମୋର ଏଭଳି ସାହସୀ ପୁଅର ଆବଶ୍ୟକତା ଥିଲା ।

ବିଜୁ ମାମୁଁଙ୍କୁ ଯେତେବେଳେ ଚଉଦ ବର୍ଷ ସେତେବେଳେ ସେ କଟକ କଲିଜିଏଟ୍ ସ୍କୁଲରେ ପଢୁଥିଲେ । ଦିନେ ଦୁଇଜଣ ପୋଲିସ୍ ତାଙ୍କୁ ଧରି କରି ଆଣିଲେ । ତାଙ୍କ ମୁଣ୍ଡରୁ ପ୍ରବଳ ରକ୍ତସ୍ରାବ ହେଉଥାଏ । ଘରେ ପହଞ୍ଚି ତାଙ୍କ ବାପାଙ୍କୁ କହିଲେ, ତୁମ ପୁଅକୁ ସମ୍ଭାଳ । ଆଜି ଗାନ୍ଧିଜୀ କଟକ ଆସିଥିଲେ । ସେଠାରେ ଭିଡ ମଧ୍ୟରେ ଝଗଡା କରି ବିଜୁ ଜଣେ ଇଂରେଜ ପୋଲିସ ଅଫିସରକୁ ବାଡେଇଛି । ତେଣୁ ପୋଲିସ ଲାଠି ମାଡରେ ତା'ର ଏପରି ଅବସ୍ଥା ହୋଇଛି । ବାପା ପୁଅର ଚିକିତ୍ସା କରିବା ସଙ୍ଗେ ସଙ୍ଗେ କଲେକ୍ଟରଙ୍କୁ କ୍ଷମା ପ୍ରାର୍ଥନା କରି ଚିଠି ଲେଖିଲେ । ମାଆ ପୁଅର ଅବସ୍ଥା ଦେଖି ଦୁଃଖ ପ୍ରକାଶ କଲେ ମଧ୍ୟ ତାଙ୍କ ପୁଅ ଇଂରେଜ ଲୋକଙ୍କୁ ପିଟିଥିବାରୁ ମନେ ମନେ ଖୁବ୍ ଖୁସି ହେଲେ । ଅଧିକାଂଶ ସମୟରେ ମାଆ ପୁଅ ଦୁହେଁ ଘରର ବାରଣ୍ଡାରେ ବସି ବିଭିନ୍ନ ବିଷୟରେ ଆଲୋଚନା କରନ୍ତି । ବେଳେବେଳେ ମୋ ଶାଶୁ ମଧ୍ୟ ଆଲୋଚନାରେ ଭାଗ ନିଅନ୍ତି । କିନ୍ତୁ ଆଲୋଚନାର ବିଷୟ ବସ୍ତୁ ସେହି ତିନିଜଣଙ୍କୁ ହିଁ ଜଣାଥାଏ ।

ବିଜୁ ମାମୁଁଙ୍କ ମାଆ ଆଶାଲତା ଗୁପ୍ତ ଚିଟାଗଙ୍ଗ (ବର୍ତ୍ତମାନର ବାଂଲାଦେଶ) ଅଧିବାସୀ । ତାଙ୍କର ପୂରା ବଂଶଟା ଇଂରେଜମାନଙ୍କ ବିରୁଦ୍ଧରେ ବିଦ୍ରୋହ କରୁଥିଲେ । ସେ କହନ୍ତି ସିପାହୀ ବିଦ୍ରୋହ ପରେ ଚିଟାଗଙ୍ଗରେ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ହୋଇଥିଲା । ବିଦ୍ରୋହୀ ନେତା ସୂର୍ଯ୍ୟସେନ୍‌ଙ୍କ ଦ୍ୱାରା ହୋଇଥିବା ସଂଗ୍ରାମ ଫଳପ୍ରଦ ହୋଇନଥିଲା । କେତେକ ବିଦ୍ରୋହୀ ପୋଲିସ ଗୁଳିରେ ମଲେ । ଅନ୍ୟମାନେ ଆଣ୍ଡାମାନ ଜେଲରେ ରହିଲେ । ଆଶାଲତାଙ୍କ ଜଣେ ପୁତୁରା ପୋଲିସ ଗୁଳିରେ ମୃତ୍ୟୁ ବରଣ କଲେ ଓ ଅନ୍ୟ ଜଣେ ପୁତୁରା ଆନନ୍ଦଗୁପ୍ତ ଆଣ୍ଡାମାନ ଜେଲରେ ସଶ୍ରମ କାରାଦଣ୍ଡ ଭୋଗିଲେ । ସୂର୍ଯ୍ୟସେନଙ୍କୁ ଫାଶୀ ହେଲା । ଆନନ୍ଦ ଗୁପ୍ତଙ୍କୁ ଚାବୁକ୍ ମାଡ ସହିତ ବିଭିନ୍ନ ଶାରୀରିକ କଷ୍ଟ ଦିଆଯାଏ । ମାଆ କହନ୍ତି ବିଜୁରେ ! ଇଂରେଜମାନେ କ'ଣ ଆମ ଦେଶରୁ ଯିବେ ନାହିଁ ? ଆନନ୍ଦ କ'ଣ ଏହିଭଳି ଅତ୍ୟାଚାରିତ ହେଉଥିବ ? ମୁଁ ଏ କଷ୍ଟ ସହିପାରୁନାହିଁ ।

ରେଭେନ୍‌ସା କଲେଜରେ ପଢ଼ିବା ବେଳେ ବିଜୁ ମାମୁଁ ମାଆଙ୍କୁ କହିଲେ, ମୁଁ ପାଇଲଟ୍ ହେବାକୁ ଚାହେଁ । ଇଂରେଜମାନେ ପ୍ରବଳ ପରାକ୍ରମୀ । ତାଙ୍କୁ ଉଚିତ୍ ଶିକ୍ଷାଦେବାକୁ ହେଲେ ଆକାଶରୁ ହିଁ କିଛି କରିବାକୁ ହେବ । ତା' ସହିତ ମୋର ଗୋଟିଏ ଉଡାଜାହାଜ ଥିବା ଦରକାର । ମାଆ ତାଙ୍କ କଥାର ଗୁରୁତ୍ୱ ବୁଝିଲେ । ବାପାଙ୍କୁ ଏ ବିଷୟରେ କହିଲେ, ବାପା କହିଲେ, ଇଂରେଜମାନଙ୍କ ସୁପାରିଶ ଛଡା ଏଥିପାଇଁ ବହୁତ ଟଙ୍କା ଦରକାର । ମାଆ କହିଲେ ମୋର ଅଳଙ୍କାରଗୁଡିକ କିଛି କାମରେ ଆସୁନାହିଁ । ସେଗୁଡିକ ବିକି ଟଙ୍କା ଯୋଗାଡ କର । ପୁଅ, ଝିଅ ମାଆଙ୍କୁ ସମର୍ଥନ କଲେ । ତାଙ୍କ ବାପା କଟକ ଜିଲ୍ଲାପାଳଙ୍କ ପାଖକୁ ଯାଇ ସବୁ ଜଣାଇଲେ । ସବୁ ଶୁଣି ସେ କହିଲେ, 'ମାସକ ମଧ୍ୟରେ ସବୁ ଟଙ୍କା ଯୋଗାଡ କରି ଆସନ୍ତୁ । ମୁଁ ଶୁଣିଛି ତୁମ ପୁଅ ଖୁବ୍ ଭଲ ଖେଳାଳି । ତା' ଛଡା ସେ ଏବେ ଆଇ.ଏସ୍‌ସି ମଧ୍ୟ ପାଶ୍ କରିଯିବ । ତା' ପରେ ତା' କଥା ବୁଝିବା' ।

ପ୍ରାୟ ଦୁଇମାସ ପରେ ଜିଲ୍ଲାପାଳଙ୍କ ଡାକରା ପାଇ ବିଜୁ ମାମୁଁଙ୍କ ବାପା ଗାଆଁର କିଛି ଜମି ଓ ଗହଣା ବିକ୍ରି କରି ଟଙ୍କା ନେଇ ଜିଲ୍ଲାପାଳଙ୍କ କାର୍ଯ୍ୟାଳୟରେ ଜମା କଲେ । ଦିଲ୍ଲୀ ଫ୍ଲାଇଙ୍ଗ କ୍ଲବ୍‌ର ମୁଖ୍ୟ ପରାମର୍ଶଦାତାଙ୍କ ପାଖକୁ ଜିଲ୍ଲାପାଳଙ୍କ ଚିଠି ଧରି ବିଜୁ ମାମୁଁ ଦିଲ୍ଲୀ ଗଲେ । ସେଠାରେ ସାତଦିନ ରହିବା ପରେ ଉଡାଜାହାଜ ଚାଳନା ବିଷୟରେ ତାଲିମ ଆରମ୍ଭ ହେଲା । ବିଜୁ ମାମୁଁଙ୍କ ବ୍ୟତୀତ ତାଲିମ ନେବା ଲୋକ ଓ ଦେବା ଲୋକ ସମସ୍ତେ ଇଂରେଜ ଥିଲେ । ଦୁଇମାସ ପରେ ତାଙ୍କର ବିମାନ ଚଳାଇବାର ଦକ୍ଷତା ଓ କୌଶଳ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିବା ସଙ୍ଗେ ସଙ୍ଗେ କିଛି ଲୋକ ଈର୍ଷାନ୍ୱିତ ହେଲେ । କିଛି ଦିନ ପରେ ଏକ ଦୁର୍ଘଟଣା ଘଟିଲା । ଏହି ଦୁର୍ଘଟଣାରେ ବିମାନଟି ସମ୍ପୂର୍ଣ୍ଣ ଧ୍ୱଂସ ହୋଇଯାଇଥିଲେ ମଧ୍ୟ ବିଜୁମାମୁଁ ଅକ୍ଷତ ଅବସ୍ଥାରେ ବିମାନ ମଧ୍ୟରୁ ବାହାରି ଆସିଥିଲେ । ଦୁର୍ଘଟଣାର ତଦନ୍ତ କରି ବିଜୁ ମାମୁଁଙ୍କ ତାଲିମ ବନ୍ଦ କରିଦେବା ପାଇଁ ପରିଚାଳନା କମିଟି ନିଷ୍ପତ୍ତି ନେଲା । ଏଥିରେ ସେ ହତାଶ ହୋଇ ପଡିଲେ । କିନ୍ତୁ ମୁଖ୍ୟ ବୈମାନିକ ତାଙ୍କୁ ଆଉଥରେ ସୁଯୋଗ ଦେବା ପାଇଁ ପରିଚାଳନା କମିଟିକୁ ଅନୁରୋଧ କଲେ । ସେ କହିଲେ ଏଠାର କୌଣସି ଇଂରେଜ ପାଇଲଟ୍‌କୁ ବିଜୁ ସହ ତୁଳନା କରାଯାଇ ପାରିବ ନାହିଁ । ତାକୁ ଛାଡିଦେଲେ ଇଂରେଜ ସରକାରର ଖୁବ୍ କ୍ଷତି ହେବ । ତାଙ୍କ କଥା ରହିଲା । ବିଜୁ ମାମୁଁଙ୍କ ବିମାନ ଚାଳନା ପୁଣି ଆରମ୍ଭ ହୋଇଗଲା ।

କିଛି ଦିନ ପରେ ଟେଲିଗ୍ରାମ୍ ଆସିଲା, 'ଆପଣଙ୍କ ପୁଅ ଦିନ ଗୋଟାଏରେ ବିମାନ ଉଡାଣ ଆରମ୍ଭ କରି ଆଉ ଫେରିନାହିଁ' । ଘରେ ଦୁଃଖର ଛାୟା ଖେଳିଗଲା । ପୁଣି ତିନିଦିନ ପରେ ଟେଲିଗ୍ରାମ୍ ଆସିଲା । ସେଥିରେ ମଧ୍ୟ ବିଜୁ ଫେରିନାହିଁ ବୋଲି ଲେଖାଥିଲା, ତାହାର ୩ ଦିନ ପରେ ଟେଲିଗ୍ରାମ୍ ଆସିବାରୁ ଘରଲୋକ ଭୟରେ ତାହାକୁ ଖୋଲିଲେ ନାହିଁ । କିନ୍ତୁ ତାଙ୍କ ମାଆଙ୍କ ଅନୁରୋଧରେ ଟେଲିଗ୍ରାମ୍ ଖୋଲାଗଲା । ସେଥିରେ ଲେଖାଥିଲା ବିଜୁ ସୁସ୍ଥ ଅଛି । କିନ୍ତୁ ତା'ର ଉଡାଜାହାଜଟି ଖଣ୍ଡ ବିଖଣ୍ଡ ହୋଇଯାଇଛି । ସେଦିନ ଦିନ ଗୋଟାଏରେ ବିଜୁ ମାମୁଁ ବିମାନ ଛାଡିଲେ । ପ୍ରାୟ ୧୦୦ ମାଇଲ ଦୂରକୁ ଯାଇ ଫେରିବା ବେଳକୁ ପ୍ରବଳ ଝଡର ପ୍ରଭାବରେ ଉଡାଜାହାଜଟି ବହୁତ ଦୂରକୁ ଚାଲିଗଲା । ତାହାକୁ ନିୟନ୍ତ୍ରଣରେ ରଖିହେଲା ନାହିଁ ।

ଝଡ କମିବା ପରେ ସେ ଦିଲ୍ଲୀ ଆଡକୁ ଫେରିଲେ । କିନ୍ତୁ ସଂଧ୍ୟା ଆଗରୁ ପହଞ୍ଚିବାର ଆଶା ନଥିଲା । ଦୁର୍ଘଟଣା

ନିଶ୍ଚିତ ଜାଣି ସେ ଉଡାଜାହାଜକୁ ତଳକୁ ଖସାଇବାକୁ ଚାହିଁଲେ । ସମତଳ ଜାଗା ନ ମିଳିବାରୁ ବାଧ୍ୟ ହୋଇ ଗୋଟିଏ ଜଙ୍ଗଲ ପାଖରେ ଓହ୍ଲାଇଲେ । ଉଡାଜାହାଜଟି କ୍ଷତିଗ୍ରସ୍ତ ହେଲା । କିନ୍ତୁ ନିଆଁ ଲାଗିନଥିଲା । ଅନ୍ଧାର ହୋଇଯିବାରୁ ବିଜୁ ମାମୁଁ ଗୋଟିଏ ଗଛରେ ଚଢି ରାତି ସାରା ସେହି ଗଛ ଉପରେ ରହିଲେ । ସକାଳେ ଗଛରୁ ଓହ୍ଲାଇ ଭଙ୍ଗା ଉଡାଜାହାଜ ପାଖକୁ ଗଲେ । ପାଖରେ କେଉଁଠି ଗାଁ ଅଛି ଖୋଜିବାକୁ ଗଲେ । ବାଟରେ ଦେଖିଲେ ତିନିଜଣ ସ୍ତ୍ରୀଲୋକ କାଠ ନେବା ପାଇଁ ଆସୁଛନ୍ତି । ସେମାନେ ଯେମିତି ତାଙ୍କୁ ଦେଖିଲେ ପ୍ରାଣ ବିକଳରେ ଦୌଡିଲେ । କିଛି ସମୟ ପରେ ଦେଖିଲେ କିଛି ଲୋକ ଠେଙ୍ଗା ବାଡି ଧରି ଆସୁଛନ୍ତି । ସେ ସେମାନଙ୍କୁ ଅଟକାଇ ସବୁ କଥା ବୁଝାଇ କହିଲେ । ସେହି ଜଙ୍ଗଲର ନାମ ଥିଲା ମୁର୍ଶିଦାବାଦ୍ ଜଙ୍ଗଲ । ଲୋକମାନେ ତାଙ୍କୁ ଗାଁକୁ ନେଇ ଖାଇବାକୁ ଦେଲେ । ତାଙ୍କ ବିଶ୍ରାମ ନେବାର ବ୍ୟବସ୍ଥା କରି ତାଙ୍କୁ ସମସ୍ତ ପ୍ରକାର ସାହାଯ୍ୟ ସହଯୋଗ କରିବେ ବୋଲି ପ୍ରତିଶ୍ରୁତି ଦେଲେ । ତା'ପରେ ଗ୍ରାମର ସ୍ତ୍ରୀ ପୁରୁଷ ସମସ୍ତେ ମିଶି ଉଡାଜାହାଜଟିକୁ ସେଠାରୁ ପ୍ରାୟ ଦୁଇ ମାଇଲ ଦୂର ରାସ୍ତା ଉପରକୁ ଆଣିବାକୁ ଚେଷ୍ଟା କଲେ । ବାଟରେ ବହୁତ ଗଛ ଡାଳ କାଟିବାକୁ ପଡିଲା । ସଂଧ୍ୟା ବେଳେ ଗାଁକୁ ଫେରିଲେ । ସେହି ଗ୍ରାମଟି ମୁସଲମାନ ବହୁଳ ଥିଲା । ସଂଧ୍ୟା ବେଳେ ବିଜୁ ମାମୁଁ ଉଡାଜାହାଜ ବିଷୟରେ ଲୋକମାନଙ୍କୁ ଗପ କହନ୍ତି । ସକାଳେ ଉଡାଜାହାଜ ଠେଲା ହୁଏ । ଶେଷରେ ତାହା ରାସ୍ତା ପାଖରେ ପହଞ୍ଚିଲା । ଉକ୍ତ ଗ୍ରାମରେ ଥିବା ଏକମାତ୍ର ସାଇକେଲରେ ଗୋଟିଏ ସାନ ପିଲାକୁ ଧରି ବିଜୁ ମାମୁଁ ସେଠାରୁ ଦଶ ମାଇଲ ଦୂର ଥାନାକୁ ଗଲେ । ଥାନାରୁ ଚାରିଆଡକୁ ୱ୍ୟରଲେସ୍ ମାଧ୍ୟମରେ ଖବର ଦିଆଗଲା ଓ ତା' ପରେ ବିଜୁ ମାମୁଁ ଗାଁକୁ ଫେରିଆସିଲେ । ତା' ପରଦିନ କିଛି ଲୋକ ମିଲିଟାରୀ ଟ୍ରକ୍ ଓ ଜିପ୍ ଆଣି ଆସିଲେ । ଉଡାଜାହାଜଟି ଖୋଲାହୋଇ ଟ୍ରକ୍‌ରେ ଆସିଲା । ବିଜୁ ମାମୁଁ ଜିପ୍‌ରେ ଆସି ତା' ପରଦିନ ଦିଲ୍ଲୀରେ ପହଞ୍ଚିଲେ । ସେହିଗ୍ରାମର ଲୋକମାନେ ଅତି ଦୁଃଖରେ ତାଙ୍କୁ ବିଦାୟ ଦେଇଥିଲେ । କାରଣ ସେହି ଚାରି ଦିନ ଭିତରେ ବିଜୁ ମାମୁଁଙ୍କ ବ୍ୟବହାର ପାଇଁ ତାଙ୍କୁ ସମସ୍ତେ ଅତ୍ୟନ୍ତ ଭଲ ପାଉଥିଲେ । ଏହି ଘଟଣା ପରେ ତାଙ୍କର ଫ୍ଲାଇଙ୍ଗ ଲାଇସେନ୍‌ସ ବାତିଲ କରାଗଲା । ଉଡାଜାହାଜ ଚାଳନା ବନ୍ଦ କରାଗଲା । ମନ ଦୁଃଖରେ ବିଜୁ ମାମୁଁ ମୁଖ୍ୟ ବୈମାନିକଙ୍କ ପାଖକୁ ଗଲେ । ସେ ତାଙ୍କୁ ବୁଝାଇ ଗ୍ରାଉଣ୍ଡ ଇଞ୍ଜିନିୟରିଂ ଡିପ୍ଲୋମା କୋର୍ସରେ ନାମ ଲେଖାଇ ଦେଲେ । ପ୍ରଥମ ବର୍ଷ ପରେ ଦ୍ୱିତୀୟ ବର୍ଷର ପାଠ ପଢୁଥାନ୍ତି । ଏହି ସମୟରେ ଦୁଇଜଣ ପୋଲିସ୍ ଇନିସ୍‌ପେକ୍ଟର ଆସି ପଚାରିଲେ । ବିଜୁ କିଏ ? ଶୀଘ୍ର ଆମ ସାଙ୍ଗରେ ଆସ, ବିଜୁ ମାମୁଁ ତାଙ୍କ ସାଙ୍ଗରେ ଗଲେ । ସେଠାରେ ଦେଖିଲେ ଜିଲ୍ଲାପାଳ, ଉଚ୍ଚ ପଦସ୍ଥ ପୋଲିସ ଅଧିକାରୀ ଓ ମୁଖ୍ୟ ବୈମାନିକ ଏକାଠି ବିଚାର ବିମର୍ଷ କରୁଛନ୍ତି । ବିଜୁ ମାମୁଁଙ୍କୁ ଦେଖି ଜିଲ୍ଲାପାଳ କହିଲେ, ତମେ ଯଦି ଗୋଟିଏ କାମ କରିପାରିବ ତେବେ ତୁମର ଉଡାଜାହାଜ ଉଡାଣ ଚାଲୁ ରହିବ । ଏହା ଶୁଣି ବିଜୁଙ୍କ ଖୁସିର ସୀମା ରହିଲା ନାହିଁ । ସେ ସଙ୍ଗେ ସଙ୍ଗେ ରାଜି ହୋଇଗଲେ । କାମଟି ମୁଖ୍ୟ ବୈମାନିକ ବୁଝାଇ ଦେଲେ । ଦୁଇଜଣ ସିନିୟର ଅଫିସର ଲଣ୍ଡନରୁ ଆସିବେ । ସେମାନେ କାଶ୍ମୀର ପାଖରେ କେତେକ ସ୍ଥାନର ସର୍ଭେ କରିବେ । ସେଥିପାଇଁ ମାଟିରୁ ମାତ୍ର ପଚାଶ ଫୁଟ ଉଚ୍ଚତାରେ ଉଡାଜହାଜ ଚାଳନା ଆବଶ୍ୟକ । ଏଥିପାଇଁ କୌଣସି ପାଇଲଟ, ଏପରିକି ତାଙ୍କ ତାଲିମଦାତାମାନେ ମଧ୍ୟ ନିଜର ଅକ୍ଷମତା ପ୍ରକାଶ କରିଥିଲେ । ପାଞ୍ଚ ଶହ ଫୁଟ ତଳକୁ ବିମାନ ଚାଳନାର ତାଲିମ କେହି ପାଇନଥିଲେ । ସମସ୍ତଙ୍କ ମନକୁ 'ବିଜୁର ନାମଟା ହିଁ ଆସିଲା । ବିଜୁମାମୁଁ ସବୁ ଶୁଣି ହସିଲେ । କହିଲେ ପଚାଶ ଫୁଟ ବହୁତ ହୋଇଯାଉଛି । ମୁଁ ଏକ ଘଣ୍ଟା ପର୍ଯ୍ୟନ୍ତ କୋଡିଏ ଫୁଟ ଉଚ୍ଚତାରେ ବିମାନ ଚାଳନା କରି ତାଙ୍କୁ ସବୁ ଦେଖାଇଦେବି । ଦୁଇଦିନ ପରେ ଦୁଇଜଣ ସାହେବ ଆସି ପହଞ୍ଚିଲେ । ଚାରି ଆସନ ବିଶିଷ୍ଟ ଗୋଟିଏ ଉଡାଜାହାଜରେ ଦିନ ନଅଟା ସମୟରେ ଦିଲ୍ଲୀରୁ ଶ୍ରୀନଗର ଯାତ୍ରା ଆରମ୍ଭ ହେଲା । ଅଢେ଼ଇ ଘଣ୍ଟାରେ ଶ୍ରୀନଗରରେ ପହଞ୍ଚିଲେ । ବିମାନ ବନ୍ଦରରେ ଖାଇପିଇ ବିଶ୍ରାମ କଲେ । ଅପରାହ୍ନ ଦୁଇଟାରେ ଉଡାଣ ଆରମ୍ଭ ହୋଇ ଦୁଇଘଣ୍ଟାରେ କାମ ଶେଷ ହେଲା । ଚାରିଟା ବେଳକୁ ସେମାନେ ଶ୍ରୀନଗର ଫେରିଲେ । ସେଦିନର ଉଡାଣ ୨୦ ରୁ ୨୫ ଫୁଟ ଭିତରେ ହିଁ ହୋଇଥିଲା । ସେଦିନ ରାତିରେ ଅତିଥି ଭବନରେ ଏକ ଭୋଜିର ଆୟୋଜନ ହୋଇଥିଲା । ବିଜୁମାମୁଁଙ୍କୁ ଛାଡି ଅନ୍ୟମାନେ ଇଂରେଜ ଥିଲେ । ସମସ୍ତେ ମଦ ପିଇଲେ । ଦୁଇଜଣ ଅଫିସରଙ୍କ ମଧ୍ୟରୁ ଯିଏ

ସିନିୟର ସେ ହଠାତ୍ ଗର୍ଜି ଉଠି କହିଲେ, ଭାରତୀୟମାନେ କୁକୁର । ଏମାନେ ଆମର ଚାକର । ଇଂରେଜ ପାଇଲଟ୍ ନ ଆସି ଗୋଟେ ଚାକରକୁ ପଠାଇ ତା'ର ଭାଉ ବଢ଼ାଇ ଦେଲେ । ଆହୁରି ଅନେକ ଗାଳି ଦେବା ପରେ କହିଲେ, ଏ ଚାକରକୁ ଆମ ସହିତ ଖାଇବାକୁ କିଏ ଡାକିଲା ? ତାକୁ ଚାକରମାନଙ୍କ ସହିତ ଖାଇବାକୁ ଦିଅ । ବିଜୁ ମାମୁଁ ଏକଥା ଶୁଣି ଭୀଷଣ ବିରକ୍ତ ହୋଇ ନିଜ କୋଠରିକୁ ଚାଲିଗଲେ । ସକାଳେ ଜଳଖିଆ ଖାଇ ସମସ୍ତେ ବିମାନ ବନ୍ଦର ଗଲେ । ଦିନ ଦଶଟା ସମୟରେ ସେହି ଦୁଇଜଣ ଅଫିସର ପଛରେ ବସିଲେ । ବିଜୁ ମାମୁଁ ପାଇଲଟ୍ ସିଟ୍‌ରେ ବସି ଇଞ୍ଜିନ୍ ଷ୍ଟାଟ୍ କଲେ । କିଛିବାଟ ଯାଇ ଉଡାଜାହାଜ ଅଟକିଗଲା । ଇଞ୍ଜିନ୍ ଷ୍ଟାଟ୍ ହୋଇଥାଏ । ବିଜୁ ମାମୁଁ ଉଡାଜାହାଜରୁ ଓହ୍ଲାଇ ପଛ କବାଟ ଖୋଲି ତାଙ୍କୁ ଗାଳି ଦେଇଥିବା ଇଂରେଜ ସାହେବଙ୍କୁ ଟାଣି ଆଣି ପ୍ରବଳ ମାଡ ମାରି ତଳେ ପକାଇ ଦେଲେ ଓ ତତ୍‌କ୍ଷଣାତ୍ ଉଡାଣ ଆରମ୍ଭ ହେଲା । ବସିଥିବା ସାହେବ ଜଣକ କହିଲେ ତୁମେ କ'ଣ କରୁଛ ? ଉଡାଜାହାଜ ଫେରାଅ । ବିଜୁ ମାମୁଁ କହିଲେ ଆପଣ ଦିଲ୍ଲୀରେ ପହଞ୍ଚିବା ପର୍ଯ୍ୟନ୍ତ ଚୁପ୍ ହୋଇ ବସନ୍ତୁ । ନ ହେଲେ ଏହି ଭାରତୀୟ ଚାକର ଆପଣଙ୍କୁ ଆକାଶରୁ ତଳକୁ ପକାଇଦେବ । ସେ ଡରିଯାଇ ଚୁପ୍ ହୋଇ ବସି ରହିଲେ । ଉଡାଜାହାଜ ଦିଲ୍ଲୀରେ ପହଞ୍ଚିବା ସଙ୍ଗେ ସଙ୍ଗେ ବିଜୁ ମାମୁଁଙ୍କ ହାତରେ ହାତକଡି ପଡିଲା । ରାତିରେ ବିଜୁ ମାମୁଁ ଜେଲ୍‌ରେ ରହିଲେ । ସାହେବ ରହିଲେ ଶ୍ରୀନଗରର ମିଲିଟାରୀ ଡାକ୍ତରଖାନାରେ । ଭାରତୀୟ ଜେଲର ବିଜୁମାମୁଁଙ୍କୁ କହିଲେ, ସରକାର ଏ ଘଟଣାକୁ ଗୁରୁତ୍ୱର ସହିତ ବିଚାର କରୁଛନ୍ତି । ଦୁଇଦିନ ଭିତରେ ଶୁଣାଣି ହେବ । ବିଜୁମାମୁଁ କହିଲେ, ସେମାନେ ଯାହା କରିବେ କରନ୍ତୁ, ମୋର ଡର ନାହିଁ । କୋର୍ଟର କାଠଗଡାରେ ବିଜୁ ମାମୁଁ ଠିଆହେଲେ । ତାଙ୍କୁ ଆଜୀବନ କାରାଦଣ୍ଡ ପାଇଁ ସରକାରୀ ଓକିଲ ଯୁକ୍ତି କଲେ । ଏହି ଘଟଣାର ଏକମାତ୍ର ଇଂରେଜ ସାକ୍ଷୀଙ୍କୁ ଜେରା କରାହେଲା । ସେ ସେଦିନ ରାତିର ଘଟଣା ସବୁ ଠିକ୍ ଭାବରେ ବର୍ଣ୍ଣନା କଲେ । ଆଶ୍ଚର୍ଯ୍ୟର କଥା ହେଲା, ଇଂରେଜ ସାକ୍ଷୀ ଜଣକ କହିଲେ, 'ବିଜୁ ସାଙ୍ଗରେ ଯେପରି ବ୍ୟବହାର କରାଗଲା, ସେ ତାହାର ସଠିକ୍ ଜବାବ ଦେଇଛନ୍ତି । ମୁଁ ହୋଇଥିଲେ ଠିକ୍ ସେପରି କରିଥାନ୍ତି । ଆମେ ଯେଉଁ କାମରେ ଆସିଥିଲୁ, ସାମରିକ ଦୃଷ୍ଟିକୋଣରୁ ତାହା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ତାହା କେବଳ ଏହି କୁଶଳୀ ଓ ସାହସୀ ପାଇଲଟ୍ ପାଇଁ ସମ୍ଭବ ହେଲା । ତାଙ୍କୁ ଇଂରେଜ ସରକାର ଯଥେଷ୍ଟ ସମ୍ମାନ ଓ ପୁରସ୍କାର ଦେବା ଉଚିତ୍' । ସବୁ ଶୁଣି ବିଚାରପତି ମହୋଦୟ ବିଜୁ ମାମୁଁଙ୍କୁ କହିଲେ ତୁମକୁ କ୍ଷମା ଦିଆଗଲା । କିନ୍ତୁ ଗୋଟିଏ ଦିନ ଜେଲ୍ କିମ୍ବା ଗୋଟିଏ ଟଙ୍କା ଜୋରିମାନା ତୁମକୁ ଦେବାକୁ ପଡିବ । ଏହାପରେ କୋର୍ଟ ନିଷ୍ପତ୍ତି ନେଲେ ଯେ ବିଜୁଙ୍କ ବିମାନ ଉଡାଣରେ କେହି ବାଧା ଦେବେ ନାହିଁ କିମ୍ବା ତାଙ୍କର ଲାଇସେନ୍‌ସ ରଦ୍ଦ ହେବ ନାହିଁ ।

କିଛି ଦିନ ପରେ ବିଜୁମାମୁଁ ପଠାଇଥିବା ତାଙ୍କ ମାଆଙ୍କ ନାମରେ ଏକ ଚିଠି ଆସିଲା । ମୋ ଜୀବନର ଯେଉଁ ଲକ୍ଷ୍ୟ ଥିଲା, ତାହାର ଭିତ୍ତିଭୂମି ଆଜି ପଡିଲା । ମୋ ହାତରୁ ଆଉ ଉଡାଜାହାଜ ଯିବାର ନାହିଁ । ଏସବୁ ତୋ ଆଶୀର୍ବାଦ ଓ ପ୍ରେରଣାର ଫଳ । ଇଂରେଜମାନଙ୍କୁ କିପରି ହଟାଇବାକୁ ପଡିବ ସେ ବିଷୟରେ ଅନେକ କଥା ଲେଖାଯାଇଥିଲା ।

ତାଙ୍କ ବାପା ଦୁଇଥର ଚିଠିଟି ପଢ଼ିଲେ । ଝିଅକୁ ପଚାରିଲେ ତୁ ଏ ଚିଠି ପଢ଼ିଛୁ । ଝିଅ କହିଲେ, ତିନିଥର ପଢ଼ିଛି । ବାପା କହିଲେ ମୋ ଆଗରେ ଏ ଚିଠିକୁ ନିଆଁ ଲଗାଇ ନଷ୍ଟ କର । ମୁଁ ଜାଣିପାରୁ ନାହିଁ ଏ ପିଲାଟି କେଉଁ ପ୍ରକାର ଧାତୁରେ ତିଆରି ?

ଏହିପରି ଦିନ ଗଡି ଚାଲିଲା । ଏହା ପରର ଘଟଣା ଅଳ୍ପ ବହୁତେ ସମସ୍ତଙ୍କୁ ଜଣା । ଭାରତ ସ୍ୱାଧୀନ ହେଲା । ଆନନ୍ଦ ଗୁପ୍ତ ଆଣ୍ଡାମାନରୁ ରୁଗ୍‌ଣ ଅବସ୍ଥାରେ ଆନନ୍ଦ ଭବନକୁ ଆସିଲେ । କିନ୍ତୁ ଏସବୁ ଦେଖିବାକୁ ବିଜୁମାମୁଁଙ୍କ ପ୍ରେରଣା ଦାୟୀ ମାତା ଆଶାଲତା ଦେବୀ, ସେତେବେଳକୁ ଏ ଦୁନିଆରେ ନଥିଲେ ।

*(ଲିଖିତ ଘଟଣାଗୁଡିକ ମୋ ଶାଶୁ (ବିଜୁ ବାବୁଙ୍କ ବଡଭଉଣୀ ସୁକୃତୀ ମହାପାତ୍ର)ଙ୍କଠାରୁ ଶୁଣିଥିବା ତଥ୍ୟ ଉପରେ ଆଧାରିତ । )*

---

୨୩୯, ଖାରବେଳ ନଗର
ଭୁବନେଶ୍ୱର

# ପ୍ରାଚୀନ ଭାରତର ତପୋବନ ଓ ଗୁରୁଶିଷ୍ୟ ପରମ୍ପରା

**ଡକ୍ଟର ଶରତ କୁମାର ବିଶ୍ୱାଳ**

ଯିଏ ଅଜ୍ଞାନ ଅନ୍ଧକାର ଦୂର କରି ଆମର ଜ୍ଞାନଚକ୍ଷୁ ଉନ୍ମୀଳିତ କରନ୍ତି, ତାଙ୍କୁ ଗୁରୁ କୁହାଯାଏ । ଗୁରୁ ହେଉଛନ୍ତି ସାକ୍ଷାତ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ସଦୃଶ । ଗୁରୁ ଆମକୁ ନବଜୀବନ ଦେଉଥିବାରୁ ତାଙ୍କୁ ବ୍ରହ୍ମା, ପାଳନ କରୁଥିବାରୁ ବିଷ୍ଣୁ ଏବଂ ଆମର ମନ୍ଦଗୁଣକୁ ବିନାଶ କରୁଥିବାରୁ ତାଙ୍କୁ ମହେଶ୍ୱର କୁହାଯାଏ । 'ଗୁ'ର ଅର୍ଥ ଅଜ୍ଞାନ ଏବଂ 'ରୁ' ଅର୍ଥ ଦୂର କରିବା । ତେଣୁ ଯିଏ ଛାତ୍ର–ଛାତ୍ରୀଙ୍କ ମନର ଅଜ୍ଞାନ ରୂପକ ଅନ୍ଧକାର ଦୂରକରି ଜ୍ଞାନଦୀପ ପ୍ରଜ୍ଜ୍ୱଳିତ କରାନ୍ତି, ସେହିଁ ପ୍ରକୃତରେ ଗୁରୁ । ଛାତ୍ର–ଛାତ୍ରୀଙ୍କ ପାଖେପାଖେ ରହି ଗୁରୁ ସେମାନଙ୍କୁ ସମସ୍ତ ଦିଗ୍‌ଦର୍ଶନ ଦିଅନ୍ତି, ସନ୍ଦେହ ଦୂରକରନ୍ତି ଓ ପରିପୂର୍ଣ୍ଣତା ପ୍ରଦାନ କରନ୍ତି । ପ୍ରାଚୀନ ଭାରତର ମନୀଷୀମାନେ ବାରମ୍ବାର ଏହା ସୂଚାଇ ଦେଇ ଯାଇଛନ୍ତି ଯେ ଗୁରୁ ହେଉଛନ୍ତି ସ୍ୱୟଂ ପରମାତ୍ମା । ତେଣୁ ଆଜିବି ଆମ୍ଭେମାନେ ଗୁରୁ ପୂଜା କରି ପ୍ରଣାମ କଲାବେଳେ ଆବୃତ୍ତି କରିଥାଉ–



'ଗୁରୁବ୍ରହ୍ମା, ଗୁରୁବିଷ୍ଣୁ, ଗୁରୁର୍ଦେବ ମହେଶ୍ୱରଃ
ଗୁରୁସାକ୍ଷାତ ପରଂବ୍ରହ୍ମ ତସ୍ମୈଶ୍ରୀ ଗୁରବେ ନମଃ'

ପ୍ରାଚୀନ ଭାରତରେ ସଂସ୍କୃତି ଗୁରୁଶିଷ୍ୟ ପରମ୍ପରା ଉପରେ ପ୍ରତିଷ୍ଠିତ । ସେତେବେଳେ ଗୁରୁଶିଷ୍ୟର ସମ୍ପର୍କ ଅତ୍ୟନ୍ତ ମଧୁମୟ ଓ ନିବିଡ ଥିଲା । ଗୁରୁମାନେ ସକଳ ଗୁଣର ଅଧିକାରୀ ଥିଲେ । ସମାଜରେ ଗୁରୁମାନଙ୍କର ସ୍ଥାନ ଖୁବ୍ ଉଚ୍ଚରେ ଥିଲା । ସେମାନେ ସମାଜର ପ୍ରକୃତ ରୂପକାର ଥିଲେ । ଗୁରୁମାନଙ୍କର ନିଷ୍କଳଙ୍କ ଚରିତ୍ର, ଅଗାଧ ଜ୍ଞାନ ଓ ମହାନ୍ ବ୍ୟକ୍ତିତ୍ୱ ସମାଜରେ ତାଙ୍କୁ ଉଚ୍ଚ ସମ୍ମାନରେ ଭୂଷିତ କରୁଥିଲା । ସେତେବେଳେ ଗୁରୁମାନଙ୍କର ତ୍ୟାଗପୂତ ଜୀବନ ଓ ସାଧନା ସମଗ୍ର ସମାଜକୁ ଉଦ୍‌ବୁଦ୍ଧ କରୁଥିଲା । ସେଥିପାଇଁ ସଚରାଚର ସ୍ୱୟଂ ସ୍ରଷ୍ଟାଙ୍କ ପୂଜା ପୂର୍ବରୁ ଗୁରୁପୂଜା କରାଯାଇଥାଏ । ଗୁରୁପୂଜା ନକରି ଭଗବାନଙ୍କ ପୂଜାକଲେ କିଛି ଫଳପ୍ରାପ୍ତି ହୁଏନାହିଁ । ସିଦ୍ଧିଲାଭ ହୁଏ ନାହିଁ । ଭଗବାନ ନିଜେ କହିଛନ୍ତି–

ପ୍ରଥମତୁ ଗୁରୁଃ ପୂଜ୍ୟ ତତର୍ଶ୍ଚୈବ ସମାର୍ଚ୍ଚନମ
କୁର୍ବନ ସିଦ୍ଧି ମବାପ୍ନୋତି ହ୍ୟନ୍ୟଥା ନିଷ୍ଫଳଂ ଭବେତ ।





ତେଣୁ 'ଗୁରୁ' ଶବ୍ଦର ଅର୍ଥ କେତେ ବ୍ୟାପକ ଓ ଗୁରୁତ୍ୱପୂର୍ଣ୍ଣ, ଏଥିରୁ ସହଜରେ ଅନୁମେୟ ।

ସମାଜରେ ବହୁତ ପ୍ରକାର 'ଗୁରୁ' ଅଛନ୍ତି । ପ୍ରତ୍ୟେକ ଗୁରୁ ହେଉଛନ୍ତି ନମସ୍ୟ । ସାଧାରଣତଃ ଗୁରୁ କହିଲେ ଆମେ ଶିକ୍ଷକମାନଙ୍କୁ ବୁଝିଥାଉଁ । ଶିକ୍ଷକମାନଙ୍କୁ 'ଜ୍ଞାନଗୁରୁ' କୁହାଯାଏ । କାରଣ ଶିକ୍ଷକମାନେ ଆମଦେଶର ଲକ୍ଷ ଲକ୍ଷ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଜ୍ଞାନାଲୋକ ବିତରଣ କରନ୍ତି । ସେମାନଙ୍କୁ ଭବିଷ୍ୟତରେ ଉତ୍ତମ ନାଗରିକ ହେବାପାଇଁ ପଥ ପ୍ରଦର୍ଶନ କରିଥାନ୍ତି । ଦେଶକୁ ପ୍ରଗତି ପଥରେ ଆଗେଇ ନେବାର ଗୁରୁଦାୟିତ୍ୱ ବହନ କରିଥାନ୍ତି ।

ବର୍ତ୍ତମାନ ଲକ୍ଷ୍ୟକଲେ ସ୍ୱତଃ ମନକୁ ଚାଲି ଆସେ– ପ୍ରାଚୀନ ଭାରତର ସେ ଗୁରୁକୁଳ ଶିକ୍ଷା ଓ ଶାନ୍ତପୂତ ତପୋବନ । ଆପେ ଆପେ ପାଟିରୁ ବାହାରି ପଡେ– କାହିଁ ଗଲେ ଆଗକାଳର ସେହି ଆରୁଣି, ଶ୍ୱେତକେତୁ, ଭୃଗୁ, ସତ୍ୟକାମ, ନଚିକେତା, ଉପମନ୍ୟୁ, ଉତ୍ତଙ୍କ, ଶୌନକ ଓ ଏକଲବ୍ୟ ଭଳି ଗୁରୁଭକ୍ତ ଶିଷ୍ୟମାନେ ଏବଂ ଗୌତମ, ସନ୍ଦିପନୀ, ଧୌମ୍ୟ ଓ ବ୍ୟାସଙ୍କ ଭଳି ମହାଜ୍ଞାନୀ ଶିଷ୍ୟବତ୍ସଳ ଗୁରୁମାନେ ? କାହିଁଗଲା ଆମର ସେ ଶାନ୍ତପୂତ ତପୋବନ ଭଳି ପରିବେଶରେ ଚାଲୁଥିବା ନାଳନ୍ଦା, ତକ୍ଷଶିଳା, ବାରାଣସୀ ଓ ଉଜ୍ଜୟିନୀ ପରି ବିଦ୍ୟାପୀଠ ? ପ୍ରାଚୀନ ଭାରତରେ ବିଦ୍ୟାଶିକ୍ଷାର ମାନ ଏତେ ଉନ୍ନତ ଥିଲା ଯେ, ସେତେବେଳେ ଦେଶ ବିଦେଶର ବିଭିନ୍ନ ସ୍ଥାନରୁ ଛାତ୍ରମାନେ ଆସି ବିଦ୍ୟାଲାଭ କରୁଥିଲେ । ସିଂହଳ, ଚୀନ୍, ଜାଭା ଓ ଶ୍ୟାମ ପ୍ରଭୃତି ଦେଶରୁ ଛାତ୍ରମାନେ ଭାରତକୁ ବିଦ୍ୟାଶିକ୍ଷା କରିବାକୁ ଆସୁଥିଲେ ।

ଆଜିକାଲି ପରି ସେତେବେଳେ ସ୍କୁଲ ନଥିଲା । ଅରଣ୍ୟ ମଧ୍ୟରେ ପ୍ରକୃତିର ଶାନ୍ତ କମନୀୟ କୋଳରେ ମୁନିରିଷିମାନେ ରହି ଆଶ୍ରମରେ ଶିଷ୍ୟମାନଙ୍କୁ ଶିକ୍ଷାଦାନ କରୁଥିଲେ । ଏହି ମୁନି ଆଶ୍ରମଗୁଡ଼ିକୁ ସେତେବେଳେ ତପୋବନ କୁହାଯାଉଥିଲା । ଏହି ତପୋବନଗୁଡ଼ିକ ସେତେବେଳେ ଜନପଦର କୋଳାହଳଠାରୁ ବହୁ ଦୂରରେ ଅବସ୍ଥିତ ଥିଲା । ଶିଷ୍ୟମାନେ ଚାଲି ଚାଲି ପଦବ୍ରଜରେ ଗୁରୁଆଶ୍ରମକୁ ଯାଉଥିଲେ ଓ ସେଠାରେ ଶିକ୍ଷା ସମାପ୍ତ ହେଲା ପର୍ଯ୍ୟନ୍ତ ରହୁଥିଲେ । ଶିକ୍ଷା ସମାପ୍ତ ହେବା ପରେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଗୁରୁଙ୍କଠାରୁ ବିଦାୟନେଇ ସ୍ୱଗୃହକୁ ଫେରୁଥିଲେ । ସେତେବେଳେ ସମାଜ ଓ ଶାସକ ବା ରାଜା ଆଶ୍ରମର ସମସ୍ତ ଖର୍ଚ୍ଚ ବହନ କରୁଥିଲେ । ଶିଷ୍ୟମାନେ ମଧ୍ୟ ଭିକ୍ଷାକରି ଆଂଶିକ ଖର୍ଚ୍ଚ ତୁଲାଉ ଥିଲେ । ପାଠ ପଢିବା ପାଇଁ ଶିଷ୍ୟମାନେ ଗୁରୁଙ୍କୁ କୌଣସି ପାରିଶ୍ରମିକ ଦେଉ ନଥିଲେ । ଶିକ୍ଷା ସମାପ୍ତି ପରେ 'ଗୁରୁଦକ୍ଷିଣା' ଦେଇ ଶିଷ୍ୟମାନେ ବିଦାୟ ନେଉଥିଲେ । ଏହି ଦକ୍ଷିଣା ଧନୀ ଶ୍ରେଣୀର ଶିଷ୍ୟମାନେ ଘରୁ ଆଣି ଦେଉଥିଲେ ଓ ଅନ୍ୟମାନେ ଭିକ୍ଷାକରି ଗୁରୁ ଋଣରୁ ମୁକ୍ତ ହେଉଥିଲେ । 'ଗୁରୁଦକ୍ଷିଣା' ତ୍ୟାଗ, ଆତ୍ମୋତ୍ସର୍ଗ ଓ ଗୁରୁଙ୍କ ପ୍ରତି ଐକାନ୍ତିକ ନିଷ୍ଠାର ନିଦର୍ଶନ ଥିଲା ।

ଧର୍ମମାର୍ଗ ଅନୁସରଣ କରିବା ଓ ନୈତିକତା ସହକାରେ ଜୀବନଯାପନ କରିବା ସେତେବେଳେ ଶିକ୍ଷାର ପ୍ରଧାନ ଲକ୍ଷ୍ୟ ଥିଲା । ଶିଷ୍ୟମାନଙ୍କର ଚରିତ୍ରଗଠନ ଦିଗରେ ଗୁରୁମାନେ ବିଶେଷ ଧ୍ୟାନ ଦେଉଥିଲେ । କୃଷିଉଦ୍ୟାନ, ବୃକ୍ଷରୋପଣ, ଗୋପାଳନ, ନୀତିଶିକ୍ଷା, ଧର୍ମଜ୍ଞାନ, ତର୍କଶାସ୍ତ୍ର, ଜ୍ୟୋତିଷବିଦ୍ୟା, ବେଦପାଠ, ବ୍ୟାକରଣ ଓ କଳ୍ପ ଇତ୍ୟାଦି ବିଷୟ ଗୁରୁକୁଳ ଶିକ୍ଷା ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ଥିଲା । ଆଚାର ବ୍ୟବହାରଠାରୁ ଆରମ୍ଭ କରି ତ୍ୟାଗ, ସଂଯମ, ପରୋପକାରିତା କର୍ମକୁଶଳତା ଓ ମୁମୁକ୍ଷା ପ୍ରଭୃତି ସଂକ୍ରାନ୍ତରେ ଗୁରୁମାନେ ଉପଦେଶ ମାଧ୍ୟମରେ ଶିକ୍ଷା ଦେଉଥିଲେ । ଶିଷ୍ୟର ଶାରୀରିକ, ମାନସିକ, ନୈତିକ ଓ ଆଧ୍ୟାତ୍ମିକ ଆଦି ବିଭିନ୍ନ ବିଭାଗର ବିକାଶ ପ୍ରତି ଗୁରୁକୁଳ ଶିକ୍ଷା ଦୃଷ୍ଟି ଦେଉଥିଲା । ଶିଷ୍ୟମାନେ ଆଶ୍ରମରେ କଠିନ ବ୍ରହ୍ମଚର୍ଯ୍ୟ ପାଳନ ପୂର୍ବକ ଗୁରୁସେବା କରି ନିଜର ପ୍ରତିଭା ବିକାଶ ସାଧନ କରିବାରେ ବ୍ରତୀ ହେଉଥିଲେ । ଗୁରୁ ଓ ଶିଷ୍ୟମାନେ ଆଶ୍ରମରେ ଏକ ପରିବାର ସଦସ୍ୟ ଭଳି ଜୀବନଯାପନ କରୁଥିଲେ । ସେତେବେଳେ ଗୁରୁପୂଜା, ଗୁରୁଭକ୍ତି, ଗୁରୁଆଜ୍ଞା ପାଳନ ଓ ଗୁରୁ ଉପଦେଶ ଅନୁସାରେ ଚଳିବା ପ୍ରତ୍ୟେକ ଶିଷ୍ୟଙ୍କର ଜୀବନରେ ପରମ ବ୍ରତ ଥିଲା । ସେଥିପାଇଁ କୁହାଯାଇଛି–

'ଧ୍ୟାନମୂଳଂ ଗୁରୋଃ ମୂର୍ତ୍ତିଃ<br>
ପୂଜା ମୂଳଂ ଗୁରୋଃ ପଦଃ<br>
ମନ୍ତ୍ର ମୂଳଂ ଗୁରୋଃ ବାକ୍ୟଂ<br>
ମୋକ୍ଷ ମୂଳଂ ଗୁରୋଃ କୃପା'

ଗୁରୁଙ୍କୁ ଭକ୍ତି ଓ ସେବା ବଳରେ ଶିଷ୍ୟମାନେ ସନ୍ତୁଷ୍ଟ କରୁଥିଲେ । ସେତେବେଳେ ଆଶ୍ରମର ପ୍ରତ୍ୟେକ ବିଦ୍ୟାର୍ଥୀ ବଣକୁ ଯାଇ ଫଳମୂଳ, ଜାଳେଣିକାଠ ଓ ହୋମସାମଗ୍ରୀ ସଂଗ୍ରହ କରୁଥିଲେ । ଆଶ୍ରମର କୃଷିକାର୍ଯ୍ୟ ଓ ଗୋପାଳନ କରୁଥିଲେ । ବଣର ଝରଣାରୁ ଜଳ ସଂଗ୍ରହ କରି ଆଶ୍ରମକୁ ଆଣୁଥିଲେ । ଭିକ୍ଷା କରିବା ପାଇଁ ନିକଟବର୍ତ୍ତୀ ଗ୍ରାମମାନଙ୍କୁ ଯାଉଥିଲେ । ଏହାଦ୍ୱାରା ଶିଷ୍ୟମାନେ ଶାରୀରିକ ପରିଶ୍ରମର ମହତ୍ୱ ବୁଝିବା ସହିତ ସ୍ୱାବଲମ୍ବନଶୀଳତା ଶିକ୍ଷା କରୁଥିଲେ । ଏହା ଶିଷ୍ୟର ଚରିତ୍ର ଗଠନ ଦିଗରେ ବହୁତ ସାହାଯ୍ୟ କରୁଥିଲା । ଏତଦ୍‌ବ୍ୟତୀତ ଶିଷ୍ୟମାନେ ଭିକ୍ଷା କରିବା ସମୟରେ ସମାଜର ନିକଟତର ହୋଇ ସାମାଜିକ ଅବସ୍ଥା ଓ ଚଳଣି ଇତ୍ୟାଦି ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ଆହରଣ କରୁଥିଲେ । ତେଣୁ ଭବିଷ୍ୟତ ଜୀବନରେ ସମାଜକୁ ଦଳି ଚକଟି ନିଜେ ଉପରକୁ ଉଠିବା ପାଇଁ ସେମାନେ ଚେଷ୍ଟା କରୁନଥିଲେ । ସେମାନଙ୍କ ସୁଖ ଓ ସମୃଦ୍ଧି ପଛରେ ସମାଜର ଯେଉଁ ଅବଦାନ ଅଛି, ତାହା ସେ ଜାଣି ପାରୁଥିଲେ । ତେଣୁ ଭବିଷ୍ୟତରେ ସମାଜର ଏହି ବିରାଟ ଋଣକୁ ପରିଶୋଧ କରିବା ପାଇଁ ଯତ୍ନବାନ ହେଉଥିଲେ । ଗୁରୁ ଶିଷ୍ୟମାନଙ୍କୁ ନିଜ ସନ୍ତାନପରି ଦେଖୁଥିଲେ । ଗୋଟିଏ ଆଶ୍ରମରେ ସାଧାରଣତଃ ୧୫-୨୦ଜଣ ଶିଷ୍ୟ ରହି ଶିକ୍ଷା ଗ୍ରହଣ କରୁଥିଲେ । ବେଳେବେଳେ ଗୁରୁମାନେ ଶିଷ୍ୟମାନଙ୍କର ଜ୍ଞାନ ଓ ଭକ୍ତିର ଗଭୀରତା ଜାଣିବା ପାଇଁ ସେମାନଙ୍କୁ କଠୋର ପରୀକ୍ଷାର ସମ୍ମୁଖୀନ କରାଉଥିଲେ । ଏଥିରେ ଉତ୍ତୀର୍ଣ୍ଣ ହେଲେ ତାଙ୍କର ଶିକ୍ଷା ସମାପ୍ତ ହେଲା ବୋଲି ଘୋଷଣା କରି ଓ ଆଶୀର୍ବାଦ ଦେଇ ବିଦାୟ ଦେଉଥିଲେ । ଶିଷ୍ୟମାନେ ମଧ୍ୟ ଗୁରୁଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେମାନଙ୍କର ଜୀବନଦାନ କରିବା ପାଇଁ ପ୍ରସ୍ତୁତ ଥିଲେ । ବହୁ କଷ୍ଟ ସ୍ୱୀକାର କରି ଗୁରୁଙ୍କର ଇଚ୍ଛାନୁରୂପକ ଦକ୍ଷିଣା ଦେଇ, ତାଙ୍କର ଅଭିଳାଷ ପୂରଣ କରିଥିବାର ବହୁ ଦୃଷ୍ଟାନ୍ତ ଆମେ ପୁରାଣମାନଙ୍କରୁ ପାଇଥାଉ । ଗୁରୁଗୃହରୁ ଶିଷ୍ୟମାନେ ବିଦାୟ ନେଲାପରେ ମଧ୍ୟ ଆଜୀବନ ଗୁରୁଙ୍କ ପାଖରେ କୃତଜ୍ଞତା ପାଶରେ ଆବଦ୍ଧ ହୋଇ ରହୁଥିଲେ । ଅକୃତ୍ରିମ ଗୁରୁଭକ୍ତି, ପରପାଇଁ ଆତ୍ମୋତ୍ସର୍ଗ, କର୍ତ୍ତବ୍ୟନିଷ୍ଠା ଓ ନିଃସ୍ୱାର୍ଥ ସେବାପରି ଅନେକ ଉଦାହରଣ ଏବଂ ଗୁରୁଶିଷ୍ୟ ମଧ୍ୟରେ ଥିବା ଅନାବିଳ ସଂପର୍କ ପ୍ରାଚୀନ ଭାରତର ଗୁରୁକୁଳ ଶିକ୍ଷାର ଉତ୍କର୍ଷତାର ପ୍ରମାଣ ଦିଏ ।

ଯୁଗ ବଦଳିଛି । ବର୍ତ୍ତମାନ ବିଜ୍ଞାନ, ପ୍ରଯୁକ୍ତିବିଦ୍ୟା ଓ କମ୍ପ୍ୟୁଟର ମଣିଷର ଚିନ୍ତାଚେତନାକୁ ଅନେକ ପରିମାଣରେ ପ୍ରଭାବିତ କରୁଛି । ସେଥିପ୍ରତି ଦୃଷ୍ଟିରଖି ଆମ ବିଦ୍ୟାଳୟମାନଙ୍କରେ ପାଠ୍ୟକ୍ରମ ପ୍ରସ୍ତୁତ କରାଯାଇ ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷାଦାନ କରାଯାଉଛି । ତଥାପି ବର୍ତ୍ତମାନର ଶିକ୍ଷା ପଦ୍ଧତିରେ କେଉଁଠି ନା କେଉଁଠି ଦୋଷଦୁର୍ବଳତା ରହିଗଲା ପରି ଲାଗୁଛି । ପ୍ରାଚୀନ ଭାରତର ସେହି ଗୁରୁଶିଷ୍ୟ ପରମ୍ପରାକୁ ଏବେବି ସାଧାରଣ ଜନତା ମନେ ପକାଇ, କଥା କଥାକେ ଉଦାହରଣ ଦେଉଛନ୍ତି । ସେଥିପାଇଁ ବର୍ତ୍ତମାନ ଶିକ୍ଷାରେ ମୂଲ୍ୟବୋଧ ଓ ଆଦର୍ଶର କେତେକ ଅଭାବ ପରିଲକ୍ଷିତ ହେଉଛି । ତେଣୁ ନୈତିକତା ଓ ମୂଲ୍ୟବୋଧର ଆଦର୍ଶ ଉପରେ ଗୁରୁତ୍ୱ ଦେଇ ଆଜିର ଶିକ୍ଷା ପ୍ରଣାଳୀକୁ ପ୍ରସ୍ତୁତ ନକଲେ ସମାଜରୁ ବିଶୃଙ୍ଖଳା ଦୂର କରିବା କଷ୍ଟକର ହୋଇପଡିବ ।

ବୀଣା ନିଳୟ, ୭/ଏମ୍ -୫୧
ଶୈଳଶ୍ରୀ ବିହାର, ଭୁବନେଶ୍ୱର-୨୧



# ପ୍ରାଚୀନ ଗୁରୁଶିଷ୍ୟ ପରମ୍ପରାର ସାମ୍ପ୍ରତିକ ମୂଲ୍ୟବୋଧ

**ରମାକାନ୍ତ ନାୟକ**

ଗୌରବମୟ ଭାରତୀୟ ସଂସ୍କୃତି ବିଶ୍ୱର ପ୍ରାଚୀନତମ ଓ ଅନନ୍ୟ। କାଳଜୟୀ ବେଦ ଓ ବୈଦିକ ପରମ୍ପରାର ଶକ୍ତିଶାଳୀ ମୂଳଭିତ୍ତି ଏହି ସଂସ୍କୃତିକୁ ଯୁଗଯୁଗ ଧରି ବହୁ ବାଧା ବିପତ୍ତି ସତ୍ତ୍ୱେ ଉଜ୍ଜୀବିତ ରଖିବାରେ ସକ୍ଷମ ହୋଇପାରିଛି। 'ବେଦ' ଶବ୍ଦ ମୂଳ ସଂସ୍କୃତ ଶବ୍ଦ 'ବିଦ'ରୁ ଆନୀତ, ଯାହାର ଅର୍ଥ 'ଜିଜ୍ଞାସା'। ଯେତେବେଳେ ବିଶ୍ୱର ଅନ୍ୟତ୍ର ମନୁଷ୍ୟ ପାର୍ଥିବ ସୁଖ ସମୃଦ୍ଧିର ମାୟା ମରୀଚିକାକୁ ଅନୁଧାବନ କରି ଅଣନିଃଶ୍ୱାସୀ ହୋଇପଡୁଥିଲା, ସେତେବେଳେ ସବୁଜ କାନନ ଘେରା ପଲ୍ଲୀର ଶାନ୍ତ ପରିବେଶରେ କ୍ଷୁଦ୍ର ପର୍ଣ୍ଣ କୁଟୀର ମଧ୍ୟରେ ବେଦଜ୍ଞ ଆର୍ଯ୍ୟମାନେ ଜିଜ୍ଞାସୁ ଶିଷ୍ୟମାନଙ୍କ ଗହଣରେ ବେଦ ଅଧ୍ୟୟନ ପୂର୍ବକ ଆତ୍ମା ମୋକ୍ଷ ଓ ଶାଶ୍ୱତ ପ୍ରଶାନ୍ତିର ମାର୍ଗ ଅନ୍ୱେଷଣରେ ଲିପ୍ତ ଥିଲେ। ଜ୍ଞାନ ଜାଣିବାର ଇଚ୍ଛା ଥିଲା ଜୀବନର ମୂଳମନ୍ତ୍ର। ସହସ୍ର ସହସ୍ର ବର୍ଷ ମଧ୍ୟରେ ସମାଜର ଆବଶ୍ୟକତା ଅନୁଯାୟୀ ଶିକ୍ଷାର ପରିଭାଷା ବଦଳି ଯାଏ, ମାତ୍ର ଗୁରୁଶିଷ୍ୟର ପରମ୍ପରା ଅପରିବର୍ତ୍ତନୀୟ। ସେଥିରେ ବ୍ୟତିକ୍ରମ ଘଟିଲେ ସମାଜ ଓ ସଂସ୍କୃତିର ଅଧୋଗତି ଘଟେ, ଯାହା ସଂପ୍ରତି ଚିନ୍ତାଜନକ।



ବୈଦିକ ଯୁଗରେ ବର୍ଣ୍ଣାଶ୍ରମ ବ୍ୟବସ୍ଥାରେ ଜୀବନର ଆଦ୍ୟ ଚତୁର୍ଥାଂଶ ଗୁରୁ ଆଶ୍ରମରେ ଶିକ୍ଷା ଗ୍ରହଣ କରିବା ପାଇଁ ଉତ୍ସର୍ଗୀକୃତ ହେଉଥିଲା। ମନୁଷ୍ୟ ଏହି ଶିକ୍ଷାର ଦିଗ୍‌ଦର୍ଶନରେ ସମଗ୍ର ଜୀବନ ଅତିବାହିତ କରୁଥିଲା। ଶିକ୍ଷା ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୁଏ ଗୁରୁ ମାଧ୍ୟମରେ। ମନୁ ସ୍ମୃତିରେ ଉଲ୍ଲେଖ ଅଛି, ଯଥା ଖନନ ଖନିତ୍ରେଣ ନରୋ ବାର୍ଯ୍ୟଧିଗଚ୍ଛତି ତଥା ଗୁରୁଗତାଂ ବିଦ୍ୟା ଶୁଶ୍ରୂଷୁରଧି ଗଚ୍ଛତି। ଅର୍ଥାତ୍ ଖଣତିରେ ମାଟି ଖୋଳି ଖୋଳି ମନୁଷ୍ୟ ଜଳର ସନ୍ଧାନ ପାଏ। ସେହିପରି ଶୁଶ୍ରୂଷୁ ଶିଷ୍ୟ ଗୁରୁଙ୍କଠାରେ ଥିବା ବିଦ୍ୟାକୁ ପଚାରି ପଚାରି ଅନୁସନ୍ଧାନ କରି ଜାଣେ। ଜିଜ୍ଞାସୁ ଶିଷ୍ୟର ନିଷ୍କପଟ ଗୁରୁ ଭକ୍ତି, ସେବା ଓ ଶ୍ରଦ୍ଧା ହିଁ ଗୁରୁଙ୍କ ନିମିତ୍ତ ଉପଯୁକ୍ତ ଦକ୍ଷିଣା ଭାବରେ ବୈଦିକ ଯୁଗରେ ଗୃହୀତ ହେଉଥିଲା। ଶ୍ରୀମଦ୍ ଭାଗବତରେ ବ୍ୟାସଦେବ ଅତ୍ୟନ୍ତ ଚତୁରତାର ସହିତ ଅବଧୂତ ଶ୍ରୀ ଦତ୍ତାତ୍ରେୟ ଓ ରାଜା ମନୁଙ୍କ ସମ୍ବାଦ ମାଧ୍ୟମରେ ଗୁରୁଙ୍କ ପ୍ରାଧାନ୍ୟ ଓ ବିଭିନ୍ନତାକୁ ଉପସ୍ଥାପନା କରିଛନ୍ତି। ଦତ୍ତାତ୍ରେୟ ଜୀବନରେ ମହାକାଶ, ପଞ୍ଚଭୂତ, ସମୁଦ୍ରଠାରୁ ଆରମ୍ଭ କରି କ୍ଷୁଦ୍ର ମଧୁମକ୍ଷିକା, କପୋତ, ପିଙ୍ଗଳା ବେଶ୍ୟା ପର୍ଯ୍ୟନ୍ତ ଚବିଶ ଜଣ ଗୁରୁଙ୍କ ଆଶ୍ରୟ ନେଇ ସେମାନଙ୍କଠାରୁ ଆଚରଣ ଶିକ୍ଷା କରିଥିଲେ। ଏଥିରୁ ମନେହୁଏ ଜଣେ ଅନୁସନ୍ଧିତ୍ସୁ ଯେକୌଣସି ପରିସ୍ଥିତିରୁ କିଛି ନା କିଛି ସତ୍‌ଶିକ୍ଷା ଗ୍ରହଣ କରିପାରିବେ। ଜ୍ଞାନରୁ ଉତ୍ସକୁ ଗ୍ରହଣ କରିବା ପାଇଁ ମନୁଷ୍ୟ ମନର ସମସ୍ତ ଦ୍ୱାର ସର୍ବଦା ଉନ୍ମୁକ୍ତ ରଖିବା ଉଚିତ୍। ଚୀନ୍‌ରେ ଏକ ପ୍ରବାଦ ଅଛି, Teachers open the door.

You enter by yourself. ଶ୍ରୀମଦ୍ ଭାଗବତରେ ଭକ୍ତକବି ଜଗନ୍ନାଥ ଦାସ ଉଲ୍ଲେଖ କରିଛନ୍ତି, ଗୁରୁ ନଥାଇ ସଦ୍‌ଜ୍ଞାନ, କାହୁଁ ତୁ ପାଇବୁ ଅର୍ଜୁନ। ପୌରାଣିକ ମତ ଅନୁସାରେ ବ୍ୟାସଦେବ, ଦ୍ରୋଣ, କୃପାଚାର୍ଯ୍ୟ, ଗୌତମ, ଯାମିନି, କପିଳ, ମାର୍କଣ୍ଡେୟ, ପତଞ୍ଜଳି ଏବଂ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ପ୍ରମୁଖ ଗୁରୁ ଭାବରେ ସର୍ବାଗ୍ରେ ପୂଜ୍ୟ। ପରବର୍ତ୍ତୀ କାଳରେ ଚୈତନ୍ୟ, ତୁଳସୀ ଦାସ, କବୀର, ରାମାନୁଜ, ନାନକ, ରାମଦାସ, ମାଧୋଚାର୍ଯ୍ୟ, ବାସବ, ଧ୍ୟାନେଶ୍ୱର, ମଧୁସୂଦନ, ମାଧବ, ନାମଦେବ ନିମ୍ବାର୍କ, ପ୍ରଭାକର, ତୁକାରାମ ଆଦି ଚିରସ୍ମରଣୀୟ ଗୁରୁ ଅଟନ୍ତି। ସନ୍ଥ କବୀର କହୁଥିଲେ ଯଦି ମୋ' ସମ୍ମୁଖରେ ଗୁରୁ ଓ ଈଶ୍ୱର ଆସି ଉପସ୍ଥିତ ହୁଅନ୍ତି, ତେବେ ମୁଁ ପ୍ରଥମେ ଗୁରୁଙ୍କୁ ପ୍ରଣାମ କରିବି କାରଣ ଗୁରୁ ହିଁ ମୋତେ ଈଶ୍ୱରଙ୍କ ପରିଚୟ ପ୍ରଦାନ କରିଛନ୍ତି। ଗୁରୁ ନଥିଲେ ବା ଗୁରୁଦେବଙ୍କ କରୁଣା ନହେଲେ ଈଶ୍ୱର ପ୍ରାପ୍ତି ଅସମ୍ଭବ। ଅଚ୍ୟୁତାନନ୍ଦ ଦାସଙ୍କ ପାଇଁ ଗୁରୁ ଓ ଈଶ୍ୱର ଏକ। ବେଦ, ବେଦାନ୍ତ, ଗୀତା ଓ ଉପନିଷଦର ଭାଷ୍ୟକାର ତଥା ମହାକାବ୍ୟ ମହାଭାରତ, ଅଷ୍ଟାଦଶ ପୁରାଣ ଆଦିର ପ୍ରଣେତା, ସକଳ ଜ୍ଞାନର ଜ୍ଞାତା ଓ ଦାତା ଭାବରେ ମହର୍ଷି ବ୍ୟାସଦେବଙ୍କୁ ଭାରତୀୟ ସଂସ୍କୃତିରେ ଶ୍ରେଷ୍ଠ ଗୁରୁ ଭାବରେ ମାନ୍ୟତା ଦିଆଯାଏ। ବ୍ୟାସୋଚ୍ଛିଷ୍ଟ ଜଗତ ସର୍ବଂ। ଏ ଜଗତରେ ଏପରି ଜ୍ଞାନ ନାହିଁ, ଯାହା ବ୍ୟାସଙ୍କ ଅଗୋଚରରେ ପ୍ରକାଶିତ ହୋଇଛି। ତାଙ୍କର ଜନ୍ମ ତିଥି ଆଷାଢ଼ ମାସ ପୂର୍ଣ୍ଣିମା ଦିବସ ବ୍ୟାସ ପୂର୍ଣ୍ଣିମା ବା ଗୁରୁ ପୂର୍ଣ୍ଣିମା ଭାବରେ ଖ୍ୟାତ। ପ୍ରାଚୀନ କାଳରେ ଏହି ତିଥିରେ ଗୁରୁକୁଳରେ ଶିଷ୍ୟମାନଙ୍କୁ ପରୀକ୍ଷା ନିରୀକ୍ଷା କରାଯାଇ ଶିକ୍ଷା ପ୍ରଦାନ ପାଇଁ ଗ୍ରହଣ କରାଯାଉଥିଲା ଏବଂ ଶିକ୍ଷାରେ ଉପଯୁକ୍ତ ଦକ୍ଷତା ହାସଲ ପରେ ଗୁରୁ ଦକ୍ଷିଣା ଦାନ ପୂର୍ବକ ସମର୍ପଣ ଭାବନା ସହିତ ଏହି ଦିବସରେ ହିଁ ଶିଷ୍ୟମାନେ ବିଦାୟ ଦେଉଥିଲେ। ଏହା ପରେ ଆରମ୍ଭ ହେଉଥିଲା ପ୍ରତ୍ୟେକ ନାଗରିକର ଗାର୍ହ୍ୟସ୍ଥ ଜୀବନ।

ଗୁଂ ରନ୍ଧ୍ୟତେ ଇତି ଗୁରୁଃ। ଅର୍ଥାତ୍ ଯେ ଅନ୍ଧାରକୁ ଦୂର କରେ ସେ ହେଉଛନ୍ତି ଗୁରୁ। ଗୁରୁ ହିଁ ଜୀବନର ପ୍ରଧାନ ମାର୍ଗଦର୍ଶକ ଏବଂ ସୁନିୟନ୍ତ୍ରକ। ଧର୍ମ, ସଂସ୍କୃତି ଓ ଜ୍ଞାନର ବିକାଶ ସହିତ ଏହିସବୁର ସୁରକ୍ଷା ପାଇଁ ଗୁରୁମାନଙ୍କର ଅବଦାନ ଗୁରୁତ୍ୱପୂର୍ଣ୍ଣ। ଗୁରୁମାନଙ୍କଠାରୁ ଶିକ୍ଷା, ଦୀକ୍ଷା ତଥା ତାଙ୍କ ଆଦର୍ଶ ସବୁକିଛି ଶିଷ୍ୟମାନଙ୍କର ଜୀବନରେ ପ୍ରତିଫଳିତ ହୋଇଥାଏ। ଗୁରୁକୃପାରେ ଆତ୍ମ ସ୍ୱାର୍ଥର ସୂଚନା ନଥାଏ। ଗୁରୁବାଣୀ ହେଉଛି ଅମୃତସମ। ଭାରତର ଶାସ୍ତ୍ର, ପୁରାଣ, ଭାଗବତ, ଗୀତା ଆଦି ପବିତ୍ର ଗ୍ରନ୍ଥ ସମୂହ ଦିବ୍ୟଗୁରୁମାନଙ୍କର ଗୁଣ ଓ ଗରିମାରେ ପରିପୂର୍ଣ୍ଣ ହୋଇଛି। ଶିଷ୍ୟମାନେ ମଧ୍ୟ ଗୁରୁଙ୍କଠାରୁ ଜ୍ଞାନଲାଭ କରି ନିଜ ବ୍ୟକ୍ତିତ୍ୱର ବିକାଶ କରିବା ସହିତ ଗୁରୁଙ୍କ ପ୍ରତି ଭକ୍ତି ପ୍ରକଟ କରିଥା'ନ୍ତି। ଗୁରୁଙ୍କ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛନ୍ତି ଆରୁଣୀ, ଉପମନ୍ୟୁ, କୌସ୍ତୁକ ଭଳି ଶିଷ୍ୟମାନେ। ଏକଲବ୍ୟ ଗୁରୁ ଦକ୍ଷିଣା ଦେଇ ସନ୍ତୁଷ୍ଟ କରି ରଖିଯାଇଛନ୍ତି ଏହି ଧରାବକ୍ଷରେ ସର୍ବସ୍ୱ ତ୍ୟାଗର ଅମର କୀର୍ତ୍ତି। ଦ୍ରୋଣଙ୍କ ଭଳି ଗୁରୁ ନିର୍ମାଣ କରିଛନ୍ତି ଅର୍ଜୁନଙ୍କୁ। ସମର୍ଥ ଗୁରୁ ରାମଦାସ ସୃଷ୍ଟି କରିଛନ୍ତି ଶିବାଜୀଙ୍କୁ। ଆଚାର୍ଯ୍ୟ ଚାଣକ୍ୟଙ୍କ ଦିଗ୍‌ଦର୍ଶନ ଯୋଗୁଁ ସଫଳ ହୋଇଛନ୍ତି ଚନ୍ଦ୍ରଗୁପ୍ତ ମୌର୍ଯ୍ୟ, ବିଶ୍ୱାମିତ୍ର ଓ ସନ୍ଦିପନୀଙ୍କ ଭଳି ଗୁରୁ ରାମ ଓ କୃଷ୍ଣଙ୍କ ଭଳି ଶିଷ୍ୟଙ୍କୁ ମାର୍ଗଦର୍ଶନ ଦେବାର କ୍ଷମତା ଓ ମହାନତା ପ୍ରଦର୍ଶନ କରିଛନ୍ତି। ରାମକୃଷ୍ଣଙ୍କ ଭଳି ଗୁରୁ ନଥିଲେ ସ୍ୱାମୀ ବିବେକାନନ୍ଦ ସୃଷ୍ଟି ହୋଇପାରି ନଥା'ନ୍ତେ ଓ ଗୁରୁ ତେଗ୍ ବାହାଦୁର ନଥିଲେ ଗୁରୁ ଗୋବିନ୍ଦ ସିଂହ ଏ ଧରା ପୃଷ୍ଠରେ ଅବତୀର୍ଣ୍ଣ ହୋଇପାରି ନଥା'ନ୍ତେ। ଗୁରୁ ଗ୍ରହଣରେ ଶାନ୍ତି, ଆନନ୍ଦ ଓ ପ୍ରେମ ମିଳେ କିନ୍ତୁ ଅବମାନନା କଲେ ଦୁଃଖ କଷ୍ଟ ଓ ଯାତନା ମିଳେ। ଭାରତୀୟ ଧର୍ମ ସାଧନା ତଥା ସଂସ୍କୃତିରେ ଗୁରୁଙ୍କୁ ସର୍ବଶ୍ରେଷ୍ଠ ମାନ୍ୟତା ଦିଆଯାଇଛି। ଗୁରୁଙ୍କୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ସହିତ ତୁଳନା କରାଯାଇଛି।

ଭାରତର ନୈତିକ ମୂଲ୍ୟବୋଧ ଓ ଅସାଧାରଣ ସାମର୍ଥ୍ୟକୁ ଦେଖି ଇଂରେଜମାନେ ହତବାକ୍ ହୋଇଯାଇଥିଲେ। ଏଠାକାର ପୁରାତନ ଶିକ୍ଷା ପଦ୍ଧତି ଓ ସଂସ୍କୃତିକୁ ପରିବର୍ତ୍ତନ କରିଦେବା ପାଇଁ ମ୍ୟାକେଲଙ୍କ ସୁପାରିଶକ୍ରମେ ଯେଉଁଦିନ ଏକ ନୂତନ ଶିକ୍ଷାନୀତି ପ୍ରଚଳିତ ହେଲା, ସେହିଦିନଠାରୁ ବାସ୍ତବରେ ଇଂରେଜମାନଙ୍କର ଭାରତରେ ବିଜୟ ଘଟିଲା ଏବଂ ଶତାବ୍ଦୀ ଶତାବ୍ଦୀ ଧରି ଆଧିପତ୍ୟ ବିସ୍ତାର କରିବାରେ ସେମାନେ ସମର୍ଥ ହେଲେ। ବିପଥଗାମୀ ସମାଜକୁ ଚେତାଇ ଦେବା ପାଇଁ ଯୋଗୀ ଶ୍ରୀ ଅରବିନ୍ଦ ଚିନ୍ତା ପ୍ରକଟ କରି କହିଥିଲେ, ଭାରତର ବିପର୍ଯ୍ୟୟ, ଦୁର୍ବଳତାର ପ୍ରମୁଖ କାରଣ ହେଉଛି ବିଚାର ଶକ୍ତିର ହ୍ରାସ ଓ ଜ୍ଞାନ ଭୂମିରେ ଅଜ୍ଞାନର ବିସ୍ତାର। ଅର୍ଥ ଉପାର୍ଜନ ନୁହେଁ ବରଂ

ରାଷ୍ଟ୍ରପ୍ରେମୀ ମଣିଷଙ୍କୁ ଗଢ଼ିବା ଓ ସୁସ୍ଥ ସମାଜ ନିର୍ମାଣ କରିବା ଶିକ୍ଷାର ମୂଳଲକ୍ଷ୍ୟ ହେବା ଉଚିତ । ପ୍ରଖ୍ୟାତ ଦାର୍ଶନିକ ପୂର୍ବତନ ରାଷ୍ଟ୍ରପତି ସର୍ବପଲ୍ଲି ରାଧାକ୍ରୀଷ୍ଣନ୍ କହନ୍ତି, "The intellectual pioneers of civilization are to be found and trained in the universities, which are the sanctuaries of the inner life of the Nation." ଏପରିକି ଶିକ୍ଷା ଓ ଶିକ୍ଷକ ସମାଜର ଗୁରୁତ୍ୱକୁ ଉପଲବ୍ଧି କରି ଡ଼ଃ. ରାଧାକ୍ରିଷ୍ଣନ୍‌ଙ୍କ ପବିତ୍ର ଜନ୍ମ ଜୟନ୍ତୀକୁ ଆମ ଦେଶରେ ଗୁରୁ ଦିବସ ଭାବରେ ପାଳନ କରାଯାଏ । ଭାରତରେ ପରାଧୀନତା ଓ ଦୁରାବସ୍ଥା ପାଇଁ ଅଜ୍ଞାନତା ହିଁ କାରଣ ବୋଲି ସ୍ୱାମୀ ବିବେକାନନ୍ଦ ବ୍ୟକ୍ତ କରନ୍ତି । ପୁନଶ୍ଚ ସେ କହନ୍ତି ଶିକ୍ଷାର ଆଦର୍ଶ, ତାଲିମ ଇତ୍ୟାଦି ମନୁଷ୍ୟ ଗଠନ ପାଇଁ ଉଦ୍ଦିଷ୍ଟ । ମନୁଷ୍ୟ ଗଠନ ହେଉଛି ମନୁଷ୍ୟର ଅଫୁରନ୍ତ ପ୍ରାଣସତ୍ତାର ବିକାଶ ମନ ମଧ୍ୟରୁ ଜ୍ଞାନ ଓ ଶକ୍ତି ଉତ୍ପନ୍ନ କରାଇବା ।

ଉତ୍ସର୍ଗୀକୃତ ଯୋଗ୍ୟ ଶିକ୍ଷକମାନେ ଶିକ୍ଷା କ୍ଷେତ୍ରରେ କିପରି ବିପ୍ଳବ ସୃଷ୍ଟି କରିପାରନ୍ତି, ତାହାର ଜ୍ୱଳନ୍ତ ଉଦାହରଣ ଥିଲା ସତ୍ୟବାଦୀର ମଣିଷ ତିଆରି କାରଖାନା ବନ ବିଦ୍ୟାଳୟ । ଏହାର ପ୍ରତିଷ୍ଠା ସମୟରେ ପଣ୍ଡିତ ଗୋପବନ୍ଧୁ ଦାସ ଅନୁଭବ କରିଥିଲେ ଯେ ଏହି ବିଦ୍ୟାଳୟ ପାଇଁ ମୁଖ୍ୟ ଆବଶ୍ୟକତା ହେଉଛି ଶିକ୍ଷକ, ଯେଉଁମାନେ ଆପଣା ସ୍ୱାର୍ଥକୁ ଭୁଲି ସତ୍ୟର ପ୍ରଚାର ପାଇଁ ଅଣ୍ଟା ଭିଡ଼ିବେ – ଦେଶକୁ ଉଦ୍ଧାର କରିବା ଲାଗି ବ୍ରତ କରିବେ । ସେମାନଙ୍କ ଦ୍ୱାରା ଲକ୍ଷ ଲକ୍ଷ କୋଟି କୋଟି ମଣିଷ ଗଢ଼ା ହେବେ । ପ୍ରାଚୀନ ଗୁରୁକୁଳ ଆଶ୍ରମର ଆଦର୍ଶରେ ଯୁଗୋପଯୋଗୀ ଶିକ୍ଷାଦର୍ଶନର ସମିଶ୍ରଣରେ ଏକ ଉନ୍ନତ ଶିକ୍ଷାଦାନ ବ୍ୟବସ୍ଥା ଥିଲା ଗୋପବନ୍ଧୁଙ୍କର ସ୍ୱପ୍ନ । ତାହାର ଛାତ୍ରାବାସ ଥିଲା ଜ୍ଞାନ-ଭକ୍ତି, କର୍ମ ଓ ବିଭୁତିର ସ୍ଥଳ । ଏ ଜାତିର ସାଥୀ, ସାରଥୀ ଗୋପବନ୍ଧୁ, ଜ୍ଞାନ ଧୂରୀଣ – ବାଗ୍ମୀ ନୀଳକଣ୍ଠ, ଦରଦୀ କବି ଗୋଦାବରୀଶ, ଅନୁସନ୍ଧିତ୍ସୁ କୃପାସିନ୍ଧୁ, ଆଚରଣସିଦ୍ଧ ଆଚାର୍ଯ୍ୟ ହରିହର, ନିରବ କର୍ମୀ ଉତ୍ତମ ଚରିତ୍ରବାନ ରାମଚନ୍ଦ୍ର ରଥ ଆଦି ଶିକ୍ଷକ ଥିଲେ ଉଚ୍ଚକୋଟୀର ବ୍ୟକ୍ତିତ୍ୱ । ଚୁମ୍ବକ ଲୁହାକୁ ଆକର୍ଷିତ କରିବା ପରି ପ୍ରୋକ୍ତ ଶିକ୍ଷକମାନଙ୍କର ପ୍ରଚଣ୍ଡ ବ୍ୟକ୍ତିତ୍ୱର ଚୁମ୍ବକ ଛାତ୍ରମାନଙ୍କୁ ଆକର୍ଷିତ କରି ରଖିଥିଲା । ଶିକ୍ଷକମାନଙ୍କ ବ୍ୟକ୍ତିଗତ ଜୀବନାଦର୍ଶର ପ୍ରଭାବରେ ଉତ୍ତମ ମଣିଷ ଗଠନ ସମ୍ଭବପର ହୋଇପାରିଥିଲା । ମହାତ୍ମା ଗାନ୍ଧୀ Young Indiaରେ ଲେଖିଥିଲେ ଏହିଭଳି ନିଷ୍ଠାପର ଶିକ୍ଷକ ଓ ଛାତ୍ର ଯଦି ଦେଶରେ ଉପୁଜନ୍ତେ ତେବେ ବର୍ଷକ ମଧ୍ୟରେ ସ୍ୱରାଜ୍ୟ ଲାଭ କରିବା କିଛି ବିସ୍ମୟର କଥା ନୁହେଁ । ପ୍ରକୃତ ଶିକ୍ଷାର ଭିତ୍ତିଭୂମି ହେଲା ଶିଷ୍ୟର ପରିପୂର୍ଣ୍ଣ ଆତ୍ମ ସମର୍ପଣ । କିନ୍ତୁ ସମ୍ପ୍ରତି ଶିଷ୍ୟମାନେ ଆତ୍ମ ମର୍ଯ୍ୟାଦା ପରିତ୍ୟାଗ କରି ଗୁରୁଙ୍କଠାରେ ଆତ୍ମ ସମର୍ପଣ କରିବା ପ୍ରାୟତଃ ବିରଳ । ପ୍ରଚଳିତ ଶିକ୍ଷା ପଦ୍ଧତିରେ ଏହା ଆଶା କରିବା ବୃଥା । ପଣ୍ଡିତ ନୀଳକଣ୍ଠ ଦାସ ଏକ ବକ୍ତୃତା ଛଳରେ କହିଥିଲେ, ଛାତ୍ରମାନେ, ତୁମ୍ଭେମାନେ ଶିଷ୍ୟ । ଆମ୍ଭେମାନେ ଗୁରୁ । ଛାତ୍ରମାନେ ଗୁରୁଙ୍କଠାରେ ନିର୍ଭୟରେ ଆତ୍ମ ସମର୍ପଣ ନ କଲେ ସେମାନଙ୍କର ଶିକ୍ଷା ମୋଟେ ହେବ ନାହିଁ । ତୁମ୍ଭେମାନେ ବୃଥା ଭୟ ଛାଡ଼ି ଶ୍ରଦ୍ଧା ଓ ଭକ୍ତିରେ ଆମ୍ଭଠାରେ ଆତ୍ମ ସମର୍ପଣ ନ କଲେ ତୁମର ଶିକ୍ଷା ହେବ ନାହିଁ । ଶ୍ରୀ ରାମକୃଷ୍ଣଙ୍କ ଚାରିବର୍ଷ ଜୀବନ କାଳର ଦୈନନ୍ଦିନୀକୁ କଥାମୃତରେ ଲିପିବଦ୍ଧ କରିଥିବା ମହେନ୍ଦ୍ର ନାଥ ଗୁପ୍ତା ନିଜକୁ ରାମକୃଷ୍ଣଙ୍କ ପାଖରେ ଏଭଳି ଭାବରେ ନିଃଶେଷ କରିଦେଇଛନ୍ତି ଯେ ତାଙ୍କ ନାମ ସୁଦ୍ଧା ସେ ତ୍ୟାଗ କରି କେବଳ ସଂକ୍ଷିପ୍ତତମ ଭାବରେ 'ମ' ହିସାବରେ ନିଜର ପରିଚୟ ରଖିଛନ୍ତି । ପୃଥିବୀ ଇତିହାସରେ କଥାମୃତ ଭଳି ଏକ ଜ୍ୟୋତିଷମାନ ଆଧ୍ୟାତ୍ମିକ ଗୁରୁଙ୍କର ଏପରି ଜୀବନଚର୍ଯ୍ୟାର ଚାକ୍ଷୁସ ବିବରଣୀ ଅନ୍ୟତ୍ର ନାହିଁ ।

ଭକ୍ତ ଓ ଭଗବାନ ଯେପରି ପରସ୍ପର ନିମିତ୍ତ ଅମୂଲ୍ୟ ସମ୍ପଦ, ଗୁରୁ ଓ ଶିଷ୍ୟ ମଧ୍ୟରେ ସମ୍ପର୍କ ସେହିପରି । କୁମ୍ଭାର ମାଟି ପିଣ୍ଡୁଳାରୁ ପ୍ରତିମା ଗଢ଼େ । ଗୁରୁ ମଣିଷ ପିଣ୍ଡରୁ ଯଥାର୍ଥ ମାନବ ନିର୍ମାଣ କରେ । ଗୁରୁ ନିଜସ୍ୱ ସର୍ଜନାକୁ ସଂଦର୍ଶନ କରି ବିମୋହିତ ହୁଏ, ଗୌରବାନ୍ୱିତ ହୁଏ । ଥରେ ଦୁର୍ଯ୍ୟୋଧନଙ୍କ ରାଜସଭାରେ ଗୁରୁ ଦ୍ରୋଣାଚାର୍ଯ୍ୟଙ୍କୁ ପ୍ରଶ୍ନ କରାଗଲା, ଆପଣ କେଉଁ ପରିଚୟରେ ମୁଗ୍ଧ ହେବେ ? କାଳ ବିଳମ୍ବ ନକରି ଦ୍ରୋଣାଚାର୍ଯ୍ୟ ଉତ୍ତର ଦେଇଥିଲେ ମୁଁ ଅର୍ଜୁନଙ୍କ ଗୁରୁ – ଏହି ପରିଚୟ ହିଁ ମୋ' ପାଇଁ ଯଥେଷ୍ଟ । ଯଶସ୍ୱୀ ଶିଷ୍ୟମାନଙ୍କୁ ନିର୍ମାଣ କରିଥିବାରୁ ନିଜକୁ ଧନ୍ୟ ମନେକରୁଥିବା ଶିକ୍ଷକମାନଙ୍କ ତାଲିକା ଭାରତ ଇତିହାସରେ ଖୁବ୍ ସୁଦୀର୍ଘ ।

ବୈଦିକ ଯୁଗରେ ଉନ୍ମୁକ୍ତ ଆକାଶ ତଳେ ଶିକ୍ଷାଦାନର ବ୍ୟବସ୍ଥା ଥିଲା, ନଥିଲା ଆଧୁନିକ ବିଶାଳ ପାର୍ଥିବ ଭିତ୍ତିଭୂମି। କିନ୍ତୁ ଜ୍ଞାନ ଆହରଣ ସମସ୍ତଙ୍କ ପାଇଁ ଉନ୍ମୁକ୍ତ ନଥିଲା। ଯେଉଁମାନଙ୍କର ଜ୍ଞାନ ଆହରଣ ପାଇଁ ଆଗ୍ରହ ଓ ଅନୁସନ୍ଧିତ୍ସୁ ଭାବ ପ୍ରକାଶ ପାଉଥିଲା ସେହିମାନଙ୍କୁ ହିଁ କେବଳ ଶିଷ୍ୟ ଭାବରେ ଗ୍ରହଣ କରାଯାଉଥିଲା। ସମ୍ପ୍ରତି ଅପରିମିତ ଅର୍ଥ ବ୍ୟୟ କରି ଉଚ୍ଚ ଶିକ୍ଷା ଓ ଗବେଷଣାକୁ ଯେପରି ପ୍ରୋତ୍ସାହିତ କରାଯାଉଛି, ଏବଂ ଅନାଗ୍ରହୀ ବ୍ୟକ୍ତିଙ୍କୁ ଯେପରି ଯେକୌଣସି ଉପାୟରେ ବିଜ୍ଞ କରିବା ପାଇଁ ଚେଷ୍ଟା କରାଯାଉଛି, ତାହା ସମୀକ୍ଷା କରିବାର ବିଷୟ। ପ୍ରାଚୀନ ବୈଦିକ ଯୁଗର ଶିକ୍ଷା କୌଣସି ଡ଼ିଗ୍ରୀ ହାସଲ କରିବା ପାଇଁ ଉଦ୍ଦିଷ୍ଟ ନଥିଲା। ଜ୍ଞାନ ଆହରଣ ଏକ ଜୀବନବ୍ୟାପୀ ପ୍ରକ୍ରିୟା ଥିଲା ଏବଂ ଏହା କେବଳ ଅନିସନ୍ଧିତ୍ସୁଙ୍କ ପାଇଁ ଉନ୍ମୁକ୍ତ ଥିଲା। ମନୁ ସ୍ମୃତିରେ ଉଲ୍ଲେଖ ଅଛି -

ଯଥା ଯଥା ହି ପୁରୁଷଃ ଶାସ୍ତ୍ରଂ ସମଧି ଗଚ୍ଛତି,
ତଥା ତଥା ବିଜନାତି ବିଜ୍ଞାନଂ ଚାସ୍ୟ ରୋଚତେ

ମଣିଷ ଯେପରି ଶାସ୍ତ୍ର ଅଭ୍ୟାସ କରେ, ଶାସ୍ତ୍ର ତତ୍ତ୍ୱ ସେପରି ବୁଝିବାରେ ଲାଗେ ଓ ଶାସ୍ତ୍ରର ବିଜ୍ଞାନ ତାହାଠାରେ ଉଦ୍‌ଭାସିତ ହୋଇଉଠେ। ସମ୍ପ୍ରତି ଭାରତବର୍ଷରେ ବୈଦିକ ଯୁଗରୁ ପ୍ରଚଳିତ ଗୁରୁ ଶିଷ୍ୟର ପରମ୍ପରା ଏକ ପ୍ରକାର ନିଶ୍ଚିହ୍ନ ହୋଇଯାଇଛି। ବିଜ୍ଞାନ ଯୁଗର ମଣିଷ ପ୍ରତ୍ୟେକ କଥାରେ ନିଜର ସୀମିତ ଜ୍ଞାନ ଓ ବିନା ଅଧିକାରରେ ମଧ୍ୟ କାରଣ ଅନ୍ୱେଷଣରେ ମାତିଛି। ଲାଭ କ୍ଷତିର ହିସାବ ନିକାଶ ମଧ୍ୟରେ ଆଧୁନିକ ଜୀବନଶୈଳୀ ଜୀବନର ମୌଳିକ ଲକ୍ଷ୍ୟକୁ ଦିଗ୍‌ଭ୍ରଷ୍ଟ କରିଦେଇଛି। ଶିକ୍ଷାର ଦର୍ଶନ କହିଲେ ଶିକ୍ଷାର ମୂଲ୍ୟବୋଧକୁ ବୁଝାଏ। ଏହା ବ୍ୟକ୍ତି ପାଇଁ ଜୀବନବ୍ୟାପୀ ସାଧନା। ଶିକ୍ଷା ଓ ଜୀବନ ପରସ୍ପର ଅଙ୍ଗାଅଙ୍ଗୀ ଭାବେ ଜଡ଼ିତ। କିନ୍ତୁ ଆଜିର ଶିକ୍ଷା ବ୍ୟବସ୍ଥାରେ ସେପରି କୌଣସି ଦର୍ଶନ ନାହିଁ। ସ୍ୱାଧୀନ ଭାରତରେ ଶିକ୍ଷା ସଂସ୍କାର ସହିତ ଗୁରୁଶିଷ୍ୟ ପରମ୍ପରାର ପୁନରୁତ୍‌ଥାନ ପାଇଁ ଡ଼ଃ. ଡ଼ି.ଏସ୍. କୋଠାରୀ, ଯଶ୍ପାଲ କମିଟି, ୨୦୦୬ରେ ଜାତୀୟ ଜ୍ଞାନ କମିଶନ୍ ବହୁ ଉପାଦେୟ ପ୍ରସ୍ତାବ ଉପସ୍ଥାପନ କରିଛନ୍ତି। ମାତ୍ର ତାହା ସେପରି ଉଲ୍ଲେଖନୀୟ ସଫଳତା ହାସଲ କରିନାହିଁ । ତଥାପି ଏହି ପବିତ୍ର ଗୁରୁଶିଷ୍ୟ ପରମ୍ପରାର ସଂରକ୍ଷଣ ପାଇଁ ବିଭିନ୍ନ ଶିକ୍ଷାୟତନ ଓ ଗୁରୁକୁଳ ଆଶ୍ରମରେ ଉଦ୍ୟମ ଅବ୍ୟାହତ ରହିଛି।

ଅଧ୍ୟାପକ, ଆନନ୍ଦପୁର ମହାବିଦ୍ୟାଳୟ
ଆନନ୍ଦପୁର, ଜିଲ୍ଲା-କେନ୍ଦୁଝର

# ଆଶ୍ୱିନର ମହୋତ୍ସବେ

**କୁଞ୍ଜ ବିହାରୀ ସାହୁ**

ସୁନିର୍ମଳ ଆକାଶରେ ତୂଳାଭିଣା ମେଘ
ଆବେଗରେ ଭାସୁଥାଏ, ଧୀର ତାର ବେଗ ।
ନଈପଠା, ବିଲପାଟେ ହସେ କାଶତଣ୍ଡୀ
ଚମକାଏ ପ୍ରକୃତିର ଗଭା ମଣ୍ଡିମଣ୍ଡି ।
ବାସ୍ନାୟିତ ଶେଫାଳିର ମୁଚୁକୁନ୍ଦ ହସ
ସମର୍ପଣ ଭାବ ନେଇ କରିଦିଏ ବଶ ।
ସହର କି ପୁର-ପଲ୍ଲୀ,ଜଙ୍ଗଲିଆ ଗାଁ
ସବୁଠାରେ ଉପାସିତ ଦେବୀ ଦୁର୍ଗା ମା' ।
ଭିନ୍ନ ରୂପ, ଏକ ଆତ୍ମା, ଭାବନା ବି ଏକ
ଭକ୍ତି ପ୍ରେମେ ରଖୁଥାଏ ଶ୍ରଦ୍ଧାଳୁର ଟେକ ।



ଶକ୍ତିମୟୀ, ସତ୍ୟଗୁଣୀ, ମାତୃ ସ୍ୱରୂପିଣୀ
ତେଜୋମୟୀ, ସିଦ୍ଧିଦାତ୍ରୀ, ଦୁଃଖ ନିବାରିଣୀ ।
ଆଶ୍ୱିନର ମହୋତ୍ସବେ ଅବତରି ଧରା
ଭାଙ୍ଗୁଥାନ୍ତି ହିଂସା-ଦ୍ୱେଷ, ଅଭିମାନ ପରା ।
ଯୋଡି ହସ୍ତେ ପ୍ରଣମିବା ଶୁଦ୍ଧ-ପୂତ ଭାବେ
ରହୁଥିବେ ମହାମାୟୀ ଆମ ହୃଦ ଠାବେ ।

ପ୍ରକଳ୍ପ ନିର୍ଦ୍ଦେଶକ, ଜଳବିଭାଜିକାଙ୍କ କାର୍ଯ୍ୟାଳୟ
ବରଗଡ- ୭୬୮୦୨୮

# ମହାଭାରତରେ ମହିଷାସୁର ବଧ : ଏକ ପ୍ରଶ୍ନବାଚୀ

**ପଣ୍ଡିତ ଡକ୍ଟର ସୂର୍ଯ୍ୟମଣି ଖୁଣ୍ଟିଆ**

ଭାରତୀୟ ଶାସ୍ତ୍ରପୁରାଣ ହିଁ ଭାରତୀୟ ସଂସ୍କୃତିର ମୂଳାଧାର । ପୂଜାପାର୍ବଣ ଓଷାବ୍ରତ ସବୁ ଆମ ସାଂସ୍କୃତିକ ପରଂପରାର ଆତ୍ମାସ୍ୱରୂପ । ସେହି ପରପ୍ରେକ୍ଷୀରେ ଦୁର୍ଗାପୂଜା ହେଉଛି ଭାରତୀୟ ଶାକ୍ତ ପରଂପରାର ଏକ ଅନବଦ୍ୟ ଉତ୍ସବ । ବିଶେଷକରି ପୂର୍ବ ଭାରତରେ ଏହି ଉତ୍ସବକୁ ଉତ୍ସବମାନଙ୍କର ରାଜା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏ ଦୁର୍ଗାପୂଜା ପୁଣି ଦୁଇଟି ରୂପରେ ଆସେ । ପ୍ରଥମଟି ବାସନ୍ତିକ ଦୁର୍ଗାପୂଜା ଦ୍ୱିତୀୟଟି ଶାରଦୀୟ ଦୁର୍ଗାପୂଜା । ପୁଣି କେତେକ ସ୍ଥାନରେ ସେଇ ଶରତ ଋତୁରେ ବନଦୁର୍ଗା ପୂଜା ମଧ୍ୟ ଅନୁଷ୍ଠିତ ହୁଏ । ଏସବୁ ଦୁର୍ଗାପୂଜା ଉତ୍ସବର ଆରାଧ୍ୟା ଦେବୀ ହେଉଛନ୍ତି ମହିଷାମର୍ଦ୍ଦିନୀ ଦୁର୍ଗା । ଏ ତିନିଗୋଟିଯାକ ଦୁର୍ଗାପୂଜାରେ ମହିଷାମର୍ଦ୍ଦିନୀ ଦଶଭୁଜା ଦୁର୍ଗା ପୂଜା ହୁଅନ୍ତି । ଦଶଭୁଜ ମଧ୍ୟରୁ ଆଠଟି ଭୁଜରେ ବିଭିନ୍ନ ପ୍ରକାର ଅସ୍ତ୍ରଶସ୍ତ୍ର ଥାଏ । ଦୁଇଟି ଭୁଜରେ ମାଆ ଧରି ଥାଆନ୍ତି ଶୂଳ । ଭେଦ କରୁଥାଆନ୍ତି ମହିଷାସୁରର ବକ୍ଷଦେଶକୁ । ମୋଟ ଉପରେ କହିବାକୁ ଗଲେ ମା' ଶକ୍ତିମୟୀ ଦୁର୍ଗା ଯେଉଁ ରୂପରେ ମହିଷାସୁରକୁ ବଧ କରିଥିଲେ ସେହି ରୂପରେ ପୂଜା ପାଆନ୍ତି । କେବଳ ସେତିକି ନୁହେଁ ଦୁର୍ଗା ମନ୍ଦିରମାନଙ୍କରେ ମଧ୍ୟ ମହିଷକୁ ବଧ କରୁଥିବା ରୂପରେ ଦେବୀ ଦୁର୍ଗାଙ୍କର ପୂଜା କରାଯାଏ ।

ଭାରତବର୍ଷରେ ଯେକୌଣସି ଜାଣିବା ଶୁଣିବା ଲୋକକୁ ପଚାରିଲେ ସିଏ କହିବ, ଦୁର୍ଗା ରଣଚଣ୍ଡୀ ବେଶରେ ମହିଷାସୁରକୁ ବଧ କରିଥିଲେ । ଏ କାହାଣୀ ବା ଘଟଣା ପ୍ରଥମେ ଆମ ଆଖି ଆଗକୁ ଆସିଛି ସପ୍ତଶତୀ ଚଣ୍ଡୀରେ । ସପ୍ତଶତୀ ହେଉଛି ମାର୍କଣ୍ଡେୟ ପୁରାଣର ଅଂଶବିଶେଷ, ଯେପରି ଶ୍ରୀମଦ୍ ଭଗବତ୍ ଗୀତା ହେଉଛି ମହାଭାରତ ଭୀଷ୍ମ ପର୍ବର ଅଂଶ ବିଶେଷ । ସପ୍ତଶତୀ ଶାକ୍ତମାନଙ୍କର ଅମୂଲ୍ୟ ସଂପଦ ହୋଇଥିବାବେଳେ ଶ୍ରୀମଦ୍ ଭଗବତ୍ ଗୀତା ବୈଷ୍ଣବମାନଙ୍କର ଗଳାରତ୍ନମାଳା ସଦୃଶ । ଦୁର୍ଗା ସପ୍ତଶତୀର ବର୍ଣ୍ଣନା ଅନୁଯାୟୀ ଋଷି ମେଧା ରାଜା ସୁରଥ ଓ ବୈଶ୍ୟ ସମାଧିଙ୍କ ଆଗରେ ଭଗବତୀଙ୍କର ମହିମା ବର୍ଣ୍ଣନା କରିଛନ୍ତି । ମଧୁକୈଟଭ ବଧ ପ୍ରସଂଗ କହିବା ପରେ ଦ୍ୱିତୀୟ ଅଧ୍ୟାୟରେ ଦେବତାମାନଙ୍କ ତେଜରୁ କିପରି ଦେବୀ ଦୁର୍ଗାଙ୍କର ଆବିର୍ଭାବ ଘଟିଛି, ତା'ର ବର୍ଣ୍ଣନା କରିବା ପରେ ତୃତୀୟ ଅଧ୍ୟାୟରେ ସେନାପତିଙ୍କ ସହିତ ମହିଷାସୁରର ବଧକଥା କହିଛନ୍ତି । ଶ୍ରୀଦୁର୍ଗା ସପ୍ତଶତୀ ଆଧାରରେ ଦେବୀ ଦୁର୍ଗାଙ୍କୁ ମହିଷାମର୍ଦ୍ଦିନୀ ବୋଲି କୁହାଯାଇଛି ଓ ରୂପାୟିତ କରାଯାଇଛି ।

ମାତ୍ର ବେଦବ୍ୟାସ ବିରଚିତ ମୂଳ ମହାଭାରତ ଗ୍ରନ୍ଥରେ ମହିଷାସୁରକୁ ମାରିବା ପାଇଁ ଏକ ସ୍ୱତନ୍ତ୍ର ପରିଯୋଜନାର ଆବଶ୍ୟକ ହୋଇଛି । ବନପର୍ବ ୨୨୩ ଅଧ୍ୟାୟରେ ମାର୍କଣ୍ଡେୟ ମୁନିଙ୍କ ମୁଖରେ ଏ ପ୍ରସଙ୍ଗର ଆରମ୍ଭ ହୋଇ ୨୩୧ ଅଧ୍ୟାୟରେ ମହିଷାସୁର ବଧ ପର୍ଯ୍ୟନ୍ତ କୁହାଯାଇଛି ।

ପ୍ରସଙ୍ଗଟିକୁ ସଂକ୍ଷିପ୍ତ ଭାବରେ ଦୃଷ୍ଟିପାତ କଲେ ଆମ ଆଗକୁ ଘଟଣାକ୍ରମ ଏହିପରି ଭାବରେ ଆସେ । ଦେବତାମାନେ ବାରମ୍ବାର ରାକ୍ଷସମାନଙ୍କଦ୍ୱାରା ଆକ୍ରାନ୍ତ ହୋଇ ଅଣନିଃଶ୍ୱାସୀ ହୋଇପଡ଼ିଛନ୍ତି । ତେଣୁ ଦେବରାଜ ଇନ୍ଦ୍ର ଦେବତାମାନଙ୍କ ପାଇଁ ଏକ ବଳବାନ ସେନାପତିଙ୍କୁ ଅନୁସଂଧାନ କରିଛନ୍ତି । ଏକଦା ମାନସ ପର୍ବତ ତଳେ ଦେବରାଜ ଇନ୍ଦ୍ର ଭ୍ରମଣ କରୁଥିବାବେଳେ ଜଣେ ନାରୀର ଆକୁଳ ଚିତ୍କାର ଶୁଣିଛନ୍ତି । ଦେବତରାଜ

ଦେଖିଛନ୍ତି, ଗୋଟିଏ ଭୟଙ୍କର ରାକ୍ଷସ ଗୋଟିଏ ଯୁବତୀ କନ୍ୟାର କେଶକୁ ଧରି ଝିଙ୍କୁଛି । ତା'ପରେ ବଳାତ୍କାର କରିବାକୁ ଚାହୁଁଛି । ତେଣୁ ଝିଅଟି ବିକଳ ହୋଇ ଚିତ୍କାର କରୁଛି । ଦେବରାଜ ସେ ରାକ୍ଷସ ସହିତ ଭୟଙ୍କର ଯୁଦ୍ଧକରି ତାକୁ ଘଉଡ଼ାଇ ଦେଇଛନ୍ତି । ସେ ରାକ୍ଷସର ନାମ ହେଉଛି କେଶୀ ଏବଂ ସେ ଝିଅଟିର ନାମ ହେଉଛି ଦେବସେନା । ଦେବସେନା ନିଜର ପରିଚୟ ଦେବାକୁ ଯାଇ କହିଛି,

ଅହଂ ପ୍ରଜାପତେଃ କନ୍ୟା ଦେବସେନେତି ବିଶ୍ରୁତା<br>
ଭଗିନୀ ଦୈତ୍ୟସେନାମେ ସା ପୂର୍ବଂ କେଶିନା ହୃତା ॥

ବନ–୨୨୪/୧

ଅର୍ଥାତ୍ – ହେ ଦେବେନ୍ଦ୍ର ! ମୁଁ ପ୍ରଜାପତିଙ୍କର କନ୍ୟା, ମୋର ନାମ ଦେବସେନା । ମୋ ଭଉଣୀର ନାମ ଦୈତ୍ୟସେନା । ରାକ୍ଷସ କେଶୀ ପୂର୍ବରୁ ଦୈତ୍ୟସେନାକୁ ହରଣ କରିନେଇଛି ।

ଦେବସେନା ସେ ହରଣ ବୃତ୍ତାନ୍ତ କହିବାକୁ ଯାଇ କହିଛି, ହେ ଦେବରାଜ ! ମୁଁ ଏବଂ ମୋର ଭଉଣୀ ଦୈତ୍ୟସେନା ପ୍ରତିଦିନ ସଖୀମାନଙ୍କ ସହିତ ଏଠାକୁ ଆସୁ । ଦୁଷ୍ଟଦୈତ୍ୟ କେଶୀ ସବୁବେଳେ ଆସି ଆମକୁ ଫୁସୁଲାଫୁସୁଲି କରେ । ଦୈତ୍ୟସେନା ତା' ପ୍ରେମରେ ପଡ଼ିଗଲା । ତେଣୁ କେଶୀ ତାକୁ ଅପହରଣ କରିନେଇଛି । ଏବେ କେଶୀ ମୋତେ ପାଇବା ପାଇଁ ଚେଷ୍ଟା କରୁଛି । ଆଜି ସେ ମୋ ଉପରେ ଆକ୍ରମଣ କରିଥିଲା । ଆପଣଙ୍କ ଦୟାରୁ ମୁଁ ବଂଚିଯାଇଛି । ମୁଁ ଜଣେ ଦୁର୍ଜୟ ବୀରଙ୍କୁ ପତିରୂପରେ ପାଇବାକୁ ଚାହୁଁଛି ।

ତ୍ୱୟା ଦେବେନ୍ଦ୍ର ନିର୍ଦ୍ଦିଷ୍ଟଂ ପତିମିଚ୍ଛାମି ଦୁର୍ଜୟମ୍ ॥

୨୨୪/୪(୧/୨)

ଦେବରାଜ ଇନ୍ଦ୍ର କହିଛନ୍ତି ଯେ ଦେବସେନା ତାଙ୍କର ମାଉସୀ ଝିଅ ଭଉଣୀ । ଇନ୍ଦ୍ରଙ୍କର ମାଉସୀ ଦକ୍ଷକନ୍ୟା ହେଉଛନ୍ତି ପ୍ରଜାପତିଙ୍କର ସ୍ତ୍ରୀ । ଏବେ ଦେବସେନା କହିଛି ତା'ର ମନର କଥା ।

ଅବଳାହଂ ମହାବାହୋ ପତିସ୍ତୁ ବଳବାନ୍ ମମ<br>
ବରଦାନାତ୍ ପିତୁର୍ଭାବୀ ସୁରାସୁର ନମସ୍କୃତଃ ॥ ୨୨୪/୬

ହେ ମହାବାହୋ ! ମୁଁ ତ ଅବଳା । କିନ୍ତୁ ମୋ ପିତାଙ୍କର ଆଶୀର୍ବାଦରେ ମୋ ଭାବୀସ୍ୱାମୀ ବଳବାନ୍ ତଥା ଦେବଦାନବ ବନ୍ଦିତ ହେବେ । ଇନ୍ଦ୍ରଙ୍କର କୌତୂହଳ ବୃଦ୍ଧି ପାଇଛି । ସେ ଜାଣିବାକୁ ଚାହିଁଛନ୍ତି ଦେବସେନା କିପରି ବର ଚାହେଁ ।

ଦେବସେନା କିପରି ବର ଚାହେଁ ସେ କଥା କହିବାକୁ ଯାଇ ଯାହା କହିଛି, ତାହା ନିମ୍ନୋକ୍ତ ଦୁଇଟି ଶ୍ଳୋକରୁ ମିଳେ ।

ଦେବଦାନବଯକ୍ଷାଣାଂ କିନ୍ନରୋରଗରକ୍ଷସାମ୍ ।<br>
ଜେତା ଯୋ ଦୃଷ୍ଟ ଦୈତ୍ୟାନାଂ ମହାବୀର୍ଯ୍ୟୋମହାବଳଃ ॥

ବନ/୨୨୪/୮

ଯସ୍ତୁ ସର୍ବାଣି ଭୂତାନି ତ୍ୱୟାସହ ବିଜେଷ୍ୟତି ।<br>
ସହି ମେ ଭବିତାଭର୍ତ୍ତା ବ୍ରହ୍ମଣ୍ୟ କୀର୍ତ୍ତିବର୍ଦ୍ଧନଃ ॥

ବନ/୨୨୪/୯

ଦେବସେନା କହୁଛି, ଦେବରାଜ ! ଯିଏ ଦେବତା, ଦାନବ, ଯକ୍ଷ, କିନ୍ନର, ନାଗ, ରାକ୍ଷସ ତଥା ଦୈତ୍ୟମାନଙ୍କୁ ଜୟ କରିପାରିବ, ଯାହାର ପରାକ୍ରମ ମହାନ୍ ଓ ବଳ ଅସାଧାରଣ ହୋଇଥିବ ତଥା ଯିଏ ତମ (ଦେବରାଜଙ୍କ) ସହିତ ରହି ପ୍ରାଣୀମାନଙ୍କ ଉପରେ ବିଜୟ ହାଲସ କରିପାରିବ, ନିଜର ଯଶକୁ ବୃଦ୍ଧି କରିପାରିବ, ସେହି ପୁରୁଷ ମୋର ପତି ହେବ ।

ଇନ୍ଦ୍ର ଚିନ୍ତା କରିଛନ୍ତି ଦେବସେନାର ମନୋବାଂଛିତ ପତି ମିଳିବା କଷ୍ଟକର ବ୍ୟାପାର । ତେଣୁ ସେ ଦେବସେନାଙ୍କୁ ବ୍ରହ୍ମାଙ୍କ ନିକଟରେ ରଖିଛନ୍ତି ସୁରକ୍ଷା ପାଇଁ । ନିଜେ ଦେବାସୁର ସଂଗ୍ରାମକୁ ଚାଲିଯାଇଛନ୍ତି ।

ଏହି ଘଟଣାକ୍ରମ କେବଳ ଉପକ୍ରମ ମାତ୍ର । ଏହି ପ୍ରସଙ୍ଗକୁ ଆଗକୁ ନେଇଛନ୍ତି ମହାଭାରତକାର କାର୍ତ୍ତିକେୟ ବା ସ୍କନ୍ଦଙ୍କର ଜନ୍ମକାହାଣୀ କହି । ସ୍କନ୍ଦଙ୍କର ଜନ୍ମ କାହାଣୀ ବଡ଼ ବିଚିତ୍ର ଢଂଗରେ କହିଛନ୍ତି ମହାଭାରତକାର । କାହାଣୀ ଏହିପରି, ସପ୍ତର୍ଷି ଏବଂ ଅନ୍ୟାନ୍ୟ ଋଷିମାନେ ଯଜ୍ଞକରି ଦେବତାମାନଙ୍କୁ ହବନୀୟ ପଦାର୍ଥ ଦାନ କରିଛନ୍ତି । ସେହି ଅବସରରେ –

ସମାହୂତୋ ହୁତବହଃ ସୋଦ୍ଭୁତଃ ସୂର୍ଯ୍ୟମଣ୍ଡଳାତ୍ ।

୨୨୪/୨୮

ମନ୍ତ୍ରଦ୍ୱାରା ଆହୂତ ହୋଇ 'ଅଦ୍‌ଭୁତ' ନାମ ଅଗ୍ନି ସୂର୍ଯ୍ୟମଣ୍ଡଳରୁ ବାହାରି ମୌନଭାବରେ ସେ ଯଜ୍ଞକୁଣ୍ଡ ପାଖକୁ ଆସିଛନ୍ତି । ବ୍ରହ୍ମର୍ଷିମାନଙ୍କଦ୍ୱାରା ପବିତ୍ର ମନ୍ତ୍ରୋଚ୍ଚାରଣ ସହିତ ଯେଉଁ ହବନୀୟ ବସ୍ତୁ ଅର୍ପଣ କରାଯାଇଛି, ତାହାସବୁ ସେହି ଅଦ୍ଭୁତ ନାମକ ଅଗ୍ନିଙ୍କ ଦ୍ୱାରା ଗ୍ରହଣ କରାଯାଇଛି ଏବଂ ଦେବତାମାନଙ୍କ ସେବାରେ ସମର୍ପଣ କରାଯାଇଛି ।

ଏହି ଅଦ୍ଭୁତ ନାମକ ଅଗ୍ନି ଯଜ୍ଞଶାଳାରୁ ବିଦାୟ ନେଲାବେଳେ ସପ୍ତର୍ଷିଙ୍କର ସୁନ୍ଦରୀ ସ୍ତ୍ରୀମାନଙ୍କୁ ଦେଖିଛନ୍ତି । ସେତେବେଳକୁ ସେମାନଙ୍କ ମଧ୍ୟରୁ କେତେଜଣ ବସିଛନ୍ତି ଆଉ କେତେଜଣ ଶୋଇ ପଡ଼ିଛନ୍ତି । ଅଗ୍ନିଙ୍କ ଭିତରେ ଋଷିପତ୍ନୀମାନଙ୍କ ପ୍ରତି ମାନସିକ ବିକାର ଜନ୍ମିଛି । କିନ୍ତୁ ଏହା ଅଧର୍ମ ଏବଂ ଅନ୍ୟାୟ ବୋଲି ବିଚାର କରି ଚାଲିଯାଇଛନ୍ତି । ଏହି ରହସ୍ୟଟିକୁ ଜାଣିପାରିଛନ୍ତି ଅଗ୍ନି–ପ୍ରେୟସୀ ସ୍ୱାହା । ସେତେବେଳକୁ ସ୍ୱାହା ଅନେକ ଚେଷ୍ଟା କରି ମଧ୍ୟ ଅଗ୍ନିଙ୍କ ସହିତ ମିଳିତ ହୋଇ ପାରିନାହାନ୍ତି । ତେଣୁ ଗୋଟିଏ ବୁଦ୍ଧି ପାଂଚିଛନ୍ତି । ଋଷିପତ୍ନୀମାନଙ୍କୁ ଦେଖି ବିକାରଗ୍ରସ୍ତ ହୋଇଥିବା ଅଦ୍ଭୁତ ଅଗ୍ନିଙ୍କ ମାନସିକତାକୁ ଜାଣି ଋଷିପତ୍ନୀମାନଙ୍କ ରୂପଧାରଣ କରି ଅଗ୍ନିଙ୍କ ନିକଟକୁ ଯିବାକୁ ସ୍ଥିର କରିଛନ୍ତି । ତେଣୁ ସେ ପ୍ରଥମେ ଅଂଗିରାଙ୍କର ସ୍ତ୍ରୀ ଶିବାରୂପ ଧାରଣ କରି ଅଗ୍ନିଙ୍କ ନିକଟରେ ପହଂଚିଛନ୍ତି । ସ୍ୱାହା କହିଛନ୍ତି, ଅଗ୍ନି ! ମୁଁ କାମବେଦନାରେ ସନ୍ତପ୍ତ, ତୁମେ ମୋତେ ନିଜ ହୃଦୟରେ ସ୍ଥାନ ଦିଅ । ଯଦି ତାହା କରି ନପାରିବ ତେବେ ତୁମେ ଜାଣ ଯେ ମୁଁ ମୋର ପ୍ରାଣତ୍ୟାଗ କରିବି । ହେ ହୁତାଶନ ! ମୁଁ ହେଉଛି ଅଂଗିରାଙ୍କର ସ୍ତ୍ରୀ ଶିବା । ଅନ୍ୟ ଋଷିପତ୍ନୀମାନଙ୍କ ସହିତ ପରାମର୍ଶ କରିବାପରେ ମୁଁ ଏଠାକୁ ଆସିଛି । ଅଗ୍ନି ଆଶ୍ଚର୍ଯ୍ୟ ହୋଇଛନ୍ତି, ଋଷିପତ୍ନୀମାନେ କିପରି ତାଙ୍କ ମନକଥା ଜାଣିଲେ ବୋଲି ତାଙ୍କ ମନରେ ପ୍ରଶ୍ନବାଚୀ ସୃଷ୍ଟି ହୋଇଛି । ଅଗ୍ନି ପଚାରିଛନ୍ତି,

କଥଂ ମାଂ ତ୍ୱଂ ବିଜାନୀଷେ କାମାର୍ତମିତରାଃ କଥମ୍ ।
ଯା ତ୍ୱୟା କୀର୍ତ୍ତିତା ସର୍ବାଃ ସପ୍ତର୍ଷୀଣାଂ ପ୍ରିୟାଃ ସ୍ତ୍ରିୟଃ ॥

ବନ/୨୨୫/୪

ଦେବି ! ତୁମେ ତଥା ଅନ୍ୟ ସପ୍ତର୍ଷିଙ୍କର ପତ୍ନୀମାନେ ଯେଉଁମାନଙ୍କ ବିଷୟରେ ତୁମେ ଏତିକି କଥା କହିଲ, କିପରି ସମସ୍ତେ ଜାଣିଲେ ଯେ ମୁଁ ତୁମପାଇଁ କାମ ଭାବରେ ପୀଡ଼ିତ ହୋଇଛି ।

ଉତ୍ତରରେ ଶିବା ରୂପିଣୀ ସ୍ୱାହା ଯାହା କହିଛନ୍ତି, ତାହା ତାଙ୍କର ମିଥ୍ୟା ଭାଷଣ । ଶିବା ରୂପରେ ସ୍ୱାହା କହିଛନ୍ତି,

ହେ ଅଗ୍ନିଦେବ ! ତୁମ୍ଭେ ଆମ୍ଭମାନଙ୍କର ସବୁବେଳେ ପ୍ରିୟ, କିନ୍ତୁ ଆମେ ସବୁବେଳେ ତୁମକୁ ଭୟ କରି ଆସିଛୁ । ଏବେ ତମ ମନର ଭାବନାକୁ ଜାଣିପାରି ମୋ ସଖୀମାନେ ମୋତେ ତୁମ ନିକଟକୁ ପଠାଇଛନ୍ତି । ତୁମେ ଆପଣାଛାଏଁ ମିଳୁଥିବା କାମସୁଖକୁ ଉପଭୋଗ କର । ହେ ହୁତାଶନ ! ମୋର ଭଗ୍ନୀ ସ୍ୱରୂପ ସଖୀମାନେ ମୋର ବାଟକୁ ଚାହିଁ ବସିଛନ୍ତି । ଏଣୁ ମୁଁ ଶୀଘ୍ର ଏଠାରୁ ଚାଲିଯିବି । ନିଜର କାମନାର ପରିତୃପ୍ତି ପାଇଁ ସ୍ୱାହା ଋଷିପତ୍ନୀମାନଙ୍କ ଦେହରେ କଳଂକ ବୋଳି ଦେଇଛନ୍ତି । ଅଗ୍ନିଦେବ ଶିବା ରୂପିଣୀ ସ୍ୱାହାଙ୍କ ସହିତ ସହବାସ କରିଛନ୍ତି । ପୁଣି ସ୍ୱାହା କହିଛନ୍ତି, ଅଗ୍ନିଦେବ ! ଯିଏ ମୋର ଏ ରୂପକୁ ଦେଖିବ, ସେ ଋଷିପତ୍ନୀଙ୍କୁ କଳଂକିନୀ ବୋଲି କହିବ । ତେଣୁ ମୁଁ ଗରୁଡ଼ ପକ୍ଷିଣୀ ରୂପ ଧାରଣ କରି ଏ ବଣରୁ ବାହାରିଯିବି । ଏତିକିକହି ସ୍ୱାହା ଅଗ୍ନିଦେବଙ୍କର ଅମୋକ୍ଷ ବୀର୍ଯ୍ୟକୁ ଧାରଣ କରି ପହଂଚିଛନ୍ତି ସରକଣ୍ଡ ବଣ ଆଚ୍ଛାଦିତ ଶ୍ୱେତପର୍ବତ ଶିଖରରେ । ବିଚିତ୍ର ସେ ପର୍ବତର ସ୍ଥିତି ।

ସା ତତ୍ର ସହସାଗତ୍ୱା ଶୈଳପୃଷ୍ଠଂ ସୁଦୁର୍ଗମମ୍ ।
ପ୍ରାକ୍ଷିପତ୍ କାଂଚନେକୁଣ୍ଡେ ଶୁକ୍ରଂ ସା ତ୍ୱରିତା ଶୁଭା ॥

ବନ/୨୨୫/୧୨

ସେହି ପର୍ବତର ଶିଖରରେ ଏକ ସୁବର୍ଣ୍ଣକୁଣ୍ଡରେ ସ୍ୱାହା ଅଗ୍ନିଙ୍କର ଅମୋଘ ବୀର୍ଯ୍ୟକୁ ଢାଳି ଦେଇଛନ୍ତି । ଦେବୀ ସ୍ୱାହା ଇଚ୍ଛା କରିଥିଲେ ସାତଋଷିଙ୍କର ସ୍ତ୍ରୀଙ୍କର ରୂପ ଧାରଣ କରି ଅଗ୍ନିଙ୍କ ସହିତ ସହବାସ କରିବେ । କିନ୍ତୁ ପତିବ୍ରତା ଅରୁନ୍ଧତୀ ସ୍ୱାମୀ ସେବାରେ ନିୟୋଜିତ ଥିବାରୁ ତାଙ୍କର ରୂପକୁ ଧାରଣ କରି ପାରିନାହାଁନ୍ତି । ଛଅଜଣ ଋଷିପତ୍ନୀଙ୍କର ରୂପ ଧାରଣ କରି ସ୍ୱାହା ବାରଂବାର ଅଗ୍ନିଙ୍କ ସହିତ ସହବାସ କରିଛନ୍ତି ଓ ଛଅଥର ଗରୁଡ଼ପକ୍ଷିଣୀ ରୂପରେ ଅଗ୍ନିଙ୍କର ଅମୋଘ ବୀର୍ଯ୍ୟକୁ ଶ୍ୱେତପର୍ବତ ସ୍ଥିତ ସ୍ୱର୍ଣ୍ଣ କୁଣ୍ଡରେ ତ୍ୟାଗ କରିଛନ୍ତି । ତହିଁରୁ ଗୋଟିଏ ଅତ୍ୟନ୍ତ ବଳବାନ ପୁତ୍ର ଜନ୍ମଲାଭ କରିଛି । ସେହିକଥା କହିବା ପାଇଁ

ମହାଭାରତକାର ଦୁଇଗୋଟି ଚମତ୍କାର ଶ୍ଳୋକର ଉଲ୍ଲେଖ କରିଛନ୍ତି । ଯଥା -

ତସ୍ମିନ୍‌କୁଣ୍ଡେ ପ୍ରତିପଦି କାମିନ୍ୟା ସ୍ୱାହାୟା ତଦା
ତତ୍‌ସ୍କନ୍ନଂ ତେଜସା ତତ୍ର ସବୃତଂ ଜନୟତ୍‌ସୁତମ୍
ଋଷିଭିଃ ପୂଜିତଂ ସ୍କନ୍ନମନୟତ୍ ସନ୍ଦତାଂ ତତଃ
ଷଟ୍‌ଶିରା ଦ୍ୱିଗୁଣେ ଶୋତ୍ରୋ ଦ୍ୱାଦଶାକ୍ଷିଭୁଜ କ୍ରମଃ ॥
ବନ/୨୨୫/୧୬/୧୭

ଟୀକାକାର ଏ ଶ୍ଳୋକ ଦୁଇଟିର ଟୀକା ଏହିପରି ଭାବରେ କରିଛନ୍ତି । ଯଥା- ଅଗ୍ନିଦେବଙ୍କଠାରେ କାମନା ରଖିଥିବା ସ୍ୱାହା ପ୍ରତିପଦ ତିଥିରେ ସେହି କୁଣ୍ଡରେ ତାଙ୍କର ବୀର୍ଯ୍ୟକୁ ନିକ୍ଷେପ କରିଥିଲେ । ସ୍କନ୍ଦିତ ବା ସ୍ଖଳିତ ହୋଇଥିବା ସେହି ବୀର୍ଯ୍ୟରୁ ଗୋଟିଏ ତେଜସ୍ୱୀପୁତ୍ର ଜନ୍ମଲାଭ କଲା । ଋଷିମାନେ ସେ ପୁତ୍ରକୁ ବଡ଼ ସମ୍ମାନ କଲେ । ସେ ସ୍କନ୍ଦିତ ହୋଇଥିବାରୁ ତାଙ୍କର ନାମ ହେଲା ସ୍କନ୍ଦ । ତା'ର ଥିଲା ଛଅଗୋଟି ଶିର, ବାରଟି କାନ, ବାରଗୋଟି ଆଖି ଓ ବାରଗୋଟି ହାତ । କିନ୍ତୁ ସେହି କୁମାରଙ୍କର ଥିଲା ଗୋଟିଏ ପେଟ, ଗୋଟିଏ କଣ୍ଠଦେଶ ।

ଏହିପରି ଭାବରେ ଯେଉଁ କୁମାର ଜାତ ହୋଇଛନ୍ତି ତାଙ୍କର ପରିଚୟ ହୋଇଛି କୁମାର, ସ୍କନ୍ଦ ଏବଂ କାର୍ତ୍ତିକେୟ । ଚତୁର୍ଥୀ ତିଥି ବେଳକୁ ଶ୍ରୀସ୍କନ୍ଦ ବା କାର୍ତ୍ତିକେୟ ସ୍ୱୟଂ ସଂପୂର୍ଣ୍ଣ ମହାବଳବାନ୍ ବୀର ହୋଇ ଉଭା ହୋଇଛନ୍ତି ଓ ତ୍ରିପୁରାରି ଶିବଙ୍କ ସୁରକ୍ଷିତ ବିଶାଳ ଧନୁକୁ ଧରି ଭୟଙ୍କର ଚିତ୍କାର କରିଛନ୍ତି । ତାଙ୍କର ଗର୍ଜନରେ ପ୍ରାଣୀ ଜଗତ ଭୟଭୀତ ହୋଇ ପଡ଼ିଛି । ତାଙ୍କର ଗର୍ଜନ ଶୁଣି ଚିତ୍ର ଏବଂ ଐରାବତ ନାମକ ଦୁଇହାତୀ ତାଙ୍କ ପାଖକୁ ଦୌଡ଼ି ଆସିଛନ୍ତି । ସ୍କନ୍ଦ ଖେଳନା ପରି ଦୁଇହାତୀଙ୍କୁ ଉଠାଇ ଆଣିଛନ୍ତି ନିଜ ହାତରେ, ପୁଣି ଆଖି ପଡ଼ିଛି ଗୋଟାଏ କୁକୁଡ଼ା ଉପରେ । ତାକୁ ମଧ୍ୟ ଗୋଟିଏ ହାତରେ ଉଠାଇ ଆଣି ଖେଳିଛନ୍ତି । ଆଉ ଗୋଟିଏ ହାତରେ ଶଂଖଧରି ଫୁଙ୍କିବାକୁ ଲାଗିଛନ୍ତି । କାର୍ତ୍ତିକେୟଙ୍କ ଶକ୍ତିର ଆଘାତରେ କ୍ରୌଞ୍ଚପର୍ବତ ଓ ଶ୍ୱେତ ପର୍ବତ ବିଦୀର୍ଣ୍ଣ ହୋଇ ଚିତ୍କାର କରିଛନ୍ତି । ଋଷି ବିଶ୍ୱାମିତ୍ର କାର୍ତ୍ତିକେୟଙ୍କର ତେର ପ୍ରକାର ଜାତ ସଂସ୍କାର କରିଛନ୍ତି, ସେ ଜାଣିଛନ୍ତି ଏହି ବୀରପୁଙ୍ଗବ ଦେବ ସେନାପତି । ଅନ୍ୟପକ୍ଷରେ ଦେବତାମାନେ ଇନ୍ଦ୍ରଙ୍କୁ ଅନୁରୋଧ କରିଛନ୍ତି :

ଅବିଷହ୍ୟ ବଳଂ ସ୍କନ୍ଦଂ ଜହି ଶକ୍ରାଶୁମାଚିରମ୍
ଯଦିବା ନ ନିହଂସ୍ୟେନଂ ଦେବେନ୍ଦ୍ରୋଦ୍ଧୟଂଭବିଷ୍ୟତି
ତ୍ରୈଲୋକ୍ୟଂ ସଂନିଗୃହ୍ୟାସ୍ମାଂସ୍ତ୍ୱାଂଚ ଶକ୍ରମହାବଳ ॥
୨୨୬/୧୮,୧୯(୧/୨)

ଦେବେଶ୍ୱର, ସ୍କନ୍ଦଙ୍କର ବଳ ଅସହ୍ୟ । ଶୀଘ୍ର ତାକୁ ମାରି ପକାନ୍ତୁ । ବିଳମ୍ବ କରନ୍ତୁ ନାହିଁ । ହେ ମହାବଳୀ ଇନ୍ଦ୍ର ! ଯଦି ଆପଣ ତାକୁ ମାରି ନଦିଅନ୍ତି, ତେବେ ସେ ତ୍ରିଲୋକର ସମସ୍ତଙ୍କୁ ତଥା ଆପଣଙ୍କୁ ବଶକରି ଇନ୍ଦ୍ରାସନରେ ଦେବେନ୍ଦ୍ର ହୋଇ ବସିବ ।

ଇନ୍ଦ୍ର ନିଜର ଅକ୍ଷମତା ପ୍ରକାଶ କରିଛନ୍ତି, ଲୋକସ୍ରଷ୍ଟା ମଧ୍ୟ ଏ ବଳବାନ୍ ସ୍କନ୍ଦକୁ ପାରିବେ ନାହିଁ । ମୁଁ ବା କିପରି ତା' ସହିତ ଯୁଦ୍ଧକରି ତାକୁ ମାରିପାରିବି ? ସମସ୍ତେ ମିଶି ଲୋକମାତୃକାମାନଙ୍କୁ ସ୍କନ୍ଦଙ୍କ ନିକଟକୁ ପଠାଇଛନ୍ତି । ସମସ୍ତଙ୍କର ଭାବନା ନିଶ୍ଚୟ ଲୋକମାତୃକାମାନେ ସ୍କନ୍ଦଙ୍କୁ ହତ୍ୟା କରିଦେବେ । ଲୋକମାତାମାନେ ସ୍କନ୍ଦଙ୍କ ନିକଟକୁ ଯାଇ ତାଙ୍କୁ ଦେଖିବା କ୍ଷଣି ହୃଦ୍‌ବୋଧ କରିଛନ୍ତି ଯେ ସେମାନେ କଦାପି ସ୍କନ୍ଦଙ୍କୁ ପରାସ୍ତ କରିପାରିବେ ନାହିଁ । ତେଣୁ ସେମାନେ ସ୍କନ୍ଦକୁ ନିବେଦନ କରି କହିଛନ୍ତି,

ହେ ମହାବଳୀ କୁମାର ! ତୁମେ ଆମ୍ଭମାନଙ୍କର ପୁତ୍ର ହୋଇଯାଅ । ଆମ୍ଭମାନଙ୍କୁ ମାତା ଭାବରେ ଗ୍ରହଣ କର ।

ଅଭିନନ୍ଦସ୍ୱ ନଃ ସର୍ବାଃ ପ୍ରସ୍ନୁତାଃ ସ୍ନେହବିକ୍ଳବାଃ ।
ତାସାଂ ତଦ୍ ବଚନଂ ଶ୍ରୁତ୍ୱା ପାତୁକାମଃ ସ୍ତନାତ୍ ପ୍ରଭୁଃ ॥
ବନା/୨୨୬/୨୪

ଦେଖ, ଆମେ ସବୁ ପୁତ୍ର ସ୍ନେହରେ ବ୍ୟାକୁଳ ହେଉଛୁଁ । ଆମ୍ଭମାନଙ୍କର ସ୍ତନରୁ କ୍ଷୀର ଝରୁଛି, ଏହାକୁ ପାନକରି ଆମ ସମସ୍ତଙ୍କୁ ସମ୍ମାନିତ କର ଏବଂ ଆନନ୍ଦିତ କର ।

ମାତୃକାମାନଙ୍କର କଥାଶୁଣି ସ୍କନ୍ଦ ସେମାନଙ୍କର ମନୋବାଂଛା ପୂର୍ଣ୍ଣ କରିଛନ୍ତି ଏବଂ ସେମାନଙ୍କ ସ୍ତନରୁ କ୍ଷୀର ପାନକରି ଅଧିକ ବଳବାନ୍ ହୋଇ ଉଠିଛନ୍ତି ।

ସ୍କନ୍ଦଙ୍କର ପିତା ଅଗ୍ନିଦେବ ତାଙ୍କ ନିକଟକୁ ଆସିଛନ୍ତି । ଏଣେ ମାତୃଗଣ ଗୋଟିଏ ଶକ୍ତିମୟୀ ରୂପଧାରଣ କରିଛନ୍ତି ।





ହାତରେ ତ୍ରିଶୂଳଧରି ସ୍କନ୍ଦଙ୍କ ଚାରିପଟେ ସୁରକ୍ଷା ବଳୟ ସୃଷ୍ଟି କରିଛନ୍ତି । ତା'ପରେ ସ୍କନ୍ଦଙ୍କର ଅଗଣିତ ପାର୍ଷଦ ସୃଷ୍ଟି ହୋଇଛନ୍ତି ।

ଦେବରାଜ ଇନ୍ଦ୍ର ସ୍କନ୍ଦଙ୍କର ବୀରତ୍ୱ ଦେଖି ତାଙ୍କ ସହିତ ଶତ୍ରୁତା ନ କରି ଅନ୍ୟ ଦେବତାମାନଙ୍କର ପରାମର୍ଶକ୍ରମେ ତାଙ୍କୁ ଇନ୍ଦ୍ରତ୍ୱ ଗ୍ରହଣ କରିବା ପାଇଁ ଅନୁରୋଧ କରିଛନ୍ତି । ଇନ୍ଦ୍ର କହିଛନ୍ତି,

ଭବସ୍ୱେନ୍ଦ୍ରୋ ମହାବାହୋ ସର୍ବେଷାଂ ନଃ ସୁଖାବହଃ ।

ବନ/୨୨୯/୧୩(୧/୨)

ହେ ମହାବାହୋ ! ଆପଣ ଇନ୍ଦ୍ର ହୋଇ ସମସ୍ତଙ୍କର ଆନନ୍ଦ ବିଧାନ କରନ୍ତୁ ।

କିନ୍ତୁ ସ୍କନ୍ଦ ଇନ୍ଦ୍ରଙ୍କର ଏଇ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଦେଇଛନ୍ତି ଓ ଇନ୍ଦ୍ରଙ୍କୁ ପୂର୍ବପରି ଦେବକାର୍ଯ୍ୟ ସମ୍ପାଦନ କରିବା ପାଇଁ ଅନୁରୋଧ କରିଛନ୍ତି । ସ୍କନ୍ଦ କହିଛନ୍ତି,

ତ୍ୱମେବ ରାଜା ଭଦ୍ରଂ ତେ ତ୍ରୈଲୋକସ୍ୟ ମମୈବଚ ।

୨୨୯/୧୯

କରୋମି କିଂ ଚ ତଂ ଶକ୍ର ଶାସନଂ ତଦ୍ ବ୍ରବୀହି ମେ ।

୨୨୯/୨୦(୧/୨)

ହେ ଦେବେନ୍ଦ୍ର ! ଆପଣ ହିଁ ଦେବରାଜ ପଦରେ ପ୍ରତିଷ୍ଠିତ ହୋଇ ରହନ୍ତି। ଆପଣଙ୍କର କଲ୍ୟାଣ ହେଉ । ଆପଣ ଏ ତିନିଲୋକର ତଥା ମୋର ମଧ୍ୟ ପ୍ରଭୁ । ଆପଣଙ୍କର କେଉଁ ଆଜ୍ଞାକୁ ପାଳନ କରିବି କହନ୍ତୁ ।

ଇନ୍ଦ୍ର ସ୍କନ୍ଦ ବା କାର୍ତ୍ତିକେୟଙ୍କୁ ଦେବ ସେନାପତି ପଦରେ ଅଭିଷିକ୍ତ କରିଛନ୍ତି ଓ ତାଙ୍କ ନିକଟରେ ସୁରକ୍ଷିତ ଥିବା କନ୍ୟା ଦେବସେନାଙ୍କ ସହିତ ବିବାହ ଦେଇଛନ୍ତି । ଦେବସେନାଙ୍କର ଇଚ୍ଛା ପୂର୍ଣ୍ଣ ହୋଇଛି ଏବଂ ସେ ସବୁଠାରୁ ବୀର ବଳବାନ ପୁରୁଷଙ୍କୁ ସ୍ୱାମୀ ରୂପରେ ଲାଭ କରିଛନ୍ତି । ସପ୍ତର୍ଷିଙ୍କର ଯେଉଁ ସ୍ତ୍ରୀମାନଙ୍କର ରୂପ ଧାରଣ କରି ସ୍ୱାହା ଏସବୁ କାଣ୍ଡ ଭିଆଇଲେ ସେହି ସ୍ତ୍ରୀମାନଙ୍କୁ ସେମାନଙ୍କର ସ୍ୱାମୀମାନେ ଅସତୀ ବୋଲି ତ୍ୟାଗ କରିଦେଇଛନ୍ତି । ସେମାନେ ସ୍କନ୍ଦଙ୍କ ନିକଟକୁ ଆସି ବିନୀତ ଭାବରେ ନିବେଦନ କରି କହିଛନ୍ତି, ପୁତ୍ର ! ଆମର ଦେବତୁଲ୍ୟ ପତିମାନେ ଅକାରଣରେ ଆମ୍ଭମାନଙ୍କ ଉପରେ ରୁଷ୍ଟହୋଇ ଆମ୍ଭମାନଙ୍କୁ ତ୍ୟାଗ କରି ଦେଇଛନ୍ତି । ସେମାନଙ୍କୁ କେହି କହି ଦେଇଛି ଯେ ତୁମେ ଆମ୍ଭମାନଙ୍କ ଗର୍ଭରୁ ଜନ୍ମ ନେଇଛ । କିନ୍ତୁ କଥା ତ ସେପରି ନୁହେଁ । ଏବେ ଆମ୍ଭେମାନେ କ'ଣ କରିବୁ କୁହ । ସ୍କନ୍ଦ ସେମାନଙ୍କୁ କୃତ୍ତିକା ଭାବରେ ଆକାଶରେ ରହିବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି ।

ତା'ପରେ ବ୍ରହ୍ମା ନିଜେ ସ୍କନ୍ଦଙ୍କୁ ଜଣାଇଛନ୍ତି ଯେ ଅଗ୍ନି ଏବଂ ସ୍ୱାହାଙ୍କ ଭିତରେ ଶିବ ଏବଂ ପାର୍ବତୀ ଅବସ୍ଥାନ କରି ତାଙ୍କୁ ଜନ୍ମ ଦେଇଛନ୍ତି । ବାସ୍ତବରେ ସ୍କନ୍ଦ ଶିବ ଏବଂ ପାର୍ବତୀଙ୍କର ପୁତ୍ର । ଦେବସେନାପତି ଭାବରେ ଅଭିଷିକ୍ତ ହେଲାବେଳେ ଇନ୍ଦ୍ର ଐରାବତ ହାତୀର ଦୁଇଟି ଘଣ୍ଟାରୁ ଗୋଟିଏ ଘଣ୍ଟା ସ୍କନ୍ଦଙ୍କୁ ସମର୍ପଣ କରିଛନ୍ତି । ସ୍କନ୍ଦଙ୍କର ପତାକାର ରଂଗ ହେଉଛି ଲାଲ । ତା'ପରେ ଦେବସେନାପତି ମହାବଳୀ ସ୍କନ୍ଦ ତାଙ୍କର ଅଭିଯାନ ଆରମ୍ଭ କରିଛନ୍ତି । ଭଗବାନ ଶଙ୍କର ମଧ୍ୟ ସ୍କନ୍ଦଙ୍କ ସାହାଯ୍ୟ କରିବା ପାଇଁ ତାଙ୍କ ସାଂଗରେ ଚାଲିଛନ୍ତି । ଭଦ୍ରବଟ ନିକଟରେ ଆରମ୍ଭ ହୋଇଛି ଦେବତା ଏବଂ ଦେବସେନାଙ୍କ ମଧ୍ୟରେ ମହାସଂଗ୍ରାମ । ଏହି ମହାସଂଗ୍ରାମ ଭିତରେ ଯୁଦ୍ଧକ୍ଷେତ୍ରକୁ ଆସିଛି ଦାନବରାଜ 'ମହିଷ' । ମହାଭାରତକାର କହିଛନ୍ତି,

ଦାନବୋ ମହିଷୋ ନାମ ପ୍ରଗୃହ୍ୟ ବିପୁଳଗିରିମ୍ ।

୨୩୧/୮୨(୧/୨)

ଦୈତ୍ୟମାନଙ୍କର ମହାସେନା ଭିତରୁ ଦାନବ ମହିଷ ହାତରେ ଗୋଟାଏ ବିଶାଳ ପର୍ବତ ଧରି ବାହାରି ଆସିଛି ।

ଆମେ ଏଇଠି ଦେଖିଛୁଁ 'ମହିଷାସୁର'କୁ । ଅସମ୍ଭବ ବଳବୀର୍ଯ୍ୟର ଅଧିକାରୀ ମହିଷାସୁର ଆସିଛି ଦେବତାମାନଙ୍କ ସହିତ ଯୁଦ୍ଧ କରିବାକୁ । ମହିଷାସୁରର ବଳକୁ ବର୍ଣ୍ଣନା କରିବାକୁ ଯାଇ ମହାଭାରତକାର କହିଛନ୍ତି, ମହିଷାସୁରର ପର୍ବତ ନିକ୍ଷେପଦ୍ୱାରା ଦଶହଜାର ସୈନ୍ୟ ମାଟିରେ ଲୋଟି ପଡ଼ିଛନ୍ତି । ଯେପରି ସିଂହ ମୃଗମାନଙ୍କ ଉପରେ ଲମ୍ଫ ପ୍ରଦାନ କରେ, ସେହିପରି ମହିଷାସୁର ନିଜ ଦାନବ ସୈନ୍ୟମାନଙ୍କ ସହିତ ରଣଭୂମିରେ ସମସ୍ତ ଦେବତାଙ୍କୁ ଭୟଭୀତ କରିବାକୁ ଯାଇ ପ୍ରବଳ ଆକ୍ରମଣ କରିଛି ।





ତମାପତନ୍ତଂ ମହିଷଂ ଦୃଷ୍ଟ୍ୱା ସେନ୍ଦ୍ରାଦି ବୌକସଃ ।
ବ୍ୟଦ୍ରବନ୍ତ ରଣେଭୀତା ବିକୀର୍ଣ୍ଣାଯୁଦ୍ଧକେତନାଃ ॥

୨୩୧/୮୬

ମହିଷାସୁରକୁ ଆସୁଥିବାର ଦେଖି ଇନ୍ଦ୍ର ଆଦି ସମସ୍ତ ଦେବତା ଭୟଭୀତ ହୋଇ ନିଜ ନିଜର ଅସ୍ତ୍ରଶସ୍ତ୍ର ଓ ଧ୍ୱଜାକୁ ଫିଙ୍ଗି ଦେଇ ଯୁଦ୍ଧଭୂମିରୁ ପଳାଇବାକୁ ଲାଗିଛନ୍ତି ।

ମହିଷାସୁର ହଠାତ୍ ଶିବଙ୍କ ରଥ ଉପରେ ଆକ୍ରମଣ କରିଛି ଓ ଶଙ୍କର ରଥର ସମ୍ମୁଖ ଭାଗକୁ ଧରି ନେଇଛି । ସମଗ୍ର ଦେବସେନା ତଥା ସ୍ୱର୍ଗମର୍ତ୍ତ୍ୟରେ କମ୍ପନ ସୃଷ୍ଟି ହୋଇଛି । ସମସ୍ତେ ତ୍ରାହିତ୍ରାହି ଚିତ୍କାର କରିଛନ୍ତି । ଭଗବାନ ଶଙ୍କର ମହିଷାସୁରଙ୍କୁ ବଧ କରିବା ପାଇଁ ସକ୍ଷମ ହୋଇନାହାନ୍ତି । ସେ ସଂଗେସଂଗେ ସ୍ମରଣ କରିଛନ୍ତି ଦେବସେନାପତି ମହାସେନ କାର୍ତ୍ତିକେୟଙ୍କୁ । ଦେବତାମାନେ ବ୍ୟାକୁଳ ହେଉଥିବା ବେଳେ,

ତତସ୍ତସ୍ମିନ୍ ଭୟେଘୋରେ ଦେବୀନାଂ ସମୁପସ୍ଥିତେ ।
ଆଜଗାମ ମହାସେନଃ କ୍ରୋଧାତ୍ ସୂର୍ଯ୍ୟଇବଜ୍ୱଳନ୍ ॥

ବନ/୨୩୧/୯୨

ଦେବତାମାନେ ଅତି ଭାବରେ ଭୟଭୀତ ହୋଇ ପଡ଼ିଥିବା ବେଳେ ଜ୍ୱଳମାନ ସୂର୍ଯ୍ୟଙ୍କପରି ମହାସେନ କାର୍ତ୍ତିକେୟ ଆସିଛନ୍ତି ଓ ମହିଷାସୁର ସହିତ ଭୟଙ୍କର ଯୁଦ୍ଧ ଆରମ୍ଭ କରିଛନ୍ତି । ମହିଷାସୁର ପ୍ରତି ଭୟଙ୍କର ଶୂଳ ପ୍ରୟୋଗ କରିଛନ୍ତି । ବେଦବ୍ୟାସଙ୍କର ଲେଖନୀରେ,

ସା ଚାପି ତାଂ ପ୍ରଜ୍ୱଳିତାଂ ମହିଷସ୍ୟ ବିଦାରିଣୀମ୍ ।
ସୁମୋଚ ଶକ୍ତିଂ ରାଜେନ୍ଦ୍ର ମହାସେନୋ ମହାବଳଃ ॥

ବନ/୨୩୧/୯୫

ମହିଷାସୁରର ଶରୀରକୁ ବିଦୀର୍ଣ୍ଣ କରିବାକୁ ସକ୍ଷମ ଥିବା ସେଇ ଶୂଳ ଛୁଟି ଯାଇଛି ମହିଷାସୁରକୁ ବିନାଶ କରିବା ପାଇଁ ।

ସା ମୁକ୍ତାଭ୍ୟରତ୍ ତସ୍ୟ ମହିଷସ୍ୟ ଶିରୋମହତ୍ ।
ପପାତ ଭିନ୍ନେ ଶିରସି ମହିଷସ୍ତ୍ୟକ୍ତ ଜୀବିତଃ ॥

ବନ ୨୩୧/୯୬

ଅର୍ଥାତ୍ କୁମାର ମହାସେନଙ୍କ ହାତରୁ ଛୁଟିଯାଇଥିବା ସେଇ ଶୂଳ ବା ମହାଶକ୍ତି ମହିଷାସୁରର ବିରାଟ ମସ୍ତକକୁ କାଟି ଦେଇଛି । ମସ୍ତକ କଟିଯିବା ପରେ ମହିଷାସୁର ପ୍ରାଣଶୂନ୍ୟ ହୋଇ ପୃଥିବୀ ଉପରେ ଲୋଟି ପଡ଼ିଛି ।

ଏ ହେଉଛି ମହାଭାରତର ବନପର୍ବରେ ଋଷି ମାର୍କଣ୍ଡେୟଙ୍କ ମୁଖରେ ବର୍ଣ୍ଣିତ ମହିଷାସୁର ବଧ ଉପାଖ୍ୟାନ । ମାର୍କଣ୍ଡେୟ ପୁରାଣ ବର୍ଣ୍ଣିତ ଶ୍ରୀଦୁର୍ଗା ସପ୍ତଶତୀ ଉପାଖ୍ୟାନ ସହିତ ଏହାର କୌଣସି ମେଳନାହିଁ । ଶ୍ରୀଦୁର୍ଗା ସପ୍ତଶତୀରେ ବର୍ଣ୍ଣିତ ନାନା ପ୍ରହରଣ ଧାରିଣୀ ଦୁର୍ଗା ମହିଷକୁ ଶୂଳବିଦ୍ଧ କରି ହତ୍ୟା କରିବାର କଥା ଆମେ ଜାଣୁ ! ଆଜି ଯେଉଁ ମୃଣ୍ମୟୀ ବା ପାଷାଣୀ ଦୁର୍ଗା ପ୍ରତିମା ପୂଜା ହେଉଛନ୍ତି ସେ ମହିଷାସୁରର ବକ୍ଷ ଉପରେ ପାଦରଖି ଶୂଳବିଦ୍ଧ କରୁଥିବାର ଦୃଶ୍ୟ ଦେଖାଯାଏ । କିନ୍ତୁ ମହାଭାରତକାର ମହିଷାସୁର ବଧ କରାଇଛନ୍ତି ମହାସେନ କୁମାର କାର୍ତ୍ତିକେୟଙ୍କ ହାତରେ ସେଠାରେ ଶୂଳଧାରିଣୀର କଥା କୁହାଯାଇଛି, ଯେତେବେଳେ ଲୋକମାତାମାନେ କାର୍ତ୍ତିକେୟଙ୍କୁ କ୍ଷୀରପାନ କରାଇ ନିଜର ପୁତ୍ରଭାବରେ ଗ୍ରହଣ କରିଛନ୍ତି ଓ ଗୋଟିଏ ସ୍ତ୍ରୀ ମୂର୍ତ୍ତି ହୋଇ ଶୂଳଧାରଣ କରି କୁମାରଙ୍କର ଚତୁପାର୍ଶ୍ୱରେ ସୁରକ୍ଷା ବଳୟ ହୋଇ ଉଭା ହୋଇଛନ୍ତି । ମନରେ ପ୍ରଶ୍ନ ଉଠେ ଏହି ଶୂଳ ଧାରିଣୀ ଦେବୀମୂର୍ତ୍ତି ସପ୍ତଶତୀର ଦୁର୍ଗା ନୁହନ୍ତି ତ ? ମାର୍କଣ୍ଡେୟ ପୁରାଣର ଦୁର୍ଗା ଦୁର୍ଗତିନାଶିନୀ ମହିଷାମର୍ଦ୍ଦିନୀ ଏହି ଶୂଳଧାରିଣୀ ମୂର୍ତ୍ତି ନୁହନ୍ତି ତ ? ତେଣୁ ମୂଳ ମହାଭାରତକୁ ଅଧ୍ୟୟନ କଲାପରେ ମନରେ ପ୍ରଶ୍ନ ଉଠେ ପ୍ରକୃତରେ ଦୁଷ୍ଟ ମହିଷାସୁରକୁ ବଧ କରିଛନ୍ତି କିଏ ? କୁମାର କାର୍ତ୍ତିକେୟ ନା ଦୁର୍ଗତି ନାଶିନୀ ଦୁର୍ଗା ? ଏହା ପଣ୍ଡିତମାନଙ୍କ ପାଇଁ ଗୋଟିଏ ବିଚାରଣୀୟ ପ୍ରଶ୍ନ ।

ବେଗନା, ଧନେଶ୍ୱର
କୋରାଇ, ଯାଜପୁର-୭୫୫୦୨୨